# ରଘୁନାଥ ଦାସ ପରିକ୍ରମା

ପ୍ରଯୋଜନା

ଶ୍ରୀମତୀ ମନୋରମା ଦାସ

ସଂପାଦନା

ଶ୍ରୀ ମନମୋହନ ମିଶ୍ର
ଶ୍ରୀ ବ୍ରଜନାଥ ରଥ
ଶ୍ରୀ ସମରେନ୍ଦ୍ର ନାୟକ
ଶ୍ରୀ ବିଜୟ ଉପାଧ୍ୟାୟ

ଗଣମୁକ୍ତି ପ୍ରକାଶନୀ : ଓଡ଼ିଶା

ରଘୁନାଥ ଦାସ ପରିକ୍ରମା ॥ ପ୍ରଯୋଜକ : ଶ୍ରୀମତୀ ମନୋରମା ଦାସ, ଝୋଲସାହି, କଟକ ॥ ସଂପାଦନା : ଶ୍ରୀ ମନମୋହନ ମିଶ୍ର, ଶ୍ରୀ ବ୍ରଜନାଥ ରଥ, ଶ୍ରୀ ସମରେନ୍ଦ୍ର ନାୟକ, ଶ୍ରୀ ବିଜୟ ଉପାଧ୍ୟାୟ ॥ ପ୍ରକାଶକ : ଗଣମୁକ୍ତି ପ୍ରକାଶନୀ, ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ, ଓଡ଼ିଶା ॥ ପରିବେଷକ : ଗ୍ରନ୍ଥଭାରତୀ, ଫକୀରମୋହନ ସେନାପତି ରୋଡ, ବାଲେଶ୍ୱର ॥ ପ୍ରଥମ ପ୍ରକାଶ : ନଭେମ୍ବର - ୧୯୮୭ ॥ ଲିପିକାର : ବିଶ୍ୱଶ୍ରୀ ପ୍ରେସ, ଫକୀରମୋହନ ସେନାପତି ରୋଡ, ବାଲେଶ୍ୱର ॥ ପ୍ରଚ୍ଛଦ ଶିଳ୍ପୀ : ଉଦୟ ନାରାୟଣ ଜେନା ॥

ମୂଲ୍ୟ : ସାଦା ବନ୍ଧାଇ -- ଅଠର ଟଙ୍କା, ବୋର୍ଡ଼ ବନ୍ଧାଇ - କୋଡ଼ିଏ ଟଙ୍କା ମାତ୍ର ॥
Price : Paper back–Rupaes eighteen only, Board Bound–Twenty only.

RAGHUNATH DAS PARIKRAMA II Initiater : Smt. Manorama Das II Edited by : Sri Manmohan Mishra, Sri Brajanath Rath, Sri Samarendra Nayak, Sri Bijay Upadhyaya II Publisher : Ganamukti Prakashani, Ganamukti Lekhaka O' Silpi Sammukshya, Orissa II Distributor : Grantha Bharati, F. M. Senapati Road, Balasore II First Edition : November 1987 II Printer : Biswasri Press, F. M. Senapati Road, Balasore II Cover Design ; Udaya Jena II



**ରଘୁନାଥ ଦାସ (ଜଟାୟୁ)**

ଆବିର୍ଭାବ : ୩-୬-୧୯୧୯ • ତିରୋଭାବ : ୯-୧୧-୧୯୮୪

# ଆମ କଥା

ଓଡ଼ିଆ ସାହିତ୍ୟର ଇତିହାସରେ ଏ ଶତାବ୍ଦୀର ଚତୁର୍ଥ ଓ ପଞ୍ଚମ ଦଶକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଏହି ସମୟକାଳ ମଧ୍ୟରେ ଓଡ଼ିଶାରେ ପ୍ରଗତିଶୀଳ-ସାହିତ୍ୟ-ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଏବଂ ଏପରିକି ସର୍ବଭାରତୀୟ ସ୍ତରରେ ୧୯୩୬ରେ ପ୍ରଗତିଶୀଳ ଲେଖକ ସଂଘ ଗଠିତ ହେବା ପୂର୍ବରୁ ୧୯୩୫ରେ ଓଡ଼ିଶାରେ ନବଯୁଗ ସାହିତ୍ୟ ସଂସଦ ଗଠିତ ହୋଇଥିଲା । ତା ପୂର୍ବରୁ ଓଡ଼ିଆ ସାହିତ୍ୟରେ ପଣ୍ଡାଗିରି ଦେଖାଉଥିବା ପ୍ରମୁଖ ସାହିତ୍ୟ ଅନୁଷ୍ଠାନମାନଙ୍କରେ ମୁକ୍ତିକାମୀ ସାହିତ୍ୟିକମାନଙ୍କ ସ୍ଥାନ ତ ନଥିଲା, ସେଗୁଡ଼ିକ ବରଂ ଥିଲା "କେତେକ ଅର୍ଥଲୋଭୀ ଓକିଲ, ମହାଜନ, ବଣିକ, ବେପାରୀଙ୍କର ଆଡ଼୍ଡା ସ୍ଥଳୀ" । ତାର ସ୍ଥିତି ଉପରେ ଚରମ ଧକ୍କା ହାଣି ସାହିତ୍ୟରେ ନୀତିବୋଧ, ଧର୍ମ, ଅଧିବିଦ୍ୟା ଓ ଭାବବାଦର ଯାବତୀୟ ପ୍ରକାଶ ବିରୋଧରେ ମୁକ୍ତ ଘୋଷଣା କରି ପ୍ରଗତିଶୀଳ ସାହିତ୍ୟିକ ଆନ୍ଦୋଳନ ବାସ୍ତବତାର ଭିତ୍ତିରେ ସାହିତ୍ୟ ସୃଷ୍ଟି ପାଇଁ ଆହ୍ୱାନ ଦେଲା । "ମନୁଷ୍ୟର ଚେତନା ତାର ଅସ୍ତିତ୍ୱକୁ ନିୟନ୍ତ୍ରଣ କରେନାହିଁ, ବରଂ ସାମାଜିକ ଅସ୍ତିତ୍ୱହିଁ ତାର ଚେତନାକୁ ନିୟନ୍ତ୍ରଣ କରେ ।" ଏହି ଦୃଷ୍ଟିଭଙ୍ଗୀ ନେଇ ଓଡ଼ିଶାର ବହୁ ନବୀନ ଓ ପ୍ରବୀଣ ସାହିତ୍ୟିକ ବାସ୍ତବତାକୁ ବୁଝିବା ପାଇଁ ଓ ତା ଉପରେ ବିଜୟ ହାସଲ କରିବା ପାଇଁ ଚେଷ୍ଟା କରିଥିଲେ । ବାସ୍ତବ ମନୁଷ୍ୟଠାରୁ ଗତିକରି ବାସ୍ତବ ପ୍ରକ୍ରିୟାର ଭିତ୍ତିରେ ଚେତନାର ପ୍ରତିଫଳନ ଓ ପ୍ରତିଧ୍ୱନିର ବିକାଶଧାରା ଏମାନେ ବ୍ୟାଖ୍ୟା କରିଥିଲେ । ଏହାର ଫଳଶ୍ରୁତି ସ୍ୱରୂପ ଚତୁର୍ଥ ଓ ପଞ୍ଚମ ଦଶକରେ ଓଡ଼ିଆ ସାହିତ୍ୟ ତିନୋଟି ମହାନ ଦୀର୍ଘ କବିତା ପାଇଛି । ଏଗୁଡ଼ିକ ହେଲା ବାଜି ରାଉତ (ସଚ୍ଚି ରାଉତରାୟ), ଅଗଷ୍ଟ ପନ୍ଦର (ରଘୁନାଥ ଦାସ), ଓ ନୂଆ ଶପଥିଏ ଲେଖ (ମନମୋହନ ମିଶ୍ର) ।

ଏ ତିନୋଟି ମଧ୍ୟରୁ 'ଅଗଷ୍ଟ ପନ୍ଦର'ର ରଚୟିତା ସ୍ୱର୍ଗତ ରଘୁନାଥ ଦାସ ହେଉଛନ୍ତି ସବୁଠୁଁ କମ୍ ଆଲୋଚିତ, ଯଦିଓ ପ୍ରତିଭା ଦୃଷ୍ଟିରୁ ସେ ଅନ୍ୟମାନଙ୍କ ତୁଳନାରେ କିଛି ନ୍ୟୂନ ନଥିଲେ । ଇତି ମଧ୍ୟରେ ତାଙ୍କର ତିରୋଧାନ ଘଟି ଯାଇଛି । ପ୍ରାକ୍-ସ୍ୱାଧୀନତା-ଓଡ଼ିଆ ସାହିତ୍ୟରେ ସାମ୍ରାଜ୍ୟବାଦ ବିରୋଧୀ ବାସ୍ତବତା ତୀବ୍ର ପ୍ରକାଶ ଲଭ କରିଥିଲା । କିନ୍ତୁ ସ୍ୱାଧୀନତା-ପର ସାହିତ୍ୟରେ ତା'ର ଭିତ୍ତିଭୂମି ଆପାତତଃ ଦୋହଲି ଗଲା । କିନ୍ତୁ ଏ ସ୍ୱାଧୀନତା ଯେ ମିଥ୍ୟା, ସ୍ୱାଧୀନତା ନାମରେ ପ୍ରକୃତରେ ଏକ ଆପୋଷପୂର୍ଣ୍ଣ କ୍ଷମତା ହସ୍ତାନ୍ତର— ଏହି ମୋହମୁକ୍ତି 'ଅଗଷ୍ଟପନ୍ଦର'ର ମୁଖ୍ୟ ଉପଜୀବ୍ୟ ଏବଂ ଏହା ଏହି ମୋହମୁକ୍ତି ସଂପର୍କରେ ଓଡ଼ିଆ ସାହିତ୍ୟରେ ପ୍ରଥମ ପ୍ରତିକ୍ରିୟା— ଯେପରି ତୀକ୍ଷ୍ଣ ସେପରି ଶକ୍ତିଶାଳୀ । କବି ଦେଖିଛନ୍ତି ସ୍ୱାଧୀନତା ନାମରେ ପୁରାଣର ମ୍ଳାନପଙ୍କରୁ କିପରି ସମସ୍ତ ମ୍ଳେଚ୍ଛ କ୍ରୂର ବିଷପିକା ଜଳି ଉଠିଛି— ଧରା ରକ୍ତସ୍ନାତ ହୋଇଛି । ସମସ୍ତ ସଂଗ୍ରାମୀ ଆନ୍ଦୋଳନ

ଉପରେ ନୂଆ ଶାସକର କ୍ରୂର ଅଙ୍କୁଶ ଓହ୍ଲାଇ ଆସିଛି । ପୁଣି କବିଙ୍କର ଉତ୍ତରଣ ଘଟିଛି ଏଇ ବାସ୍ତବତାରୁ—

"ଶାନ୍ତିର ହେତୁରେ କିଆଁ ନପୁଂସକ ଲେଖେ ଏ କବିତା ।
ସ୍ୱପ୍ନେ ଖାଲି ରଚେ ଛନ୍ଦ ମୁଁ କି ସତେ ଏଡ଼େ ଅପଦାର୍ଥ ?
ନା, ନା, ମୁଁ ଶକ୍ତ, ମୁଁ ପାର୍ଥ
ନାହିଁ ସ୍ପର୍ଦ୍ଧେ ବୃଥା ବାକ୍ୟ ବ୍ୟୟ
ମନୁ ମୋର ଅପସରି ଯାଇଅଛି ସକଳ ସଂଶୟ ।"

ତା' ପରେ ପରେ କିନ୍ତୁ କବି ଦୁଇଦଶକ ଧରି ଏକାନ୍ତ ନୀରବ, ଏହାର କାରଣ ?

ଭାରତର ଭାଗ୍ୟ ବଡ଼ ବିଡ଼ମ୍ବିତ । ଊନବିଂଶ ଶତାବ୍ଦୀର ଜର୍ମାନ ଭଳି ଏହାକୁ ଭୋଗ କରିବାକୁ ପଡ଼ିଛି ଏକ ନିଷ୍ଫଳ ବିପ୍ଳବର ଫଳ । ରୁଦ୍ଧ ବ୍ୟାହତ ଅଗ୍ରଗତିର ଫଳ ରୂପେ ଏହାର କୃଷ୍ଟି ଓ ଜନଜୀବନ ହୋଇ ଉଠିଛି ପୂତିଗନ୍ଧମୟ । ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରାୟ ଶହେବର୍ଷର ଲଢ଼େଇ ଯେତେବେଳେ ବିଶ୍ୱାସଘାତକ ଜାତୀୟ ବୁର୍ଜୁଆ-ମାନଙ୍କ ଦ୍ୱାରା ପରାହତ ହେଲା ସେତେବେଳେ ଦେଶର ରୁଦ୍ଧ ବ୍ୟାହତ ଅଗ୍ରଗତିର ପରିଣାମ ସ୍ୱରୂପ ଜନଗଣଙ୍କ ଭିତରେ ଭରିଗଲା ଭୀରୁତା, କୂପମଣ୍ଡୁକତା, ହୀନସ୍ୱାର୍ଥତା ଓ ଉଦ୍ୟମହୀନତା । ବାରମ୍ବାର ଏହାକୁ ଭାଙ୍ଗିବା ପାଇଁ ଯାହା ବା ଚେଷ୍ଟା ହୋଇଛି ତା' ଅଳ୍ପକେ ପୁଣି ଥରେ ଦମନ ଓ ବିଫଳତାର ଶିକାର ହୋଇଛି । ରୁଷ ଭଳି ଅକ୍ଟୋବର ବିପ୍ଳବର ଗୌରବମୟ ଇତିହାସ ଆମକୁ ଜୁଆରରେ ଶିଖର ପରେ ଶିଖର ଚଢ଼ାଇ ଦେଇନି କିମ୍ବା ପଡ଼ୋଶୀ ଚୀନ ଭଳି ଲାଲ ସେନାର ମରଣ ମାଡରେ ଜାତୀୟ ବୁର୍ଜୁଆ ଓ ସାମ୍ରାଜ୍ୟବାଦର ମେରୁଦଣ୍ଡ ଭାଙ୍ଗି ଜନଜୀବନକୁ ନୂତନର ସ୍ୱପ୍ନରେ ବିଭୋର କରିଦେଇ ପାରିନି ।

କିନ୍ତୁ ଏକଥା ତ ସତ ଯେ ଗୋଟିଏ ଦେଶର ଗୋଟିଏ ସନ୍ଧିକାଳ ରାଜନୈତିକ ଓ ସାମାଜିକ ଦିଗରୁ ଦୁର୍ଭାଗ୍ୟ ହେଲେ ମଧ୍ୟ ସାହିତ୍ୟିକ ଦିଗରୁ ସୁବର୍ଣ୍ଣଯୁଗ ବି ହୋଇପାରେ । ଯେପରି ଊନବିଂଶ ଶତାବ୍ଦୀର ରୁଷ ବା ଅଷ୍ଟାଦଶ ଶତକର ଜର୍ମାନ ! ମାତ୍ର ଭାରତର ଭାଗ୍ୟ ଏ ଦିଗରୁ ମଧ୍ୟ ବିଡ଼ମ୍ବିତ । ପଞ୍ଚମ ଦଶକ ପରେ ଭାରତ ବର୍ଷର ବିଭିନ୍ନ ଆଞ୍ଚଳିକ ଭାଷାର ସାହିତ୍ୟ ସ୍ତିମିତ ହୋଇ ପଡ଼ିଲା । ହୋଇପାରେ ଏହାର ମୁଖ୍ୟ କାରଣ, ସ୍ୱାଧୀନତା ସମ୍ପର୍କରେ ମୋହ ଭଙ୍ଗର ନିଷ୍ପ୍ରାଣତା ବହୁ କବି ଲେଖକଙ୍କୁ ଏପରି ହତଭମ୍ବ କରିଦେଲା ଯେ ସେମାନେ ଏଇ ଅବସ୍ଥାକୁ ଆଉ ଅତିକ୍ରମ କରି ପାରିଲେ ନାହିଁ । ଅନେକେ ସେଇ ଦୁର୍ଭାଗ୍ୟ ଜୀବନ ସହ ସମ୍ଝୋତା କରି ପୂର୍ଣ୍ଣତାର ଅବଲମ୍ବନ ରୂପେ ସେହି ଜୀବନକୁ ଜାବୁଡ଼ି ଧରି ତା'ର ସ୍ତୁତିଗାନରେ ସମସ୍ତ କଟାଇଲେ ।

କିନ୍ତୁ ରଘୁବାବୁ ତା' କରିପାରି ନାହାନ୍ତି । କିଛିକାଳ ତାଙ୍କର କାବ୍ୟହସ୍ତ ଚୁପ ରହିବା ପରେ ପୁଣିଥରେ ତାଙ୍କର ଲେଖନୀ ମୁଖର ହୋଇ ଉଠିବା କାଳରେ ସେ ସ୍ଥିତାବସ୍ଥା ସହ ମୁକାବିଲାର ସେଇ ପୂର୍ବ ମନୋଭାବ ଅକ୍ଷୁଣ୍ଣ ରଖି ପାରିଛନ୍ତି । ଅବଶ୍ୟ

ଜନଚେତନାର ଅନୁରୂପ ତାଙ୍କର କବିତା ପୂର୍ବଭଳି ସଂଗ୍ରାମୀ ହାତର ଅସ୍ତ୍ର ନ ହୋଇ, ହୋଇ ଉଠିଛି ସାମାଜିକ ଓ ରାଜନୈତିକ ଜୀବନର ସବୁ ପ୍ରକାର ଶଠତା ଓ କଦର୍ଯ୍ୟତା ବିରୋଧରେ ବିଷ ଉଦ୍‌ଗୀରଣ ।

କବିଙ୍କ ନିଜ ସ୍ୱୀକାରୋକ୍ତି ଏହି ମତକୁ ବଳିଷ୍ଠ କରେ—"'ପୁନଶ୍ଚ' କବିତା ଗୁଚ୍ଛରେ ମୋର ପୂର୍ବ କବିତାର ଶୌର୍ଯ୍ୟ ନାହିଁ, ଉଦ୍ଦୀପନା ନାହିଁ । ବିଗତ ନୈରାଶ୍ୟରେ ମୁଁ କାତର ହୋଇ ଜନଶତ୍ରୁ ପ୍ରତି କେଉଁଠି ବ୍ୟଙ୍ଗ ବିଦ୍ରୂପ କରି, କେଉଁଠି ଚେଇଁ ଉଠୁଥିବା ଆନ୍ଦୋଳନକୁ ସ୍ୱାଗତ ଜଣାଇ ପାଇଛି ଆତ୍ମତୃପ୍ତି ।"

ଅନ୍ୟପକ୍ଷରେ ଓଡ଼ିଆ ପ୍ରଗତିଶୀଳ ସାହିତ୍ୟରେ ଏହି ସମୟରେ ଦେଖା ଦେଇଛି ଆଉ ଦୁଇ ବିପଜ୍ଜନକ ପ୍ରବଣତା । ଗୋଟିଏ ହେଉଛି ସମାଜର ଐତିହାସିକ ଭିତ୍ତି ପ୍ରତି ନଜର ନଦେଇ ସମ୍ପୂର୍ଣ୍ଣ ବ୍ୟକ୍ତିବାଦୀ ଭାବେ ଏହାର ପ୍ରତ୍ୟେକ ଅନୁଷ୍ଠାନ ପ୍ରତି ବିଦ୍ରୋହ ଘୋଷଣା କରିବାର ନେତିବାଦୀ ଓ ନୈରାଜ୍ୟବାଦୀ ଦୃଷ୍ଟିକୋଣ ଓ ଅନ୍ୟଟି ହେଉଛି ଖ୍ୟାତିର ଶୀର୍ଷରେ ଆରୋହଣ କରିବା ପାଇଁ ନୀତି ବର୍ଜିତ ସାଲିସ ଧର୍ମୀ "ଗ୍ରୋବିସ୍ମାନ୍" ସାହିତ୍ୟ ସୃଷ୍ଟିର ପ୍ରବଣତା । ଏହି କବି ବା ଲେଖକ "କେତେବେଳେ ପ୍ରତିକ୍ରିୟା ବିରୁଦ୍ଧରେ ପ୍ରଚଣ୍ଡ ଭାବରେ ପ୍ରହାର କରେ ତ, କାମ କରେ ପ୍ରଗତି ବିରୁଦ୍ଧରେ ; ପ୍ରକୃତ ସତ୍ୟ ବିରୁଦ୍ଧରେ ଉଦ୍‌ବେଗ ପ୍ରକାଶ କରେ, କିନ୍ତୁ ତାକୁଇ ସବୁ ସମୟରେ ପରିହାର କରି ଚାଲେ ।" ("ମରାଲାଇଜିଂ କ୍ରିଟିସିଜମ୍ ଏଣ୍ଡ୍ କ୍ରିଟିକାଲ ମରାଲିଟି"— ମାର୍କସ ଓ ଏଙ୍ଗେଲସ) । ଏହି ପ୍ରତିଭା "ଥରେ ଥରେ ବିଦ୍ରୋହୀ, ଶ୍ଳେଷ ମୁଖର, ସବୁ କିଛିକୁ ମ୍ଳାନ କରି ଦେଉଥିବା ପ୍ରତିଭା; କେବେ ପୁଣି ହସାଖୀ, ଆତ୍ମସନ୍ତୁଷ୍ଟ, ସଙ୍କୀର୍ଣ୍ଣମନା ଫିଲିଷ୍ଟାଇନ୍ ।" କବି ରଘୁନାଥ ଦାସ ଏହି ଦୁଇ ପ୍ରବଣତା ବିରୋଧରେ ଜେହାଦ୍ ଘୋଷଣା କରି ଏହି କବିମାନଙ୍କୁ "ମୟୂରପୁଚ୍ଛଧାରୀ 'ବିପ୍ଳବୀ' କବି" ବୋଲି ପରିହାସ କରୁଥିଲେ । "ବିପ୍ଳବୀ ସାହିତ୍ୟ ଏକ ଶାଣିତ ହତିଆର । ଏହା ଜନଗଣଙ୍କୁ ମଦତ ଦିଏ ସ୍ଥିତାବସ୍ଥାର ଗ୍ରୀଉଣି ଉପରେ ଚଢାଉ କରିବାକୁ, ଶତ୍ରୁର ସେନାନୀକୁ ସାମ୍ନା କରିବାକୁ, ଜୁଲମ ଓ ଆଇନକୁ ବେଖାତିର କରିବାକୁ, ମୃତ୍ୟୁକୁ ଉପହାସ କରିବାକୁ । ବ୍ୟକ୍ତିଗତ କାମନାର ସିଦ୍ଧି ଲାଗି ଯେଉଁମାନେ ଏହାର ପାଞ୍ଚଜନ୍ୟ ଫୁଙ୍କି ଜନଗଣଙ୍କୁ ପ୍ରତାରିତ କରନ୍ତି, ସେହି ନରାଧମମାନେ ଇତିହାସର ଅକ୍ଷମଣୀୟ ଅପରାଧୀ ।"

ଭଗବତୀ ପାଣିଗ୍ରାହିଙ୍କ ଭଳି ସ୍ପଷ୍ଟ ଓ ଶାଣିତ ଚେତନାର ଉତ୍ତରାଧିକାର ବହନ କରିଥିବା ଏଇ କବି କୋଡ଼ିଏ ବର୍ଷର ନୀରବତା ପାଇଁ ଥିଲେ ସନ୍ତରେ ଅନୁତପ୍ତ । ୧୯୮୨ ମସିହାରେ "ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ"ର ପ୍ରତିଷ୍ଠା ଦିବସ ପାଳନ ଅବକାଶରେ କବିଙ୍କୁ ଏହି ନୀରବତାର କାରଣ ପଚରା ଯାଇଥିଲା । ଉତ୍ତର ଦେବା ପୂର୍ବରୁ ସେ ବେଶ୍ କିଛି ସମୟ ଅଶ୍ରୁ ମୋଚନ କରିଥିଲେ । ତାଙ୍କର ଅଭିମାନୀ ଉତ୍ତରର ମର୍ମକଥା ଥିଲା : "ନିଜର ଖ୍ୟାତି ପାଇଁ ମୁଁ ଲେଖୁ ନଥିଲି । ଲେଖୁଥିଲି ଅକାଳରେ ମରି ଝଡ଼ିପଡୁଥିବା ସତ୍ତ୍ୱେ ରାଷ୍ଟ୍ର ଓ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଲଢେଇ ଜାରି ରଖିଥିବା

ସଂଗ୍ରାମୀ ସାଥୀମାନଙ୍କୁ ମଦତ୍ ଦେବାପାଇଁ । ସେମାନେ ତ ଆଉ ନଥିଲେ । କାହା ପାଇଁ ଓ ଡାହିଁକି ଲେଖିଥାନ୍ତି ?'' ତଥାପି ସେ କିଛି କରିପାରିଥାନ୍ତେ, ଏକଥା ସେ ବାରମ୍ବାର ସ୍ୱୀକାର କରିଛନ୍ତି ।

ଓଡ଼ିଆ ସାହିତ୍ୟର ଇତିହାସ ସଂପର୍କରେ କବିଙ୍କର ଠିକ୍ ଅନୁରୂପ ମତ ଥିଲା । ବ୍ୟାସଦେବ ଥିଲେ ମହାଭାରତ ରଚୟିତା । କିନ୍ତୁ ବ୍ୟାସ କୌଣସି ବ୍ୟକ୍ତି ବିଶେଷ ନଥିଲେ । 'ବ୍ୟାସ'ର ଅର୍ଥ ବିସ୍ତୃତ । ବିଚ୍ଛୁରିତ ହୋଇ ରହିଥିବା ବହୁ ପ୍ରତିଭାର ସମ୍ମିଳିତ ସାରସ୍ୱତ କର୍ମ ହେଉଛି ମହାଭାରତ । ସେହିପରି ଓଡ଼ିଆରେ ସାରଳା ମହାଭାରତ । ଶାରଳା ଠାକୁରାଣୀଙ୍କର ଦାସ ରୂପେ ନିଜକୁ ଅଭିହିତକରି ଜଣେ ଦୀନ କବି ସଂସ୍କୃତ ପଣ୍ଡିତମାନଙ୍କର ନିଷେଧାଜ୍ଞା, ଏପରିକି ରାଜାଦେଶକୁ ଖାତିର ନକରି ଓଡ଼ିଆ ମହାଭାରତ ରଚନା କରିଥିଲେ । ଏଇ ନମ୍ରତା ପ୍ରସରି ଯାଇଛି ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ବଳରାମ ଦାସ ଆଦି ପଞ୍ଚସଖାଙ୍କ ପର୍ଯ୍ୟନ୍ତ । ତା'ପରେ ଅବଶ୍ୟ ନିଜସ୍ୱ ନାମରେ ସାହିତ୍ୟ ରଚନା ହୋଇଛି । କିନ୍ତୁ ଏହି ନାମର କିଛି ସାମାଜିକ ଆବଶ୍ୟକତା ନାହିଁ । ''ବ୍ୟକ୍ତି ପ୍ରତିଭାର ଚମତ୍କାରିତାରେ ସମାଜ ମୁଗ୍ଧ ହେଲେ ସାମାଜିକ ଉନ୍ନତି ସାଧିତ ହେବନାହିଁ ।'' ଏଇଥି ପାଇଁ କବି ନିଜ ନାମକୁ ଗୋପନ ରଖି କେତେବେଳେ ସାଜିଛନ୍ତି 'ଜଟାୟୁ' ତ କେତେବେଳେ 'ବାଇମନ', କିନ୍ତୁ ସେଇ 'ଜଟାୟୁ' ପରି ସଂଗ୍ରାମୀ କାବ୍ୟାଦର୍ଶ ଆଜି ଆମ ପାଇଁ ଚିରସ୍ମରଣୀୟ ହୋଇ ଉଠିଛି ।

ଏହି ସ୍ୱପ୍ନପ୍ରିୟ-ବିମୁଖ କବି ରଘୁନାଥ ଦାସ ଗତ ୧୯୮୪ ମସିହା ନଭେମ୍ବର ୯ ତାରିଖ ଦିନ ଓଡ଼ିଆ ସାହିତ୍ୟରୁ ଚିର ବିଦାୟ ନେଇଛନ୍ତି । ତାଙ୍କ ତିରୋଧାନର ତିନିବର୍ଷ ବିତି ଗଲଣି । 'ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ'ର ସେ ଥିଲେ ଅନ୍ୟତମ ଶୁଭେଚ୍ଛୁ ଓ ସହଯୋଗୀ । ତାଙ୍କର ସ୍ମୃତିକୁ ରୂପାୟିତ କରିବା ପାଇଁ ଆମର ସଂଗଠନ ତରଫରୁ ଏ ଉଦ୍ୟମ ଦୀର୍ଘଦିନ ତଳୁ ଆରମ୍ଭ ହୋଇଛି । ଏ ଦିଗରେ ତାଙ୍କର ସହଧର୍ମିଣୀ ଅଧ୍ୟାପିକା ମନୋରମା ଦାସଙ୍କ ପ୍ରମୁଖ ଭୂମିକା, ସାହାଯ୍ୟ ସହଯୋଗ ଏବଂ ଅବଦାନ ଯଥେଷ୍ଟ । ତାଙ୍କର ବଡପୁଅ କେଉଁର ସହଯୋଗ ମଧ୍ୟ ସ୍ମରଣିକା ପ୍ରକାଶ ଦିଗରେ ଯଥେଷ୍ଟ ସହାୟକ ହୋଇଛି । ଓଡ଼ିଶାର ବହୁ ସ୍ୱନାମଧନ୍ୟ ଲେଖକ, ସମାଜସେବୀ ଓ ବୁଦ୍ଧିଜୀବୀ ଏହି ସ୍ମରଣିକାକୁ ନିଜ ସ୍ମୃତିକଥା ଓ ରଘୁବାବୁଙ୍କ ସୃଷ୍ଟିର ସମୀକ୍ଷା ଯୋଗାଇ ଦେଇଥିବାରୁ ଆମେ ସେମାନଙ୍କ ପ୍ରତି କୃତଜ୍ଞ । ଖ୍ୟାତନାମା ଶିଳ୍ପୀ ଉଦୟ କେନା ଏହାର ପ୍ରଚ୍ଛଦ ଓ ଅଙ୍ଗସଜ୍ଜା କରି ଆମକୁ ଅନୁଗୃହୀତ କରିଛନ୍ତି । ସେ ମଧ୍ୟ ଧନ୍ୟବାଦାର୍ହ ।

ଏହି ସ୍ମରଣିକା ଦୁଇ ପର୍ଯ୍ୟାୟରେ ବିଭକ୍ତ — 'ସ୍ମୃତି ପରିକ୍ରମା' ଓ 'ସୃଷ୍ଟି ପରିକ୍ରମା' । ଆଶାକରୁ ଆମର ଏହି ଉଦ୍ୟମ ରଘୁବାବୁଙ୍କର ସ୍ମୃତିରକ୍ଷା ଦିଗରେ ତଥା ତାଙ୍କର ସାହିତ୍ୟ ସମୀକ୍ଷା ଦିଗରେ ସାମାନ୍ୟତମ ହେଲେବି ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ଆଲୋଚକମାନଙ୍କ ପାଇଁ ଏକ ଦୀପଶିଖା ରୂପେ କାର୍ଯ୍ୟ କରିବ ।

ସମ୍ପାଦନା ମଣ୍ଡଳୀ



# ସୂଚୀ

• ସ୍ମୃତି ପରିକ୍ରମା •

## • • ସୃଷ୍ଟି ପରିକ୍ରମା •



## • ପରିଶିଷ୍ଟ •





### ଭ୍ରମ ସଂଶୋଧନ

୨୦୪ ପୃଷ୍ଠାର ଶେଷରେ "୧୯୮୫ ମସିହା ସେପ୍ଟେମ୍ବର ୧୧ ତାରିଖ" ଦିନ ଏହି ମହାନ ବ୍ୟକ୍ତିଙ୍କର ଅବସାନ ହେଲା ସ୍ଥାନରେ "୧୯୮୪ ମସିହା ନଭେମ୍ବର ୯ ତାରିଖ" ହେବ ।

# ସତ୍ୟସନ୍ଧାନୀ ରଘୁନାଥ

## କାଳନ୍ଦୀଚରଣ ପାଣିଗ୍ରାହୀ

ସ୍ୱର୍ଗତଃ କବି ରଘୁନାଥ ଦାସଙ୍କ ରଚିତ 'ପୁନଶ୍ଚ' କବିତାଗ୍ରନ୍ଥ ପାଠକରି ଅଭିଭୂତ ହେଲି । ସାହିତ୍ୟ କ୍ଷେତ୍ରରେ ରାଜନୈତିକ ନିର୍ମଳରୂପର ପଟ୍ରିକୋଣ ଏବଂ ସୃଷ୍ଟି ଭିତରେ ଯେପରି ନିବଟ ସତ୍ୟରୂପ ଚିତ୍ରଣ କରିଛନ୍ତି ତାହା ଅତୁଳନୀୟ । ରଘୁନାଥଙ୍କର ଲେଖନୀ ମାଧ୍ୟମରେ ରାଜନୈତିକ କଠୋର ସତ୍ୟ ସନ୍ଧାନ ଯେପରି ବିକଶିତ ହୋଇ ଉଠିଛି ତାହା ଅଦ୍ୱିତୀୟ । ଏହି ଅମର ଦ୍ରଷ୍ଟାଙ୍କର ତିରୋଧାନ ଦେଶ ପକ୍ଷରେ ଏକ ଅପୂରଣୀୟ କ୍ଷତି । ସେ କ୍ଷତିର ପୂରଣ ଲାଗି ଜାତି ତାଙ୍କ ସାହିତ୍ୟ ରଚନାରେ ଉଦ୍‌ବୁଦ୍ଧ ହେଉ । ଏତିକି ମାତ୍ର ପ୍ରାର୍ଥନା ।



# ବ୍ୟାହତ ପ୍ରତିଭା

## ହରିହର ମହାପାତ୍ର

ଶ୍ରୀଯୁକ୍ତ ରଘୁନାଥ ଦାସ କେବଳ ଓକିଲ ଭାବରେ ଜଣାଶୁଣା ନ ଥିଲେ । ଛାତ୍ରାବସ୍ଥାରେ ଏବଂ ପରେ ଜଣେ ପ୍ରଗତିବାଦୀ ଚିନ୍ତାଧାରାର ନିଷ୍ଠାପର ସହଯୋଗୀ ଭାବରେ ସର୍ବଦା ଆଗୁଆ ହୋଇ ଠିଆ ହେଉଥିଲେ । ସମସ୍ତ ସମସ୍ୟାମୂଳକ ପ୍ରଶ୍ନର ତାତ୍ତ୍ୱିକ ବିଚାରରେ ସେ ଅଗ୍ରଣୀ ଥିଲେ । ଫଳତଃ, ଯେତେବେଳେ ଯେଉଁ ଆନ୍ଦୋଳନ ମୁଣ୍ଡ ଟେକିଛି, ସେ ସେଥିରେ ଆପେ ଆପେ ସାମିଲ ହୋଇ ଯାଉଥିଲେ । ସେଥିଦ୍ୱାରା ତାଙ୍କ ଆଇନବୃତ୍ତିରେ ବାଧା ଉପୁଜୁଥିଲେ ମଧ୍ୟ ସେ ପରୱା କରୁନଥିଲେ । ତାଙ୍କର ସମସ୍ତ ପରିବାର, ବିଶେଷତଃ ସ୍ତ୍ରୀ, ଏକ ଆଦର୍ଶ ଅଭିମୁଖ୍ୟ ଅନୁକ୍ରମରେ ବ୍ୟକ୍ତିଗତ ଓ ସାମାଜିକ ଚଳଣି ନିୟନ୍ତ୍ରିତ କରିବାର ଚେଷ୍ଟା ଅବ୍ୟାହତ ରଖିଥିଲେ ।

ଅନେକେ ବୃତ୍ତିକୁ ମୁଖ୍ୟ, ଜୀବନକୁ ଗୌଣ କରିଥାନ୍ତି । ସେ ଥିଲେ ଓଲଟା । ଆଇନବୃତ୍ତି ତାଙ୍କର ଏକ ଅବଲମ୍ବନ ଥିଲା, ସର୍ବସ୍ୱ ନଥିଲା । ସାହିତ୍ୟ ଅନୁରାଗ ତାଙ୍କ ଜୀବନର ଅନ୍ୟ ଏକ ଅଂଶ ଗ୍ରହଣ କରିଥିଲା । କ୍ରମଶଃ ତାହା ଧର୍ମମାର୍ଗୀ ହେଉଥିବାର ସୂଚନା ମିଳିଛି । ଦୁଃଖର କଥା, ତାଙ୍କ ପ୍ରତିଭା ଉପଯୋଗୀ କର୍ମକ୍ଷେତ୍ର ସେ ସ୍ଥିର ଓ ପ୍ରସ୍ତୁତ କରିବା ପୂର୍ବରୁ ତାଙ୍କର ଦେହାନ୍ତ ହୋଇଗଲା । ବସ୍ତୁତଃ ସେ ରାଜନୈତିକ ଚେତନାବାଦୀ ଥିଲେ । ପରିସ୍ଥିତି ସହିତ ସାଲିସ ନକରି ପରିସ୍ଥିତିକୁ ନିଜ ଆଦର୍ଶ ସହିତ ସାମିଲ କରିବାର ଚେଷ୍ଟା ତାଙ୍କର ସ୍ୱଭାବ ଥିଲା । ସେ ଚେଷ୍ଟା କିନ୍ତୁ ଅପୂର୍ଣ୍ଣ ରହିଯାଇଛି ।



# ଜୀବନଧର୍ମୀ କବି ରଘୁନାଥ ଦାସ

## ସଚ୍ଚି ରାଉତରାୟ

କବି ରଘୁନାଥ ଦାସ ଆଧୁନିକ ଓଡ଼ିଆ ସାହିତ୍ୟରେ ଏକ ସ୍ମରଣୀୟ ନାମ। ଜଣେ ପ୍ରଗତିଶୀଳ କବି ଏବଂ ଲେଖକ ଭାବରେ ଦ୍ୱିତୀୟ ମହାଯୁଦ୍ଧୋତ୍ତର ଓଡ଼ିଆ ସାହିତ୍ୟକୁ ସେ ନାନା ଭାବରେ ଋଦ୍ଧିମନ୍ତ କରି ଯାଇଛନ୍ତି। ତାଙ୍କର କାବ୍ୟକୃତି ତାଙ୍କର ଅମ୍ଳାନ ପ୍ରତିଭାର ସ୍ୱାକ୍ଷର ବହନ କରୁଛି। ସେ ସ୍ୱପ୍ନ ଦେଖିଥିଲେ ଏକ ଶୋଷଣମୁକ୍ତ, ସ୍ୱାଧୀନ ମନୀଷ ସମାଜର ଏବଂ ସମସ୍ତ ପ୍ରକାର ବନ୍ଧନମୁକ୍ତ ଏକ ସୁଖୀ ପ୍ରଗତିଶୀଳ ଭାରତବର୍ଷର, ଯାହା ଏ ପର୍ଯ୍ୟନ୍ତ ମଧ୍ୟ ସଫଳ ହୋଇନାହିଁ। କିନ୍ତୁ ତାଙ୍କର ସେଇ ଅପୂରଣୀୟ ସ୍ୱପ୍ନ ଲିପିବଦ୍ଧ ହୋଇ ରହିଯାଇଛି ତାଙ୍କର ସମସ୍ତ କାବ୍ୟ କବିତାରେ। ସେ କବିତାର ମର୍ମ ଉଦ୍‌ଘାଟନ କରିବେ ଆଗାମୀ ବଂଶଧରଗଣ, ଯେଉଁମାନେ ଏ ଦେଶର ଉଜ୍ଜ୍ୱଳ ଭବିଷ୍ୟତର ସତର୍କ ପ୍ରହରୀ ଏବଂ ଅନାଗତ ଆଗାମୀକାଲିର ପ୍ରଧାନ ଶିଳ୍ପୀ ସ୍ରଷ୍ଟା। ତାଙ୍କର କବିକଣ୍ଠ ମନୀଷର ଦୁଃଖ, ନିର୍ଯାତନା ଓ ବିଫଳତାର କଥା କହି କ୍ଷାନ୍ତ ହୋଇନାହିଁ, ସଙ୍ଗେ ସଙ୍ଗେ ତାର ଜୟ ଓ ସମ୍ଭାବନାର ଚିତ୍ରପଟ ମଧ୍ୟ ଅଙ୍କନ କରିଛି। ତାଙ୍କ ଭଳି ଜଣେ ଜୀବନଧର୍ମୀ କବି ଆଧୁନିକ ଓଡ଼ିଆ ସାହିତ୍ୟରେ ବିରଳ।

୧୯୮୪ ସାଲ ନଭେମ୍ବର ୯ ତାରିଖରେ ତାଙ୍କର କଟକଠାରେ ମୃତ୍ୟୁ ହୁଏ। ତାଙ୍କର ନର ଶରୀରର ଅବସାନ ସଙ୍ଗେ ତାଙ୍କର ଦୀପ୍ତ କବିକଣ୍ଠର ଶେଷ ନୁହେଁ। ତାଙ୍କର ସ୍ୱପ୍ନ ଓ ସାଧନା ଆହୁରି ଅନେକ ନରଶୋତ୍ତର ସିଦ୍ଧିର ଅପେକ୍ଷା ରଖେ। ଆମ ଦେଶର ସାହିତ୍ୟ ଆଜି ଯେପରି ପଙ୍ଗୁ ଓ ନିସ୍ତେଜ ହୋଇ ପଡ଼ିଛି ସେଥିରେ କବି ରଘୁନାଥ ଦାସଙ୍କ ଭଳି କଳିଷ୍ଠ ପ୍ରତିଭାହିଁ କେବଳ ନୂତନ ପ୍ରାଣସଞ୍ଚାର କରିପାରିବେ। ଆଜିର ଓଡ଼ିଆ ସାହିତ୍ୟ କେତେକ ପ୍ରତିକ୍ରିୟାଶୀଳ ଶକ୍ତିଙ୍କ ହାତରେ ପଡ଼ି ଜୀବନର ମହାସ୍ରୋତରୁ ଶୋଚନୀୟ ଭାବରେ ବିଚ୍ଛିନ୍ନ ହୋଇ ପଡ଼ିଛି। ତେଣୁ ସାହିତ୍ୟର ଏଭଳି ଏକ ସଙ୍କଟ ସମୟରେ ଆଜି ଯେଉଁମାନଙ୍କୁ ସ୍ମରଣ କରିବା କଥା ସେମାନଙ୍କ ମଧ୍ୟରେ କବି ରଘୁନାଥ ଦାସଙ୍କ ଦୃଷ୍ଟାନ୍ତ ସମସ୍ତଙ୍କ ଆଖିରେ ପଡ଼େ। ମୁଁ ତାଙ୍କର ଅପରାଜେୟ ଓ ଅପ୍ରତିହତ କବିମାନସର ଉତ୍ତରୋତ୍ତର ବିଜୟ କାମନା କରିବା ସଙ୍ଗେ ସଙ୍ଗେ ଆଧୁନିକ ଓଡ଼ିଆ ସାହିତ୍ୟର ଉତ୍ତରଣରେ ସେ ଜୀବିତ ନଥିଲେ ମଧ୍ୟ ପୂର୍ବପରି ପ୍ରେରଣା ଦେଇ ପାରିବେ ବୋଲି ଆଶା କରୁଛି।



# ବିପ୍ଳବୀ କବିବନ୍ଧୁ ରଘୁନାଥ

## ଶ୍ୟାମସୁନ୍ଦର ମିଶ୍ର

ଧୀର, ଶାନ୍ତ, ନମ୍ର ଏବଂ ବିନୀତ ବନ୍ଧୁ ରଘୁନାଥ ଦାସ ଥିଲେ ସଭ୍ୟତାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କୁ ଦେଖିଲେ କେହି ମନେକରିବେ ନାହିଁ ଯେ, ଦୁର୍ନୀତି, ଦୁରାଗ୍ରହ ବିରୁଦ୍ଧରେ ସେ ଏପରି ଏକ ଲଢ଼ୁଆ ବୀର ! ଓଡ଼ିଶାର ସାଧାରଣ ଜୀବନରେ ବହୁ ରଥୀଙ୍କୁ ମୁଁ ମୋର ଦୀର୍ଘଜୀବନରେ ଭେଟିଛି । କିନ୍ତୁ କମ୍ ଲୋକ ଦେଖିଛି ଯେଉଁମାନେ ଯାହା କହନ୍ତି, ତାହା କରନ୍ତି । ବହୁଦିନର କଥା, ପ୍ରାୟ ୪୦ ବର୍ଷ ବିତିଗଲାଣି, ଗୌରୀଶଙ୍କର ପାର୍କର ଏକ ସାଧାରଣ ସଭାରେ ରଘୁନାଥବାବୁଙ୍କ ସହିତ ପ୍ରଥମ ପରିଚୟ । ଧାନ, ଚାଉଳ ଦର ବଢ଼ି ଯାଇଥାଏ ବୋଲି କଟକ ସହରରେ ଏକ ସର୍ବଦଳୀୟ ପ୍ରତିବାଦ ସଭା ଡାକିବା ଠିକ୍ ହେଲା । ସଭାର ଆହ୍ୱାନକାରୀଙ୍କ ଭିତରେ ଥିଲେ ସ୍ୱର୍ଗତ ଭିକାରୀ ଚରଣ ପଟ୍ଟନାୟକ, ଅଭିନ୍ନ ବିଓ ପ୍ରଭୃତି । ସନ୍ଧ୍ୟା ୬ଟା ସମୟରେ ଆମ୍ଭମାନଙ୍କ ଭିତରୁ ଯେଉଁମାନେ ପାରିଲେ, ସେମାନେ ଆସି ଗୌରୀଶଙ୍କର ପାର୍କରେ ଉପସ୍ଥିତ ହେଲେ । ସଭା ପାରମ୍ପରିକ ରୀତିରେ ଚାଲିଥାଆନ୍ତା, କିନ୍ତୁ ଠିକ୍ ସେତିକିବେଳେ ଓଡ଼ିଶା ସରକାରଙ୍କ ଜଣେ ମୁଖ୍ୟ କାର୍‌ପର୍‌ଦାର ସ୍ୱର୍ଗୀୟ ବୀରେନ ମିତ୍ର ପାଗଳଙ୍କ ଭଳି ପାର୍କ ସାମନାରେ ରହି ଖୁବ ଜୋରରେ କହିଲେ ଯେ, "ଏଠାରେ ମୁଁ ଏ ସଭା କରାଇ ଦେବିନାହିଁ ।" ଆମ୍ଭେମାନେ ବିସ୍ମିତ ହେଲୁ । ଗୌରୀଶଙ୍କର ପାର୍କ ଏକ ସର୍ବସାଧାରଣ ସ୍ଥାନ । ସେଠାରେ ସଭା ଭାଙ୍ଗିବା ପାଇଁ ବୀରେନ ମିତ୍ରଙ୍କର କି ଅଧିକାର ? ଯେଉଁମାନେ ଦୋଦୋପାଞ୍ଚ ହେଉଥିଲେ, ସେମାନଙ୍କ ଭିତରୁ ଲଢ଼ୁଆ ଲୋକେ ଯେଝା ଆସନରେ ବସିଗଲେ । ସେମାନଙ୍କ ଭିତରୁ ପ୍ରଥମ ଥିଲେ ଆମର ବିପ୍ଳବୀ କବି ରଘୁନାଥ ଦାସ୍ । ସେ ଥିଲେ ପ୍ରକୃତରେ "ଜଟାୟୁ" । ସେ ଗୋଡ଼ ହାତ ଛିଞ୍ଚାଡ଼ି, ଗର୍ଜନ କରି ମନକଥା କହିଲେ ନାହିଁ । ନିଜେ ଆସନରୁ ଉଠି ଧୀରସ୍ଥିର ଭାବରେ କହିଲେ—"କଟକରେ ବର୍ତ୍ତମାନ ଆମ୍ଭମାନଙ୍କୁ ଯେଉଁ ଧମକ ଦିଆଗଲା, ତାହା ଗଡ଼ଜାତ ଓ ଢେଙ୍କାନାଳୀ ଶାସନକୁ ବଳିଗଲା ।" ଦୈବାତ୍ ମୁଁ ସେହି ସାଧାରଣ ସଭାର ସଭାପତି ଥିଲି । ରଘୁନାଥବାବୁଙ୍କ ବକ୍ତୃତା ମୋତେ ଯେତେ ପ୍ରଭାବିତ କରିଥିଲା, ଅନ୍ୟ କାହାର ବକ୍ତୃତା ସେତେ କରିନଥିଲା । ଦୁର୍ନୀତି, ଶୋଷଣ ଓ ଅତ୍ୟାଚାରର ବିରୋଧରେ ତାଙ୍କର ଥିଲା ଅଲସହୀନ ସଂଗ୍ରାମ । ତାଙ୍କର ଏକ ବିଖ୍ୟାତ କବିତା "ଜଟାୟୁ"ରେ ସେ ଲେଖିଛନ୍ତି—

"ମୁଁ କ୍ଷୁଦ୍ର ଜଟାୟୁ ପକ୍ଷୀ ;
ପ୍ରତିପକ୍ଷ ପ୍ରବଳ ପ୍ରତାପୀ,
ନୁହେଁ ତାର ସମକକ୍ଷ
ପ୍ରତିବାଦ କରିବି ତଥାପି ।
ପାରେ ବା ନ ପାରେ ମୁହିଁ,
ଅନ୍ୟାୟର ରୋଧିବି ଗତିକୁ,
ସତ୍ୟଲାଗି ଯୁଝିବି ମୁଁ,
ଆଶ୍ୱାସନା ଦେବି ସେ ସତୀକୁ ।"

ରଘୁନାଥବାବୁଙ୍କ "ଜଟାୟୁ" କବିତାର ଯେତିକି ପଂକ୍ତି ଉଦ୍ଧାର କଲି, ତାହା ହେଉଛି ରଘୁନାଥବାବୁଙ୍କ ଜୀବନ-ଦର୍ଶନ । ତାଙ୍କର ଏହି ଜୀବନ-ଦର୍ଶନକୁ ବହୁଭାବରେ ରୂପାୟିତ କରି ସେ ଆମ୍ଭମାନଙ୍କ ଆଗରେ ଉପସ୍ଥାପନ କରିଛନ୍ତି । ଭାଷା ଏବଂ ଭାବରେ ଏହା ଯେ କୌଣସି ଉଚ୍ଚକୋଟୀର ଓଡ଼ିଆ କବିତାର ସମକକ୍ଷ । "ପୁନଶ୍ଚ" କବିତା-ଗ୍ରନ୍ଥର ପ୍ରାରମ୍ଭରେ "ବିପ୍ଳବୀ କବିତା"ର ସଂଜ୍ଞା ନିରୂପଣ କରିବାକୁ ଯାଇ ସେ କହିଛନ୍ତି— "ବିପ୍ଳବୀ ଆଖିରେ ଆଗାମୀର ସ୍ୱପ୍ନ । ସେହି ସ୍ୱପ୍ନ-ବିହ୍ୱଳତା ବିପ୍ଳବୀ-ସାହିତ୍ୟର ଜନ୍ମଦାତ୍ରୀ, ... ... ... ... ... ଯେଉଁଠି କିନ୍ତୁ କାର୍ଯ୍ୟକାରୀ ପରିକଳ୍ପନାକୁ ବିପ୍ଳବୀ-ସାହିତ୍ୟ ତା'ର ଉପାଦାନ କରେ, ସ୍ଥିତାବସ୍ଥା ଆତଙ୍କିତ ହୁଏ । ସେ ପ୍ରକାର ରଚନାର କଣ୍ଠରୋଧ କରିବାକୁ ତେଣୁ ସେ ଆଗେଇ ଆସେ । ତାକୁ ବେଆଇନ ଘୋଷଣା କରେ । ସମସ୍ତ ପ୍ରତିରୋଧ ସତ୍ତ୍ୱେ ତାହା କିନ୍ତୁ ଜନଗଣଙ୍କୁ ଉଦ୍‌ବୁଦ୍ଧ କରେ ନୂତନ ମୂଲ୍ୟବୋଧକୁ ନେଇ ନୂଆ ସମାଜ ଗଢ଼ିବାକୁ । ତା'ର ତେଜସ୍ୱୀ ପାଞ୍ଚଜନ୍ୟ-ନାଦରେ ଗଣ-ଚେତନା ସଂଗଠିତ ହୁଏ ସ୍ୱପ୍ନକୁ ବାସ୍ତବ କରିବା ଲାଗି । ସମାଜର ସଂଗଠିତ ଶକ୍ତି ସଂଗ୍ରାମ କରେ । ବିଦ୍ରୋହୀ ଜନତାର ବୈପ୍ଳବିକ ଅଭିଯାନରେ ଜୀର୍ଣ୍ଣ ଦୁର୍ଗମାନ ଭାଙ୍ଗି ପଡ଼େ । ବିପ୍ଳବୀ କାଟେ ସୁନାର ଫସଲ । ନୂଆ ମିନାର ଉପରେ ନବୀନ ଉଷାର ବିଜୟ କେତନ ଉଡ଼େ ।"

ଅତିବ ଦୁଃଖର କଥା, ଏତେବଡ଼ ବିପ୍ଳବୀ ଓ ଏତେବଡ଼ ସାହିତ୍ୟିକ ଅକାଳରେ ଆମ ଭିତରୁ ଚାଲିଗଲେ । ତାଙ୍କର ପ୍ରତ୍ୟେକ ଜାଗ୍ରତ ମୁହୂର୍ତ୍ତ ଗରିବ ଓ ଶୋଷିତ ଲୋକଙ୍କ ଚିନ୍ତାରେ ବ୍ୟୟିତ ହେଉଥିଲା । ସେ ଥିଲେ ଆମ ଚିନ୍ତାରାଜ୍ୟର ଏକ ବିରଳ ବିଭୂତି । ତାଙ୍କର ମହିମାମୟ ସ୍ମୃତି ପ୍ରତି ଅତି ଆଦରର ସହ ମୁଁ ମୋର ଅନ୍ତରର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି । ମୋର ବିଶ୍ୱାସ, ତାଙ୍କର ଚିନ୍ତା ଓ ସାହିତ୍ୟ ବହୁଦିନ ଧରି ଆମ ଦେଶର ଖଟିଖିଆ ବନ୍ଧୁମାନଙ୍କୁ ସାହସ ଓ ପ୍ରେରଣା ଯୋଗାଇବ ।

□ □

# ଅଭୁଲା ସ୍ମୃତି

ନବ କୁମାର ଦାସ

"ତୁମ ନାଁ କଅଣ ?"

"ରଘୁ ଦାସ"

"ଉଁଃ, କଲେଜରେ ପାଠପଢ଼ିଲେଣି ନାଁ ! ଜଣ୍ଟଲ୍‌ମାନ୍ ହୋଇଗଲେ ; କହୁଲେ କଅଣ ନା—ରଘୁଦାସ । ମଝିରେ କଅଣ କିଛି ନାହିଁ ?"

"ହଁ, ଅଛି ଯେ—"

"ସେ ପୁଣି କଅଣ ?"

"ରଘୁନାଥ ଦାସ"

"ହଁ, ମଝିଟାକୁ ଏକାବେଳେ ଉଡ଼େଇ ଦେଲ । ମଡର୍ଣ୍ଣ, ମଡର୍ଣ୍ଣ ହୋଇ ଯାଉଛ ।"

ଏହା ହେଲ ଡ଼କ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ରଘୁଙ୍କ ମଧ୍ୟରେ କଥାବାର୍ତ୍ତା । ରେଭେନ୍‌ସା କଲେଜ ତୃତୀୟବର୍ଷ ସଂସ୍କୃତ ଟିଉଟୋରିଆଲ୍ କ୍ଲାସ୍‌ରେ ପଢ଼ୁଥିଲୁ । ବୟସ ମଧ୍ୟ ଥିଲା ଏକା । ଏଥିରୁ ଜଣାପଡ଼େ ରଘୁ ସେତେବେଳେ କିପରି ସ୍ୱାଧୀନମନା ଥିଲେ ଏବଂ ତାଙ୍କର ଚିନ୍ତାଧାରା କିପରି ଆଧୁନିକ ଥିଲା । ଆମେ କଲେଜରେ ପଢ଼ିଲାବେଳେ ଛାତ୍ରସମାଜ ମଧ୍ୟରେ ଦୁଇଟି ଗୋଷ୍ଠୀ ହୋଇଥିଲେ । ଶ୍ରୀ ବ୍ରଜକିଶୋର ପଟ୍ଟନାୟକ (ଆଡ଼୍‌ଭୋକେଟ୍), ଶ୍ରୀ ରଘୁନାଥ ମିଶ୍ର (ପଣ୍ଡିତ ଗୋଦାବରୀଶଙ୍କ ପୁଅ), ରଘୁ ଓ ମୁଁ ଗୋଟିଏ ଗୋଷ୍ଠୀରେ ଥିଲୁ । ରଘୁ ଥିଲେ ଆମ ଗୋଷ୍ଠୀର ଜଣେ ବଡ଼ ଯୋଦ୍ଧା । ଯୁଦ୍ଧକୁ ସବୁବେଳେ ତିଆର ଓ ଆଗୁଆ ।

ବିଶ୍ୱବିଦ୍ୟାଳୟର ବି: ଏ: ପରୀକ୍ଷା ପୂର୍ବରୁ କଲେଜରେ ଛାତ୍ର ଆନ୍ଦୋଳନ ହେଲା । ରଘୁ ଛାତ୍ରାବାସରେ ରହୁଥିଲେ । ସେହି ଆନ୍ଦୋଳନରେ ସେ ଜଣେ ନେତା ହୋଇଗଲେ । ଛାତ୍ରାବାସରୁ ସବୁ ଛାତ୍ରଙ୍କୁ ବାହାର କରି ଦିଆଗଲା । ଦେଖିଲାବେଳକୁ ରଘୁ ନିଆଁ ହୁଲା ହାତରେ ଧରି ଶୋଭାଯାତ୍ରାରେ ବାହାରିଛନ୍ତି । ପରୀକ୍ଷାର ପ୍ରଥମ ଦିନରେ କଲେଜ ସାମନାରେ ପିକେଟିଂ ଚାଲିଥାଏ । ତାହା ମଧ୍ୟରେ ରଘୁ ରାସ୍ତା ଉପରେ ଶୋଇ ପିକେଟିଂ

କରୁଥାଆନ୍ତି । ସେଥିପାଇଁ ତାଙ୍କୁ ଗୋଟିଏ ପରୀକ୍ଷା ହରାଇବାକୁ ପଡ଼ିଥିଲା । କିନ୍ତୁ ତାଙ୍କର ସେଥିରେ ଶୋଚନା ନଥାଏ । ଖାଉଦର୍ପରେ ଚାଲିଥାଆନ୍ତି । ପରେ ପାଶ୍ କଲେ, ଆଇନ ପଢ଼ି ଓକିଲାତି କଲେ । ଆମେ ଦୁହେଁ ଓକିଲ ହେଲୁ — କଟକରେ ଓକିଲାତି କଲୁ ।

ଓକିଲାତିରେ ବି ସେହିଭଳି ସ୍ୱାଧୀନ ମନୋଭାବ । କାହାକୁ ଖୋସାମତ୍ ବରାମତ୍ ନାହିଁ, ହାକିମଙ୍କୁ ଡରଭୟ ନାହିଁ ; ମୁହେଁ ମୁହେଁ ବତାଇ ଦେବେ । ଯେଉଁକି ମକଦ୍ଦମା ସେ ପାଉଥିଲେ ସେସବୁକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରି ଲଢ଼ିବାକୁ ପ୍ରସ୍ତୁତ ହେଉଥିଲେ । ସୁଆଲ ଜବାବ କଲାବେଳେ ସେ ସହଜେ ଛାଡ଼ିବା ଜନ୍ତୁ ନୁହନ୍ତି । ହାକିମ ନ ବୁଝିବା ପର୍ଯ୍ୟନ୍ତ ସେ ଛାଡ଼ିବେ ନାହିଁ । ଅନେକ ମକଦ୍ଦମାରେ ମୁଁ ତାଙ୍କ ବିପକ୍ଷରେ ଲଢ଼ିଛି । ମକଦ୍ଦମା ଚଳାଇଲା ବେଳେ ଏକାବେଳକେ ମୁଗ୍ଧ । ମକଦ୍ଦମା ସାରି ବାହାରକୁ ଚାଲିଆସିଲେ ପୂର୍ବଭଳି ତାଙ୍କର ହସହସ ମୁହଁ — ଥଟ୍ଟା ନକଲ, ଆଉ ପାନ ଦିଆନିଆ । ଏହା ଥିଲା ତାଙ୍କର ଗୋଟିଏ ବିଶେଷ ଗୁଣ ।

ଯେଉଁଠି ଅନ୍ୟାୟ ଦେଖି ତାଙ୍କର ହୃଦ୍‌ବୋଧ ହେବ ଯେ ପ୍ରକୃତରେ ଅନ୍ୟାୟ ହେଉଛି, ସେଠି ରଘୁ ସହଜେ ଛାଡ଼ିବା ଲୋକ ନୁହନ୍ତି । ମୁହେଁ ମୁହେଁ କହିଦେବେ । ତାହାପରେ ମଧ୍ୟ ହସି ହସି ଚେତେଇ ଦେବେ । ଚିର ଶ୍ୱାସରୋଗୀ ହୋଇ ମଧ୍ୟ ସେ ସର୍ବଦା ପ୍ରଫୁଲ୍ଲ ଦେଖା ଯାଉଥିଲେ — ସେଇ ହସ ହସ ମୁହଁ । ଅସୁସ୍ଥତା ସତ୍ତ୍ୱେ ସେ ସର୍ବଦା ଅଧ୍ୟବସାୟରତ ଥିଲେ । ଅବଶ୍ୟ କ୍ଷଣକୋପ ତାଙ୍କର ଗୋଟିଏ ଦୋଷ ଥିଲା । କିନ୍ତୁ ପରକ୍ଷଣରେ ସେ ସବୁ ପାଶୋରି ଯାଇ ହସି ହସି ମିଶି ଯାଉଥିଲେ । ସହଜରେ ଜଣେ ତାଙ୍କର ଶତ୍ରୁ ହୋଇପାରିବ ନାହିଁ ।

ଆଇନ୍ ଶିକ୍ଷା ପ୍ରତି ତାଙ୍କର ପ୍ରକୃତରେ ଶ୍ରଦ୍ଧା ଥିଲା । ଛାତ୍ରଙ୍କୁ ଆଇନ ଶିକ୍ଷା ଦେଲାବେଳେ ସେ ଉପଲବ୍ଧି କରିଥିଲେ ଯେ କେତେକ ଆଇନ ବହିର ଅଭାବରୁ ଛାତ୍ରମାନେ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାରେ ହଇରାଣ ହେଉଛନ୍ତି । ତେଣୁ ସେ ସେହିସବୁ ଆଇନ ବହି ପ୍ରଣୟନ କରିଥିଲେ । ଛାତ୍ରମାନେ ଏ ପର୍ଯ୍ୟନ୍ତ ସେହି ସବୁ ବହି ଦ୍ୱାରା ଉପକୃତ ହେଉଛନ୍ତି । ତାଙ୍କର କନ୍ୟାକୁ ମଧ୍ୟ ସେ ଆଇନ ଶିକ୍ଷା କରିବାର ପ୍ରେରଣା ଦେଇ ଓକିଲ କରାଇଛନ୍ତି । ବହି ଛପାଇବାରେ ଛାପାଖାନାରେ ବିଳମ୍ବ ଓ ଅସୁବିଧା ଭୋଗ କରି ସେ ଏକ ଉପାୟ ଅବଲମ୍ବନ କଲେ । ନିଜେ ଓ ଅନ୍ୟଦ୍ୱାରା ଘରେ ଅକ୍ଷର ସବୁ ଖଞ୍ଜି, ଫର୍ମା ପ୍ରସ୍ତୁତ କରି ତାହାକୁ ଅନ୍ୟ ଛାପାଖାନାରେ କେବଳ ଛପାଇବାରେ ବ୍ୟବସ୍ଥା କରି ସେଥିରେ କୃତକାର୍ଯ୍ୟ ହୋଇଥିଲେ । ହାଇକୋର୍ଟରେ ସେ ଯେତେବେଳେ "ଲ ରିପୋର୍ଟର୍" ଥିଲେ ସେତେବେଳେ ହାଇକୋର୍ଟର I. L. R. (Cuttack) ଛପାଇବାରେ ସରକାରୀ ଛାପାଖାନାରେ ବିଳମ୍ବ ହେବାରୁ ସେ ତାଙ୍କର ଉକ୍ତ ଉଦ୍ୟମର ଏକ ଯୋଜନା ହାଇକୋର୍ଟକୁ ଦେଇଥିଲେ ।

ମୋଟ ଉପରେ କହିବାକୁ ଗଲେ ଆଇନ ଶିକ୍ଷା ଓ ଆଇନର ପ୍ରସାର ପାଇଁ ସେ ବହୁତ ଉଦ୍ୟମ କରି ସଫଳକାମ ହୋଇଥିଲେ । ଏହିଭଳି ଜଣେ ବ୍ୟକ୍ତିଙ୍କୁ ଆମେ ଚିରକାଳ ପାଇଁ ହରାଇଲୁ ।

× × ×

ପ୍ରାୟ ୧୫ବର୍ଷ ତଳେ ମୁଁ ଥରେ ବସ୍‌ରେ ବରହମପୁର ଯାଉଥିଲି । ଛତ୍ରପୁରଠାରେ ବସ୍ ଅଟକିଲା । ସେତେବେଳେ କିଏ ଜଣେ ଡାକିଲା "କିରେ ରଘ୍ନୁ, ରଘ୍ନୁ" । ବସ୍ ଭିତରୁ ଜଣେ ଉତ୍ତର ଦେଲେ "ହଁ ଭାଇନା, ମୁଁ ଏଇଠି ।" ବୁଝିଲି ବସ୍ ଭିତରର ସେ ଲୋକଟି ନାମ "ରଘୁ" । ସେହିଦିନ ଠାରୁ ମୁଁ ତାଙ୍କୁ ଡ଼ାକେ– "କିହୋ ରଘ୍ନୁ ଦାସ" । ସେ ଉତ୍ତର ଦିଅନ୍ତି—"କିହୋ ନବ ଦାସ, ଆତ୍ରିବାବୁଙ୍କ କଥା ମନେ ଅଛି ?" ଦୁହେଁ ହସୁ । ଏହିଭଳି ଡାକ ଚିରଦିନ ପାଇଁ ସରିଗଲା । ଭଗବାନ ତାଙ୍କର ଆତ୍ମାକୁ ପଦ୍ମପାଦ ତଳେ ଶାନ୍ତି ଆଉ ଆନନ୍ଦରେ ରଖନ୍ତୁ, ଏତିକି ପ୍ରାର୍ଥନା ।

□ □

# "ଜଟାୟୁ"ର ବାର୍ତ୍ତା

## ଗୁରୁଚରଣ ପଟ୍ଟନାୟକ

ନିଜର ସ୍ମରଣଶକ୍ତିର ଅଭାବ ଅନ୍ୟକୁ ସ୍ମରଣ କରିବାରେ ପ୍ରଧାନ ଅନ୍ତରାୟ । ବୟସ ହେଲେ ତା ବହୁ ଲୋକଙ୍କୁ ଗ୍ରାସ କରେ । ସେହି ଗ୍ରାସର କବଳରେ ପଡ଼ିଥିଲା ବେଳେ ଶ୍ରୀମତୀ ମନୋରମା ଦାସଙ୍କ ଘନ ଘନ ତାଗିଦା । ସେଥିଭିତରୁ କେଉଁଠିରୁ ହେଲେ ଖସିବାର ଉପାୟ ନାହିଁ । ଏବେ ନିରୁପାୟ ଅବସ୍ଥା ଭିତରେ ବାଟ ଖୋଜିବାକୁ ହେଉଛି । ଦେଖୁଛି, ମଣିଷକୁ ମାପିବାର ଏକମାତ୍ର ସହଜ ଓ ଠିକ୍ ବାଟ ହେଉଛି, ଅନ୍ୟ ମଣିଷଙ୍କ ଭିତରେ ତାଙ୍କୁ ଖୋଜିବା, ସମାଜର ବିକାଶ ପ୍ରବାହ ଭିତରେ ତାଙ୍କୁ ଦେଖିବା । ସେଠି ଜୀବନ ବ୍ୟକ୍ତିମାନଙ୍କର ସଙ୍କୀର୍ଣ୍ଣ ପରିସର ଭେଦକରି ମଣିଷମାନଙ୍କର ପାରାବାରରେ ପ୍ରବେଶ କରେ । ସେହି ପାରାବାର ଭିତରେ ତାର ପ୍ରକାଶନର ଗମ୍ଭୀରତା ଓ ପ୍ରସାରଣ ଅନୁଯାୟୀ ମଣିଷର ମହତ୍ତ୍ୱ । ନଦୀସବୁ ସମୁଦ୍ରରେ ମିଶି ନିଜର ଅସ୍ତିତ୍ୱ ହରାଉଥିଲା ବେଳେ, ପ୍ରକୃତ ଜୀବନର ବୈଶିଷ୍ଟ୍ୟ ଜନସମୁଦ୍ର ମଧ୍ୟରେହିଁ ଫୁଟି ଉଠେ ଓ ତାର ସ୍ୱୀକୃତି ଲାଭକରେ । ସେହି ସାମାଜିକ ସ୍ପର୍ଶ, ଯେତେ କ୍ଷୀଣ ଓ ଦୁର୍ବଳ ହେଉନଲବ, ତାହାହିଁ ଜୀବନର ସାର୍ଥକତାର ସ୍ମାରକ । ରଘୁବାବୁଙ୍କ ଜୀବନର ପ୍ରତିଚ୍ଛବିକୁ ସେହି ପରିପ୍ରେକ୍ଷୀରେ ନିରୀକ୍ଷଣ କରିବାକୁ ହେବ ।

ରଘୁବାବୁଙ୍କ ଜୀବନର ଅଧିକାଂଶ ଭାଗ କଟିଛି ଓକିଲାତି ବ୍ୟବସାୟରେ । କିନ୍ତୁ ଜୀବନର ବୈଶିଷ୍ଟ୍ୟ ରହିଛି ରାଜନୀତି ଓ ସାହିତ୍ୟରେ—ଯାହାକି ଲୋକଙ୍କ ଜୀବନ ସହିତ ଜଡ଼ିତ ଓ ସମାଜର ପ୍ରବାହ ସହିତ ସଂପୃକ୍ତ । ଆମ ସମାଜର ମଧୁସୂଦନ, ଗୋପବନ୍ଧୁଙ୍କ ଠାରୁ ଆରମ୍ଭ କରି ବର୍ତ୍ତମାନର ଅଧିକାଂଶ ବ୍ୟକ୍ତିବିଶେଷ ଯେଉଁମାନେ ଏକ ନୂତନ ସମାଜ ଗଠନ ଓ ବିକାଶରେ ଅଗ୍ରଣୀ, ସେ ସମସ୍ତଙ୍କ ଜୀବନରେ ରହିଛି, ରାଜନୀତି ସହ ସାହିତ୍ୟର ସମାବେଶ । ତା ବୋଧହୁଏ ଓଡ଼ିଶାର ଏକ ବିଶେଷତ୍ୱ । ତା ଭିତରେ ଅବଶ୍ୟ, ପ୍ରତ୍ୟେକଙ୍କ ଲକ୍ଷ୍ୟ ଓ ଗତିରେ ଫରକ ରହିଛି, ରହିବା ମଧ୍ୟ ସ୍ୱାଭାବିକ । ହେଲେ ମଧ୍ୟ ରଘୁବାବୁଙ୍କ ଜୀବନଧାରା ସେହି ଧାରାର ଅନୁବର୍ତ୍ତୀ ଓ ତାକୁହିଁ ପ୍ରତିଫଳିତ କରେ ।

ରଘୁବାବୁ ବ୍ରିଟିଶ ବିରୋଧରେ ସ୍ୱାଧୀନତାସଂଗ୍ରାମରେ ଠିଆ ହୋଇଛନ୍ତି । ଗୁପ୍ତଭାବେ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଛନ୍ତି । ସେ ସେଇ ସଂଗ୍ରାମ ଭିତରେ ଦେଖିଛନ୍ତି, ଲୋକଙ୍କର ପ୍ରକୃତ ଦୁଃଖ-କଷ୍ଟ, ଶୋଷଣ-କଷଣ ଦୂର କରିବାକୁ ହେଲେ ସାଧାରଣ ରାଜନୈତିକ ସ୍ୱାଧୀନତା ଯଥେଷ୍ଟ ନୁହେଁ, ଆହୁରି ଆଗକୁ ଯିବାକୁ ହେବ । ସେଇ ଉପଲବ୍ଧି ଭିତର ଦେଇ ସେ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକୃଷ୍ଟ ହୋଇଛନ୍ତି, ସେଥିରେ ଯୋଗ

ଦେଇଛନ୍ତି । ସେହି ଗ୍ରନ୍ଥଜୀବନରେ ତାଙ୍କର ସାହିତ୍ୟପ୍ରୀତି ପ୍ରକାଶ ପାଇଛି । ସେତେବେଳେ ନବଯୁଗ ସାହିତ୍ୟ ସମିତି ବା ସେଭଳି କିଛି ଗୋଟାଏ ନାମରେ ସେ କେତେଜଣ ମିଶି ଏକ ଆଲୋଚନା ଚକ୍ର ଗଢିଥିଲେ । ତା ଅବଶ୍ୟ ବେଶୀ ଦିନ ଚାଲି ନାହିଁ । ତାହା କିନ୍ତୁ ତାଙ୍କ ସାହିତ୍ୟିକ ଜୀବନର ପୂର୍ବାଭାସ । ତାଙ୍କୁ ମଧ୍ୟ ଗ୍ରନ୍ଥାଗାରର ସାଂସ୍କୃତିକ ଉତ୍ସବରେ ଅଭିନୟ କରିବାର ଦେଖିଛି । ସେଥିଲାଗି ଧନ୍ୟବାଦ ଦେବାର କଥା ମୋର ମନେପଡ଼ୁଛି ।

ରଘୁବାବୁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟଭାବେ ବୋଧହୁଏ ୪/୬ ବର୍ଷ ରହିଥିଲେ ; ମୋର ଠିକ୍ ମନେ ପଡ଼ୁନାହିଁ । ଅଣ୍ଡରଗ୍ରାଉଣ୍ଡ ବା ଆତ୍ମଗୋପନ କରିଥିବା ସମୟରେ ମୁଁ ଅଳ୍ପ କେତେଦିନ ତାଙ୍କ ଘରେ ଥିଲି । ସେତେବେଳେ ସେ ଓକିଲାତି ଆରମ୍ଭ କରୁଥାନ୍ତି । ଓକିଲାତିର କିଛିକାଳ ପରେ ସେ ପାର୍ଟିରୁ ଅପସରି ଗଲେ । କିନ୍ତୁ ଅନ୍ୟ କେତେ ବୁଦ୍ଧିଜୀବୀଙ୍କ ଭଳି ସେଥିଲାଗି ଖବର କାଗଜକୁ ଧାଇଁଯାଇ ନାହାନ୍ତି । ନିଜକୁ ଜଣେ ସଚ୍ଚା, ନିର୍ଭୁଲ, ନିର୍ମଳ, ନିଷ୍ଠାପର ସଂଗ୍ରାମୀ ଭାବେ ବର୍ଣ୍ଣନା କରି ଏବଂ ନିଜର ପଳାୟନ ଲାଗି ପାର୍ଟିକୁ ଦୋଷ ଦେଇ ବିବୃତି ଦେଇ ନାହାନ୍ତି । ମନେହୁଏ, ତାଙ୍କର ପାର୍ଟି ଛାଡ଼ିବାଟା କୌଣସି ରାଜନୈତିକ କାରଣ ଯୋଗୁ ନୁହେଁ । ପାର୍ଟିରେ ଥିଲା ପର୍ଯ୍ୟନ୍ତ ସେ ତା ପ୍ରତି ସମ୍ପୂର୍ଣ୍ଣ ଅନୁରକ୍ତ ଥିଲେ । ତାଙ୍କର ଦେୟ ଓ ସାହାଯ୍ୟ ଦେବାରେ କେବେ ଅବହେଳା ଘଟି ନଥିଲା ।

ତାପରେ ସେ କେତେକାଳ ନୀରବ ରହିଛନ୍ତି । ତାଙ୍କର ରାଜନୈତିକ ଭାବର ଆବେଗ ତାଙ୍କୁ ବିଭିନ୍ନ ମଞ୍ଚକୁ ଟାଣି ନେଇଛି । କେତେବେଳେ ଅନ୍ୟ ବାମପନ୍ଥୀଦଳର ସଭ୍ୟ (?) ବା ସମର୍ଥକ ହୋଇଛନ୍ତି । କିନ୍ତୁ ଥରେ ଗୋଡ଼ ଖସିଲା ପରେ ପୁଣି ତାହା ପାଇବା କଷ୍ଟକର । ଏଇପରି ଉତ୍ଥାନ ପତନ ଭିତରେ ସେ ପୁଣି ଫେରିଯାଇଛନ୍ତି ଲେଖନୀ ପାଖକୁ, ଦୀର୍ଘ ୧୦ବର୍ଷ ପରେ - "ଯୌବନାବସ୍ଥା ଅତିକ୍ରାନ୍ତ ହେଲା" ଉତ୍ତାରୁ । ଏଥି ପୂର୍ବରୁ ସେ କେତେ କବିତା ଲେଖିଛନ୍ତି । ତାଙ୍କ ଲିଖିତ "ଅଗଷ୍ଟ ୧୫" କବିତା ବହିଟି ବିଶେଷ ଉଲ୍ଲେଖଯୋଗ୍ୟ । ସେ ମୁଲିଅସ୍ ଫୁଚିକଙ୍କ ଅମର ଜୀବନର କାହାଣୀ "ନୋଟସ୍ ଫ୍ରମ୍ ଦ ଗାଲୋଜ"ର ଅନୁବାଦକ । ତାଙ୍କର ସାହିତ୍ୟ ସେତେବେଳେ ବୋଧହୁଏ ସେତିକିରେ ଆବଦ୍ଧ ଥିଲା । ଏବେ କିନ୍ତୁ ତାଙ୍କର ଅଶାନ୍ତ ପ୍ରାଣକୁ ବ୍ୟକ୍ତ କରିବାର ଏକମାତ୍ର ଆଧାର ହେଲା ସାହିତ୍ୟ । ତାଙ୍କର ସେହି ପୁଞ୍ଜିଭୂତ ରୁଦ୍ଧ ଆବେଗ ଫାଟିପଡ଼ିଲା ଏକ "ଆତ୍ମତୃପ୍ତି ପାଇଁ", "ଆନ୍ଦୋଳନକୁ ସ୍ୱାଗତ" ଜଣାଇ— କବିତା ରୂପରେ ।

ତାଙ୍କର କବିତା ସଂକଳନ "ଧୂନଷ୍ଟ" ପଢ଼ିଲେ ଜଣାଯାଏ, ରଘୁବାବୁଙ୍କ କାବ୍ୟ-ପ୍ରତିଭା ତାଙ୍କର ରାଜନୈତିକ ଜୀବନ ଓ କର୍ମପ୍ରଚେଷ୍ଟାର ଊର୍ଦ୍ଧ୍ୱରେ । ତାଙ୍କ କବିତାଗୁଡ଼ିକ ଅନିଶ୍ୟ ସେହି ରାଜନୈତିକ ଜୀବନର ଆଦର୍ଶକୁ ବହନ କରନ୍ତି । ସେ ବର୍ତ୍ତମାନ ସମାଜର ଜାଲି ଜୁଆଚୋରି, ଦୁଃଖ ଦୁର୍ଗତି ଏବଂ ଶୋଷଣ ପ୍ରତାରଣାକୁ ବିଦାର୍ଣ୍ଣ କରି,

ତାର ଅବସାନ ଲାଗି ଅହ୍ୱାନ ଜଣାଇଛନ୍ତି । ସେସବୁ କିନ୍ତୁ ସାଧାରଣ ବାମପନ୍ଥୀ ବୋଲାଇବାର ଶସ୍ତା ଗାଳି ବା ସୌଖୀନ ସ୍ଲୋଗାନ ନୁହେଁ । ସେଥିରେ ରହିଛି ସାହିତ୍ୟିକ ଗାମ୍ଭୀର୍ଯ୍ୟ ଆଉ ଉତ୍କୃଷ୍ଟ କାବ୍ୟକଳା, ଭାଷାର ଶୈଳୀ ଏବଂ ବଳିଷ୍ଠ ଶବ୍ଦଯୋଜନା । 'ପୁନଶ୍ଚ' ହେଉଛି ଏକ ଅବ୍ୟକ୍ତ ଅତୃପ୍ତ ପ୍ରାଣର, ଏକ ଅସହାୟ ପଥହରା ଜୀବନର ଅଡି ସତ୍ୟନିଷ୍ଠ ପ୍ରତିଫଳନ । ଅନ୍ୟ କେତେ କବିଂକ ଭଳି ସେ ନିଜର ଦୁର୍ବଳତାକୁ ଢାଙ୍କି, ନିଜକୁ ଜଣେ ବଡ଼ ବିପ୍ଳବୀ ବା ବିପ୍ଳବର ଜଣେ ବାର୍ତ୍ତାବହ ବୋଲି ପ୍ରଚାର କରିବାର ବା ଅନ୍ୟ ଢଗରୁ ଲୋକଙ୍କୁ ପ୍ରତାରିତ କରିବାର ପ୍ରୟାସ କରିନାହାନ୍ତି । ସେ ଆପଣାକୁ ଅବିକୃତ ଭାବେ ଅନାବୃତ କରି ଦେଇଛନ୍ତି,— ସେଉଁଠିକି ତାଙ୍କର ଶକ୍ତି, ଦୁର୍ବଳତା ଓ ସଫଳତା ବିଫଳତା ସ୍ୱାଭାବିକଭାବେ ପ୍ରକଟିତ ହୁଏ । କହିବାକୁ ଗଲେ, ତାହା ତାଙ୍କର ଏକ ପ୍ରକାରର ଆତ୍ମସମାଲୋଚନା । ନିଜର ଆତ୍ମସମାଲୋଚନା ଏପରି ଏକ ଅସ୍ତ୍ର, ଯାହାକି ଶତ୍ରୁକୁ ନିରସ୍ତ୍ର କରିଦିଏ । ତେଣୁ ସେ ତାଙ୍କର ଦୁର୍ବଳତାକୁ ନିଜର ଶକ୍ତିରେ, ଆଉ ବିଫଳତାକୁ ଅନ୍ୟମାନଙ୍କ ଲାଗି ଏକ ଶିକ୍ଷାରେ ରୂପାନ୍ତରିତ କରିଛନ୍ତି । ତାଙ୍କର ନିଜ ଭାଷାରେ, "ଦୁର୍ନୀତି, ଦୁରାଚାର, ଦୁଃଶାସନ, ଦୁଃଖ ଦୈନ୍ୟ·· ଜନଗଣ ଭାଙ୍ଗି ପଡ଼ିଛନ୍ତି । ଆଶ୍ରା କରିବାକୁ ସଗଠିତ ଶକ୍ତି ନାହିଁ । ପ୍ରତିରୋଧ କରିବାକୁ ମନୋବଳ ନାହିଁ । ଏହି ଦୁଃସ୍ଥ ଜନଗଣଙ୍କୁ ଉଦ୍ଧାର କରିବାର ସାମର୍ଥ୍ୟ ମୋର ନାହିଁ··· 'ଦିଗନ୍ତ ନୈରାଶ୍ୟ', ମୁଁ କାତର ହୋଇଯାଇଛି ।"

ଏ ଅବସ୍ଥାରେ ନିଜର କାମନା ପୂରଣ ଲାଗି ଜଣେ ପଥହରା ବାମପନ୍ଥୀ ଯା କରେ, ସେ ତାହାହିଁ କରିଛନ୍ତି । "ଜନସାଧାରଣଙ୍କ ଶତ୍ରୁଙ୍କୁ ବିଦ୍ରୂପ" କରିଛନ୍ତି, "ଆନ୍ଦୋଳନକୁ ସ୍ୱାଗତ ଜଣାଇଛନ୍ତି", "ଜୀବନ ପ୍ରବାହର ଚିତ୍ର ଆଙ୍କିଛନ୍ତି", "ସବୁ ପରାଜୟ ଗ୍ଲାନିକୁ" ଧୋଇବା ଲାଗି "ବିଜୟର ସ୍ୱପ୍ନ" ଦେଖିଛନ୍ତି, 'ପୁନଶ୍ଚ' ଲେଖିଛନ୍ତି—

ମୁଁ ଭୀରୁ ଜଟାୟୁ ପକ୍ଷୀ
ପ୍ରତିପକ୍ଷ ପ୍ରବଳ ପ୍ରତାପୀ
ନୁହେଁ ତାର ସମକକ୍ଷ
ପ୍ରତିବାଦ କରିବି ତଥାପି ।

× × ×

ଦେହପକ୍ଷ ଛିଡ଼ିଗଲା, ଛିଡ଼ି ଯାଉ
ନାହିଁ ମୋ ଶୋଚନା
ମୁଁ ରହିବି ଯୁଗେ ଯୁଗେ ମୁମୂର୍ଷୁର
ଜ୍ୱଳନ୍ତ ପ୍ରେରଣା ।

ତେଣୁ ଶେଷରେ ସେ ଚାଲିଛନ୍ତି, ଏକାକୀ । ସବୁ ଆବେଗ ଉତ୍କଣ୍ଠା ଭିତରେ "ଏକଲା ଚଲୋ" ଜୀବନ-ଦର୍ଶନର ଆହ୍ୱାନ ଜଣାଇ । ସେ ଦର୍ଶନ କିନ୍ତୁ ସୁନିର୍ଦ୍ଧିତ

ପରାଜୟ ପଥର ଦର୍ଶନ । କାରଣ ତା ଜନସାଧାରଣଙ୍କ ଉପରେ ଆସ୍ଥାହୀନ । ଲୋକମାନେ ଯେ ତାଙ୍କ ନିଜ ବଳ ଓ ସଂଗ୍ରାମ ଦ୍ୱାରା ନିଜକୁ ମୁକ୍ତ କରି ପାରନ୍ତି, ସେ ବିଷୟରେ ସେ ସନ୍ଦିହାନ । ସେଥିଲାଗି ବିଶ୍ୱ ସାରା ପ୍ରତିଦିନ ସର୍ବହରା ମୁକ୍ତିକାମୀ ଜନତାର ଜୟଯାତ୍ରା ଦେଖି ଥିଲେ ବି ତାର ତାତ୍ପର୍ଯ୍ୟ ଉପଲବ୍ଧି କରିବାରେ ପରାଙ୍ମୁଖ । ତେଣୁ ସର୍ବହରା ଶ୍ରେଣୀର ଜୀବନଦର୍ଶନ ଦ୍ୱାରା ତାର ମୁକ୍ତି ଦେଖିବା ପରିବର୍ତ୍ତେ, ତାହା ନିଜର ଜୀବନ-ଦର୍ଶନ ଦ୍ୱାରା ସର୍ବହରାର ମୁକ୍ତି କାମନା କରେ । ନିଜକୁ ସର୍ବହରା ସଂଗ୍ରାମର ପ୍ରେରଣାର ଫଳଭାବେ ନଦେଖି, ତାର ଊର୍ଦ୍ଧ୍ୱରେ ରହି ତାକୁ ପ୍ରେରଣା ଦେବାର ପରିଣତି ଶେଷରେ ନିଷ୍ଫଳ ହେବା ସ୍ୱାଭାବିକ । ଯେଉଁଠି ପ୍ରେରଣାର ଆହରଣ ନାହିଁ, ସେଠି ତାକୁ ପ୍ରଦାନ କରିବାର ପ୍ରୟାସ ବ୍ୟର୍ଥତାରେ, "ନୈରାଶ୍ୟ", ଓ "କାତରତା"ରେ ହିଁ ପହଞ୍ଚିବ । ତଦ୍ୱାରା ଶେଷରେ ନିଜର "ସାମର୍ଥ୍ୟ" ହରାଇ ବସିବା, "ମନୋବଳ ଭାଙ୍ଗି ପଡ଼ିବା" ଅବଶ୍ୟମ୍ଭାବୀ ।

ତେଣୁ "ଅଭାବ ଚେତନା" ବିରୋଧରେ ରଘୁବାବୁଙ୍କ ଅଭିଯାନ । ତାର ଅଭାବର ମୁଖ୍ୟ କାରଣ ହେଲା ଆଜିର ବାସ୍ତବତାକୁ ନ ଦେଖିବା । ତା ହେଉଛି – ବିଶ୍ୱଯୁଦ୍ଧ ବିରୋଧରେ ବିଶ୍ୱଶାନ୍ତିର ଅଭିଯାନ, ସମଗ୍ର ମାନବସମାଜର ପ୍ରାଣରକ୍ଷା, ଏବଂ ଶୋଷଣ ନିର୍ଯ୍ୟାତନାର କେବଳ ବିଲୋପ ନୁହେଁ, ସମାଜବାଦ ଓ ସାମ୍ୟବାଦର ନିର୍ମାଣ, ସମସ୍ତ ମାନବଜାତିର ଯୁଗ ଯୁଗର ଈପ୍ସିତ ଆଶାର ପୂରଣ—ସାମ୍ୟ, ମୈତ୍ରୀ, ସୁଖ ସମୃଦ୍ଧିର ନିରବଚ୍ଛିନ୍ନ ବିକାଶ - ଯାର ଅଗ୍ରଣୀ ସୋଭିଏତ୍ ରୁଷ । ଏ ବାସ୍ତବତା ଆଜି ପ୍ରତ୍ୟେକ ଦୁଆରେ ଆଘାତ କରେ । ତାର ଡାକ ନ ଶୁଣିବା ଅର୍ଥ ଅବାସ୍ତବ ପଥରେ ଗୋଡ଼ ଦେବା । ଏଇ ଚେତନାର ଅଭାବ ହେଉଛି ମୌଳିକ ଅଭାବ । ବହୁ "ବାମପନ୍ଥୀ"ଙ୍କ କ୍ଷେତ୍ରରେ ମଧ୍ୟ ଏହା ଦେଖାଯାଇଥାଏ ।

ରଘୁବାବୁଙ୍କ କବିତାଗୁଡ଼ିକ ଓଡ଼ିଆ ପ୍ରଗତିଶୀଳ ସାହିତ୍ୟ ପ୍ରତି ଏକ ବିଶେଷ ଅବଦାନ । ତାର ବିଶଦ ଆଲୋଚନା ଆବଶ୍ୟକ । ସେ ସବୁ ଯେ ବାମପନ୍ଥୀ ଚିନ୍ତାଧାରାକୁ ଜାଗ୍ରତ, ଅନୁପ୍ରାଣିତ କରି ଆଗେଇ ନେବାରେ ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ । ତାଙ୍କର ଅନ୍ୟ ପାଣ୍ଡୁଲିପିଗୁଡ଼ିକର ପ୍ରକାଶନ ଦରକାର । ତାଙ୍କ ଜୀବନର ଆଭିମୁଖ୍ୟ ଓ କବିତାର ନିର୍ଦ୍ଦେଶ ସଦା ଗତିଶୀଳ । ଯା ଗତିଶୀଳ, ତା ଅମଳିନ, ତାହା ହିଁ ଶକ୍ତିଶାଳୀ, ସବୁ ବାଧା ପ୍ରତିବନ୍ଧକକୁ ପ୍ରତିହତ କରିବାରେ ସମର୍ଥ । ଯେହେତୁ—

ଏ ଜୀବନ ଗତିଶୀଳ
ଗତିଶୀଳ ଛନ୍ଦମୟ ସମାଜ ପ୍ରବାହ
ପଚମାନ ପଙ୍କ ଭେଦି ପଦ୍ମ ଫୁଟେ
ସୃଷ୍ଟିର ଏ ନୂତନ ଅଧ୍ୟାୟ;
ସ୍ଥାଣୁ ନୁହେଁ ଇତିହାସ
ଚିରନ୍ତନ ନୁହେଁ ପ୍ରଭୁ ଆଉ ଦାସ ।

□ □

# ଜଟାୟୁର ଆତ୍ମ-ବିଳୟ

## ମନମୋହନ ମିଶ୍ର

୧୯୪୦ ସାଲ ଫେବୃଆରୀ ୨୬ ତାରିଖ ସକାଳ ସାଢ଼େ ନଅଟା । ସେ କାଳର ଅଣଓସାରିଆ ରାଣୀହାଟ ପୋଲ ଉପରେ, ହାତରେ ହୁଇସିଲ ଧରି ଜଣେ (ତ୍ରିବାଧନ୍ଦୁଏ ହାଫ୍‌ପେଣ୍ଟ ପିନ୍ଧା) ତରୁଣ ବଏଜ ସ୍କାଉଟ ଟ୍ରୁପ ଲିଡ଼ର ପରି ଦଣ୍ଡାୟମାନ । ଚତୁର୍ଦ୍ଦିଗରେ ପ୍ରଚଣ୍ଡ କୋଳାହଳମୟ ବିକ୍ଷୁବ୍ଧ ଜନତା ।

ସେତେବେଳେ ସେହି ପୋଲର ଅଦୂରରେ ଶୁଷ୍କପ୍ରାୟ ତାଳଦଣ୍ଡା କେନାଲ ଭିତର ଦେଇ ମୁଁ ମେଡ଼ିକାଲ ଆଡ଼ ସେପଟକୁ ଯାଉଥାଏ । ପୋଲ ଉପରେ ଛାତ୍ର ସ୍ୱେଚ୍ଛାସେବକମାନଙ୍କର ପିକେଟିଂ । କୌଣସି ଘୋଡ଼ାଗାଡ଼ି ବା ଯାନବାହନରେ ପରୀକ୍ଷାର୍ଥୀଙ୍କୁ ଅଭିଭାବକମାନେ କଲେଜର ପରୀକ୍ଷା ହଲକୁ ନେଉଥିବାର ଚେଷ୍ଟାକୁ ରୋକିବା ପାଇଁ ସେମାନେ ପ୍ରାଣପଣେ ରାସ୍ତାରେ ଶୋଇରହି ବାରଣ କରୁଥାଆନ୍ତି । ପୋଲିସର ଲାଠି, ବେଟନ୍‌ର ନିଷ୍ଠୁର ପ୍ରହାର ଚାଲିଥାଏ ଓ ସେମାନଙ୍କୁ ରାସ୍ତାରୁ ଟାଣି ପୋଲିସ ରାଣୀହାଟର ପୋଲରୁ ଘୋଷାରି ଘୋଷାରି ରେଭେନ୍‌ସା କଲେଜ ପଟ ପୋଲର ଶେଷଭାଗର ଗଡ଼ାଣିଆ କେନାଲ ବନ୍ଧକୁ ଫୋପାଡ଼ିବାରେ ଲାଗିଥାନ୍ତି । ବାଳକମାନେ ଏହି ଦୃଶ୍ୟ ଦେଖିଲା ପରେ ସାରା ରାତି ଅନିଦ୍ରା-ଜର୍ଜରିତ ଶରୀରକୁ ଘୋଷାରି ମୁଁ ହାଡ଼ିସାହି ଗଳିରେ ପଶି ବରଫକଳ ରାସ୍ତାରେ ପହଞ୍ଚିଥିଲି । ମୋ ପ୍ରତି ସେତେବେଳେ ଆଲିପଟାଳି ଜନତାର ପ୍ରଚଣ୍ଡ ସାବଧାନ ବାଣୀ— 'ଯାଅନାହିଁ, ଗିରଫ ହେବ' ଏବେବି ମୋର କର୍ଣ୍ଣକୁହରରେ ଧ୍ୱନିତ ହେଉଛି । ସେହିଦିନ ସେହି ତରୁଣଙ୍କୁ ମଧ୍ୟ ପୋଲିସ ଅନ୍ୟମାନଙ୍କୁ ଓଟାରି ଫୋପାଡ଼ି ଦେଲାପରି ଫୋପାଡ଼ି ଦେଇଥିଲେ ।

ସେ ହିଁ ବନ୍ଧୁ ରଘୁବାବୁ । ୧୯୪୦ ଠାରୁ ୧୯୪୭ ଅଗଷ୍ଟ ପନ୍ଦର ଯାଏଁ ସେହି ତୋଫାନ ସମୟରେ ଆଉ କୌଣସି ଠାରେ ସେହି ତରୁଣଙ୍କୁ ଭେଟିଥିବାର ମୋର ମନେ ନାହିଁ । ଏହାର ଭିତରେ ଅବଶ୍ୟ ମୋର ଦେଢ଼ବର୍ଷ ରାଜଦ୍ରୋହ ଅପରାଧରେ କାରାଦଣ୍ଡ । ୧୯୪୨ର ଅଗଷ୍ଟ ନଅ ଓ ୧୯୪୫ରେ ବ୍ରହ୍ମପୁର ଜେଲରୁ ଅଟକବନ୍ଦୀତ୍ୱରୁ ମୁକ୍ତିଲାଭ ଭିତରେ ତାଙ୍କ ବିଷୟରେ କିଛି ଜାଣି ନଥିଲି । କେବଳ ବ୍ୟକ୍ତିଗତ ସତ୍ୟାଗ୍ରହ ବେଳେ ବ୍ରହ୍ମପୁର ଜେଲରେ ମୁଁ ରାଜବନ୍ଦୀ ଥିବା ଅବସ୍ଥାରେ ୧୯୪୧ରେ ସତ୍ୟାଗ୍ରହୀ କଂଗ୍ରେସୀ

ସହବନ୍ଦୀମାନେ ଏମିତି ଗ୍ରୁପ-ଆନ୍ଦୋଳନକୁ ତାଚ୍ଛଲ୍ୟ କରିବା ଭିତରେ ରଘୁବାବୁଙ୍କ ନାମ ଶୁଣିଛୁ । ସେମାନଙ୍କ ଭିତରୁ ଅନେକେ ଆଜି ଓଡ଼ିଶାର ନାମଜାଦା ପ୍ରତିଷ୍ଠିତ ନେତା । କେତେକ ମଧ୍ୟ ସେପାରିକି ଗଲେଣି । ଏହି ତାଚ୍ଛଲ୍ୟର ଉଦାହରଣ ହେଲା— ଆମ୍ଭେମାନେ ବନ୍ଦୀ ହୋଇଗଲା ପରେ ସେହିଦିନ ପରୀକ୍ଷା ବର୍ଜନ ଓ ଧର୍ମଘଟ ଇତ୍ୟାଦିର ପାଇଁ ଗ୍ରୁପଗୁଡ଼ ତରଫରୁ କଟକର ଗୌରୀଶଙ୍କର ପାର୍କ ହୋଟେଲରେ ସାମ୍ବାଦିକ-ମାନଙ୍କ ଆଗରେ ଘୋଷଣା ଓ ଦ୍ୱିତୀୟରେ ସେହି କାରଣରୁ ପିକେଟିଂର ନେତାମାନଙ୍କର ପରୀକ୍ଷାରେ ଯୋଗଦାନ । ଅବଶ୍ୟ ସେତେବେଳେ ସେହି ନେତାମାନଙ୍କର କାର୍ଯ୍ୟକୁ ମୁଁ କେବଳ ଶୃଙ୍ଖଳା ଦୃଷ୍ଟିରୁ ନୁହେଁ, ଦୃଢ଼ ଭାବରେ ସମର୍ଥନ କରିଥିଲି ଓ ଜେଲ ଭିତରେ ଉଲ୍ଲିଖିତ କୁତ୍ସାକାରୀଙ୍କୁ ଜବାବ ମଧ୍ୟ ଦେଇଥିଲି ।

## ଆତ୍ମନିମଗ୍ନ ବ୍ୟକ୍ତିତ୍ୱ :

ବିଶ୍ୱବିଦ୍ୟାଳୟ ପରୀକ୍ଷା ବର୍ଜନ ସଂଗ୍ରାମ ! ଭାରତରେ ମୃତ୍ୟୁମୁଖୀ ବ୍ରିଟିଶ ସାମ୍ରାଜ୍ୟବାଦ ସାମ୍ରାଜ୍ୟ ହରାଇବା ଆଶଙ୍କାରେ ଆପଣାର କବଳିତ ପରାଧୀନ ଲୋକଙ୍କ ଉପରେ ବର୍ବର ଓ ନିର୍ଦ୍ଦୟର ଦମନକାରୀ ଶାସନ ଚଳାଇଥିବା ବେଳେ ସେହି ଶାସନ ବିରୋଧରେ ଖୋଦ୍ ବି:ଏ: ପରୀକ୍ଷାର୍ଥୀ ପରୀକ୍ଷା ବର୍ଜନର ନେତୃତ୍ୱ ନେବା ଏକ ଅଭାବନୀୟ ଘଟଣା । ଏଥିରେ ଯେଉଁମାନେ ନେତୃତ୍ୱ ନେଇଥିଲେ ସେମାନଙ୍କ ଭିତରୁ ଅଧିକାଂଶ ପରବର୍ତ୍ତୀ କାଳରେ ସକ୍ରିୟ ରାଜନୀତିର ପରିକ୍ରମ ହେଲେ । କିନ୍ତୁ ରଘୁ-ବାବୁଙ୍କର କ'ଣ ହେଲା ? ସେ କେଉଁଠି ନିମଜ୍ଜିତ ରହିଲେ ? ତାହା ମୋତେ ଆଶ୍ଚର୍ଯ୍ୟ କରିଛି ।

ସେ ମୋର ସହପାଠୀ ନଥିଲେ । କଲେଜରେ ସେତେବେଳେ ତାଙ୍କର ୪ର୍ଥ ବାର୍ଷିକ ଶ୍ରେଣୀ ; ମୋର ପୋଷ୍ଟ ଗ୍ରାଜୁଏଟ ଶ୍ରେଣୀ । ତେଣୁ ତାଙ୍କ ସଙ୍ଗରେ ମୋର ଅନ୍ତରଙ୍ଗତା ନଥିଲା । ୧୯୪୭ରେ 'ଅଗଷ୍ଟ ପନ୍ଦର' କବିତା ପ୍ରକାଶ ପାଇବା ପର୍ଯ୍ୟନ୍ତ ତାଙ୍କର ପରିଚୟ ଲାଭ କରିବାର ସୁଯୋଗ ମଧ୍ୟ ପାଇ ନଥିଲି । ଏବେବି ଯେ ମୁଁ ତାଙ୍କୁ ଭଲଭାବେ ଚିହ୍ନିଛି, ତାହା କହିବାକୁ ସାହସ କରିପାରିବି ନାହିଁ ;

୧୯୪୫ରେ ଯୁଦ୍ଧ ସରିଲା ପରେ ୧୯୪୭ ଯାଏ ଭାରତରେ, ବିଶେଷତଃ ଉଭୟ ମୋଗଲବନ୍ଦୀ ଓ ଗଡ଼ଜାତ ଓଡ଼ିଶାରେ ଯେଉଁ ଜ୍ୱାଳାମୁଖୀ ଜନଜାଗରଣର ଜୁଆର ଉଠିଥିଲା ସେଥିରେ ରଘୁବାବୁଙ୍କୁ ସକ୍ରିୟ ଭାଗ ନେଇଥିବାର ମୁଁ ଦେଖିନାହିଁ । ସେଥି-ପାଇଁ ମୁଁ କହିବାକୁ ବାଧ୍ୟ ହେଉଛି ସେ ଥିଲେ ଜଣେ ଆତ୍ମନିମଗ୍ନ ବ୍ୟକ୍ତି । ବୁଦ୍ଧିଜୀବୀ

ଆତ୍ମନିମଗ୍ନ ହେଲେ ସେ ହୁଏ 'ଏଲିଟ୍' — ଯାର ଓଡ଼ିଆ ହେବ 'ସମ୍ଭ୍ରାନ୍ତ' । ସାହିତ୍ୟିକ, ବିଶେଷତଃ କବି ହେବାକୁ ହେଲେ ଆତ୍ମନିମଗ୍ନତା ସେଥିର ପ୍ରଧାନ ଅନୁସଙ୍ଗ ହୁଏ । ପୋଲଣ୍ଡର ଲେଖିକା ଓ୍ୟାଣ୍ଡା ଓ୍ୟାଲେସ୍କିଅଙ୍କର ବହିର ଇଂରାଜୀ ଅନୁବାଦ 'Just Love'କୁ ସେ ଅନୁବାଦ କରି ପ୍ରକାଶ କରିଥିଲେ । ଫାସିଷ୍ଟ-ବିରୋଧୀ ଦେଶପ୍ରେମୀ ସଂଗ୍ରାମର କେତେକ ଝଲକ ସେହି ଉପନ୍ୟାସରେ ସ୍ଥାନ ପାଇଥିଲା । ସେତେବେଳେ ସେହି ଇଂରାଜୀ ବହିଟି ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ବହୁ ଆଦର ଲାଭ କରିଥିଲା । କିନ୍ତୁ ଏକଥା ଭୁଲିଗଲେ ଚଳିବ ନାହିଁ ଯେ ଫାସିଷ୍ଟ ବିରୋଧୀ ରକ୍ତକ୍ଷୟୀ ମହାନ୍ ସଂଗ୍ରାମର ଆଲେଖ୍ୟ ଭାବରେ ସେତେବେଳେ ଯନ୍ତ୍ରଣା ଜର୍ଜର ସଂଗ୍ରାମୀର ଅନନ୍ୟ ଦେଶପ୍ରେମର ସମସ୍ୟା ସଙ୍କୁଳ ବିଦାରକ ଆତ୍ମବଳିର ଯେଉଁ କେତୋଟି ଯୁଗାନ୍ତକାରୀ କାଳଜୟୀ ଉପନ୍ୟାସ ଇଂରାଜୀ ଅନୁବାଦ ଆକାରରେ ପାଠକ ସମ୍ମୁଖକୁ ଆସିଛି, ତାହା ସହିତ 'Just Love'ର ତୁଳନା ହୁଏ ନାହିଁ । ଏପରି ଏକ ବିରାଟ ଗ୍ରନ୍ଥକୁ ରଘୁବାବୁ କାହିଁକି ଅନୁବାଦ କରିବାକୁ ପ୍ରଣୋଦିତ ହୋଇଥିଲେ, ଓ ପ୍ରକାଶ କରିଥିଲେ ତାହା ଏ ପର୍ଯ୍ୟନ୍ତ ମୋର ଧାରଣାର ଅଗମ୍ୟ ।

ପୁଣି ସେହି ଅନୁବାଦର ଶୀର୍ଷକ ଥିଲା 'ପ୍ରେମର ନିକଷ' । 'Just Love'ର କଥାବସ୍ତୁ ହେଉଛି ଏକ ସାଧାରଣ ପରିବାର ଉପରେ ଓ ତାଙ୍କର ପରିବେଶ-ସଂସାର ଭିତରେ ମୃତ୍ୟୁର ଘନଘଟା । ସୁସ୍ଥ ଓ ସମାହିତ ଜୀବନ ମୂର୍ଚ୍ଛି ଦେଇ ଯେଉଁମାନେ ଆପଣାକୁ ସେହି ପ୍ରଚଣ୍ଡ ଦେଶରକ୍ଷା ଦାବାନଳରେ ପ୍ରବେଶ କରିବାକୁ ସମର୍ପିତ ହେଲେ, ସେମାନେ କାହିଁକି ଗଲେ ? 'Just for Love' ଦେଶପ୍ରେମ ପାଇଁ । ଏହାହିଁ ଏହାର କଥାବସ୍ତୁ । ରବୀନ୍ଦ୍ରନାଥଙ୍କ କବିତାଟି ଧାଡ଼ିଏ ମନେ ପଡ଼ୁଛି—

ମନେ କି କରେଛ ବନ୍ଧୁ
ଏ ହାସି ଅତଇ ମଧୁ
ପ୍ରେମ ନା ଦିଲେ କି ହୟ
ଶୁଧୁ ହାସି ଦିଲେ ?

ସେହି ପ୍ରେମ ! କେବଳ ପ୍ରେମ ! ତାହା କେବଳ ଦୂରରୁ ଅଶ୍ରୁତର୍ପଣ ଦ୍ୱାରା ନୁହେଁ କିମ୍ବା କେବଳ ଦେଶର ଗୌରବଗାନରେ ଉତ୍ଫୁଲ୍ଲିତ ହେବାରେ ମିଳେ ନାହିଁ । ତାହା ମିଳେ ଦେଶକୁ ପ୍ରକୃତ ଭଲ ପାଇବାରେ । ପୁଣି ଦେଶ ତ କେବଳ ଗଛଲତା, ନଈ, ପାହାଡ଼ ନୁହେଁ ! ଦେଶ ବୋଲି କହିଲେ ଜନସାଧାରଣ । ତେଲୁଗୁ କବି ଗୁରଜାଡ଼ା ଅପ୍ପାରାଓଙ୍କ ଭାଷାରେ—

"ଦେଶମ୍ ଏଣ୍ଟେ ମାଟ୍ଟିକାଦୋଇ
ଦେଶମ୍ ଏଣ୍ଟେ ମନଷିଲୋଇ" ।

## ମାନବ ପ୍ରେମରୁହିଁ ଦେଶପ୍ରେମ

୧୯୫୫ରେ ଚେକୋସ୍ଲୋଭାକିଆରେ ମ୍ୟାଡାମ୍ ଫ୍ୟୁଚିକ୍—(ଏବେ ତାଙ୍କର ଲୋଚକାମ୍ଳୁତ ମୁଖ ମନେ ପଡ଼ୁଛି)—ମୋତେ କହିଥିଲେ (ଯାହାର ଓଡ଼ିଆ ହେଲା) "ବାବା, ତୁମେ କାହିଁକି ମୋର ସ୍ୱର୍ଗୀୟ ପତିଙ୍କର ବହି ଅନୁବାଦ କରନାହଁ ?" ମୁଁ ଉତ୍ତର ଦେଲି 'ମ୍ୟାଡାମ୍, ଆପଣଙ୍କର ପତିଙ୍କର ବହି ଓଡ଼ିଆରେ ଆଡଭୋକେଟ୍ ରଘୁନାଥ ଦାସ ଅନୁବାଦ କରିଛନ୍ତି ।' ସେ କହିଲେ 'ତାହିଁ ସେ ବହିଟି ମୁଁ ପାଇନାହିଁ ? ସ୍ୱର୍ଗୀୟ ଫ୍ୟୁଚିକ୍‌ଙ୍କର ବହିର ଅନୁବାଦ ପୃଥିବୀର ଚଉଡିରିଶଟି ଭାଷାରେ ହୋଇ ସାରିଛି । ତୁମେ ସେ ଅନୁବାଦ ବହିରୁ ଖଣ୍ଡିଏ ମୋତେ ପଠାଇ ପାରିବ ?' ମୁଁ ପ୍ରତିଶ୍ରୁତି ଦେଲି, ପଠାଇବି । କିନ୍ତୁ ମୁଁ ସେ ବହି ପଠାଇ ନାହିଁ । କାରଣ ସେ ବହିର ଶୀର୍ଷକ 'ଫାଶି ଆସାମୀର ସ୍ୱେଚ୍ଛ ଚିଠି' । ଏ ବହିଟିର ପାଣ୍ଡୁଲିପିର ଖଣ୍ଡ ଖଣ୍ଡ ପୃଷ୍ଠା ଚେକ୍ ଦେଶପ୍ରେମୀ ଜେଲରକ୍ଷୀ ହାତରେ ଫ୍ୟୁଚିକ୍ ତାଙ୍କର ସ୍ତ୍ରୀଙ୍କ ପାଖକୁ ଗୋପନରେ ପଠାଉଥିଲେ । ଏଥିପାଇଁ ଏହାର ନାମ ହେଲା 'ସ୍ୱେଚ୍ଛ ଚିଠି' । ବହିଟିର ଲେଖକ ନାତ୍ସି ସରକାରର ଜଘନ୍ୟ ବିଚାରରେ ହେଲେ 'ଫାଶି ଆସାମୀ' । ତେଣୁ ବହିଟିର ନାମକରଣ ହେଲା 'ଫାଶି ଆସାମୀର ସ୍ୱେଚ୍ଛ ଚିଠି' । ଫାଶିର ମଞ୍ଚରୁ ଯିଏ ଜୀବନର ଜୟଗାନ ଗାଇଗଲା, ସେହି ଅଦ୍ଭୁତ ପ୍ରତିଭା ଜୁଲିୟସ୍ ଫ୍ୟୁଚିକ୍ ! ବହିର ମୂଳ ଚେକ୍ ଭାଷାର ଇଂରାଜୀ ଅନୁବାଦକୁ କେବଳ ଆଖିରେ ଦେଖିନେଲେ ମଧ୍ୟ ମାନବତା ପ୍ରତି ଗଭୀର ପ୍ରେମ ଓ ଜନତାର ଅଭ୍ୟୁତ୍ଥାନର ଉଦାତ୍ତ ଆମନ୍ତ୍ରଣ ଧମନୀରେ ରକ୍ତର ଧାରାକୁ ଲାଭାରେ ପରିଣତ କରେ । ଅଥଚ କୌଣସି ବହିଷ୍ଟଲରେ ଏହି ଅନୁବାଦ ବହିକୁ ଦେଖିଲେ ନିରାହ ସାଧାରଣ ପାଠକ ମନେ କରିବା ସ୍ୱାଭାବିକ ଯେ ଏହା ଏକ ରହସ୍ୟ ରୋମାଞ୍ଚ କାହାଣୀ । ଅଥଚ ମୋର ମନେ ଅଛି, ସେହି ଓଡ଼ିଆ ବହିଟି ଅଜ୍ଞାନବାସ ବେଳେ ପଢ଼ି ମୁଁ ବିସ୍ମିତ ହୋଇଛି । ଏପରି ଅନବଦ୍ୟ ଅନୁବାଦ, ଅଥଚ ଏଡ଼େ ଅପଶୁଣା ଶୀର୍ଷକ । କହିରଖେଁ ଏ ବହିର ବଙ୍ଗଳା ଅନୁବାଦର ଶୀର୍ଷକ 'ଫାସିର ମଞ୍ଚ ଥେକେ' ।

## ପ୍ରଜ୍ଞାର ଅବକ୍ଷୟ

ରଘୁନାଥ ଦାସଙ୍କର ପ୍ରଜ୍ଞା ଥିଲା ଅସାମାନ୍ୟ ଗୋଦାବରୀଶ ମିଶ୍ରଙ୍କ ଭାଷାରେ "କବି ଏକ ପୁଣ୍ୟ ପଦାର୍ଥ । ସଂସାରରେ କେତେଟା କବି ମିଳନ୍ତି ?" ଏହାକୁ ଆଉ ଟିକେ ଆଗେଇ ନେଲେ ମୁଁ କହିବି ସଂସାରରେ କେତେଟା ସ୍ୱଭାବ ବିପ୍ଳବୀ କବି ମିଳନ୍ତି ? ଓଡ଼ିଶାରେ ଯେଉଁମାନଙ୍କର ରଘୁବାବୁଙ୍କ ଭଳି ପ୍ରତିଭା ଥିଲା ସେମାନେ ପ୍ରାୟ ସମସ୍ତେ କୁଣ୍ଠିତ, ଦାରିଦ୍ର୍ୟଲାଞ୍ଛିତ, ଅଭାବୀ, ନିମ୍ନତମ ମଧ୍ୟବିତ୍ତ ପରିବାରରୁ ଆସିଛନ୍ତି । ସାମନ୍ତବାଦର କଳଙ୍କିତ ବିଡ଼ମ୍ବନା, ହାହାକାରର ସଂସାର ଭିତରେ ସେମାନଙ୍କ ପ୍ରତିଭାର ସ୍ଫୁରଣ ହୋଇଥିଲା । ପୃଥିବୀର ପ୍ରତ୍ୟେକ ପରାଧୀନ ଦେଶ, ଏପରିକି ବୁର୍ଜୋୟା ପୁଞ୍ଜିବାଦୀ ଦେଶର କବି-

ସ୍ରଷ୍ଟାଗଣ ମଧ୍ୟ ଏହି ହିଁ ଜନ୍ମଜାତକ । ତାଙ୍କ ଭିତରୁ ବହୁଳ ସଂଖ୍ୟାରେ ,କବି-ସାହିତ୍ୟିକ-ଶିଳ୍ପୀ ଆପଣାର ଜ୍ଞାତସାରରେ,ଜ୍ଞାନପାପୀ ବାସନା ଯୋଗ ବୁର୍ଜୋୟାର ଛଦ୍ମଗ୍ରାହୀ ସମ୍ମାନ, ପଦବୀ ଓ ସାମାନ୍ୟ ସ୍ୱଚ୍ଛଳତା ପଥରେ ଗୃଲଯାଇଛନ୍ତି । ମୁଁ ଆଉଥରେ କହୁଛି, ଏହି ବର୍ଗର କବିମାନେ ନାମ ଓ ଖ୍ୟାତିର ଝଲସରେ ବ୍ୟାକୁଳ ହୋଇ ହେଉ, ବା ନହେଉ ପେଟି-ବୁର୍ଜୋୟା ସୁଲଭ ଅବକ୍ଷୟୀ ଲାଳସାର ଶିକାର ହୋଇଛନ୍ତି ! କାହିଁ ରଘୁବାବୁଙ୍କର ତ ସେଭଳି କୌଣସି ବାସନା ବା ଲାଳସାର ପ୍ରମାଣ ନାହିଁ ! ସେ ଜ୍ଞାତସାରରେ ବାଟ ଭାଙ୍ଗି ଗୃଲ ଯାଇନାହାନ୍ତି । ତେବେ ?

## ସୃଜନୀ ଶକ୍ତିର ଉତ୍ସ :

ସମସ୍ତ ସୃଜନୀ ଶକ୍ତିର ଅମୃତ, ଅକ୍ଷୟ ଉତ୍ସ ଜନସାଧାରଣ । ସେମାନଙ୍କର ଅାନ୍ଦୋଳନ ଓ ସଂଗ୍ରାମ ସହିତ ସଂପର୍କ ଚ୍ଛିନ୍ନକରି କିଏ କବି ହୋଇ ରହିପାରେ ? ପୁଣି ବିପ୍ଳବୀ କବି ? ଏକଦା ବାଗବୁଲ ଶ୍ରମିକ ଯେତେବେଳେ 'ମା' ଉପନ୍ୟାସ ଲେଖି ବିଶ୍ୱସାହିତ୍ୟରେ ସର୍ବହରାର ନିଃଶ୍ୱାସ-ଦୃଢ ମହାନ କୃତୀ ରଖିଲେ, ସେତେବେଳେ କ'ଣ ଅଉ ବାକୀ ଥିଲା କହିବାକୁ ଯେ 'ଗର୍କି' ସର୍ବହରାର ସହିତାକାର ? ତଥାପି ସେହି ଗର୍କି ରୁଷ ବିପ୍ଳବ ପରେ ମଧ୍ୟ ସନ୍ଦେହର ଅନଳରେ ଦଗ୍ଧ, ଦ୍ୱିଧାରେ, ଓ ନାନା ପ୍ରକାର ଅପାନ୍ତଃ ବିପ୍ଳବୀ ଧ୍ୱନିରେ ପ୍ରଭାବିତ ହେଲେ । ତାଙ୍କୁ ଲେନିନ୍ ପତ୍ର ଲେଖି ବାଧ୍ୟକଲେ "ତୁମେ ଯେଉଁ ପରିବେଶରେ ରହିଛ, ସେଥିରେ ତୁମର ମନ ଯେ ନାନା ଦ୍ୱିଧା ଓ ସନ୍ଦେହର ଘର ହୋଇଯିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତୁମେ ତୁରନ୍ତ ଲେନିନଗ୍ରାଡ଼ର ତୁମର ପରିବେଶ ଓ ନିତିଦିନିଆ ଅସନ୍ତୁଷ୍ଟ, ଅବକ୍ଷୟୀ ସହଚରମାନଙ୍କଠାରୁ ତଫାତ୍ ହୋଇଯାଅ । ତୁମେ ସେଇ ଜନତା ପାଖକୁ ଯାଅ, ଯିଏ ତୁମର ଲେଖନୀରେ ଶକ୍ତି ଦେଇଛି । ତୁମେ 'ମା' ଭଳି ଆଉ ମାତ୍ର ଖଣ୍ଡିଏ 'ଉପନ୍ୟାସ' ଲେଖ । ମୋର ଏତିକି ନିବେଦନ ।" ଓଡ଼ିଶାର ଦୁର୍ଭାଗ୍ୟ ଯେ ରଘୁନାଥ ଦାସଙ୍କ ପରି କବି ୧୯୫୩ରୁ ମୌନ ହୋଇଗଲେ । 'ପୁନଶ୍ଚ'ରେ ସେ 'ଯେତେ ଚଢ଼ି ଚାଲିଗଇ ଯାହା' ଶୀର୍ଷକ ଉପୋଦ୍‌ଘାତରେ ଏହି ମୌନତାର ଯେଉଁ କାରଣ ଆବିଷ୍କାର କରିଛନ୍ତି ତାହା ଠିକ୍ ଜନତା ଉପରେ ବିଶ୍ୱାସ ନଥିବାର ହିଁ ପ୍ରମାଣ । ତାହା ନହେଲେ ସେ ଆପଣାକୁ 'କଣ୍ଟାସ୍ଥ ପକ୍ଷୀ'ର ଅସହାୟ ଅବସ୍ଥାରେ ପକାଇ ନଥାନ୍ତେ । ବରଂ କଣ୍ଟାସ୍ଥ ମୁହଁରେ ସେ ମାନିଛନ୍ତି ଯେ ନେତୃତ୍ୱର ବାସ୍ତବ ଜମ୍ଭା କଳଙ୍କିତ ଧୋକାବାଜି କେବଳ ସାମୟିକ । ନିଶ୍ଚିତ ଭାବରେ ରାମଚନ୍ଦ୍ରର ଆବିର୍ଭାବ ହେବ । ସେ ରାମଚନ୍ଦ୍ର ଜଣେ ଲୋକ ନୁହେଁ ।

କୋଟି କୋଟି ଜନତା ହିଁ କେବଳ ବିପ୍ଳବୀ କବିର ରାମଚନ୍ଦ୍ର । ସାମୟିକ ଦୈହିକ ନିଃସଙ୍ଗତା କୌଣସି ବିପ୍ଳବୀକୁ ବା ବିପ୍ଳବୀ କବିକୁ ହତାଶ କରିପାରେ ନାହିଁ ;

ଯଦି ସେ ଇତିହାସର ସ୍ରଷ୍ଟା ଜନସାଧାରଣଙ୍କ ଠାରେ ଆସ୍ଥା ନ ହରାଏ । ମୃତ୍ୟୁ ସମ୍ମୁଖରେ ମଧ୍ୟ ସେ ଜୀବନର ଜୟଗାନ କରେ । ତାଙ୍କର ପୂର୍ବସୂରି, ଯାହାଙ୍କ 'ଫାଶି କାଠରୁ ଜୀବନର ଇସ୍ତାହାର'କୁ ସେ ଅନୁବାଦ କରିଥିଲେ ସେ ହିଁ ଏହି ମହାନ୍ ସତ୍ୟର ସାକ୍ଷୀ ।

**ତ୍ରୁଟି ବିଚ୍ୟୁତି ସ୍ୱାଭାବିକ :**

ପୃଥିବୀରେ ଏମିତି କୌଣସି ସନ୍ଥକୁ ସନ୍ଥ ବା ମନୁଷ୍ୟ କଳ୍ପିତ-ଆରୋପିତ ମହାତ୍ମା ଜନ୍ମ ହୋଇ ନାହାନ୍ତି ବା ହେବେ, ଯାହାଙ୍କର ଜୀବନରେ ତ୍ରୁଟି-ବିଚ୍ୟୁତି ଘଟିନାହିଁ । ତେଣୁ ତ୍ରୁଟି-ବିଚ୍ୟୁତି ଅବଶ୍ୟମ୍ଭାବୀ । ଓଡ଼ିଆରେ ପଢ଼ିଲା ଅଛି "ପହିଲି ବାଜି ଖିମ ହାରେ" । ଏଠାରେ ଖିମ କେବଳ ଏକ ମନୁଷ୍ୟ ନୁହେଁ । ଖିମର ଅର୍ଥ ଖିମ ପରାକ୍ରମଶାଳୀ । ଏହି ଉକ୍ତିଟି ବିଜ୍ଞାନସମ୍ମତ । ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ-ବିଜ୍ଞାନର ଏହା ନିୟମ । ସହଜ କଥାରେ, ପ୍ରତି ମୁହୂର୍ତ୍ତରେ ଧାବମାନ, ପରିବର୍ତ୍ତନସଙ୍କୁଳ ସମାଜ ଭିତରେ, ଯେ କୌଣସି ଯୋଜନାର ଅଟକଳ ଭିତରେ ବହୁ ପୂର୍ବରୁ ଅପ୍ରତ୍ୟାଶିତ ସଙ୍କଟ ଦେଖାଦିଏ । ତେଣୁ କୌଣସି ବୈଜ୍ଞାନିକ ଗବେଷଣାର ପହିଲି ପ୍ରୟୋଗ ସଫଳ ହେବାର ଶୁଣାଯାଇନାହିଁ । ରୁଷ ବିପ୍ଳବ, ଚୀନ ବିପ୍ଳବ ଓ ପୃଥିବୀର ଶତ ଶତ ମୁକ୍ତି ଆନ୍ଦୋଳନର ଇତିହାସ ପ୍ରମାଣ କରିଛି ଯେ ପହିଲି ବାଜି ଯେତେ ବୀର, ପରାକ୍ରମଶାଳୀ, ସଙ୍ଗଠନପଟୁ ନେତୃତ୍ୱ ଥିଲେ ମଧ୍ୟ ତାହା ପରାସ୍ତ ହେବା ଶତକଡ଼ା ଶହେ ଅବଶ୍ୟମ୍ଭାବୀ । ଏଥିରେ କାତର ହୋଇ ଭାଙ୍ଗି ପଡ଼ିବାର କାରଣ ନାହିଁ । ଯେଉଁ ତ୍ରୁଟି ବିଚ୍ୟୁତି ଯୋଗୁଁ କାର୍ଯ୍ୟ, ପ୍ରୟୋଗ, ସଂଗ୍ରାମ ବା ଯାହାକିଛି ଅସଫଳ ହେଲା, ତାହାକୁ ଦୂର କରିବା ହେଉଛି ବୈଜ୍ଞାନିକ ବିପ୍ଳବୀର ଧର୍ମ । ୧୯୦୫ରେ ପ୍ରଥମ ରୁଷ ବିପ୍ଳବ ପରାସ୍ତ ଓ ବିପର୍ଯ୍ୟସ୍ତ ହୋଇଗଲା । ରୁଷର ବଲଶେଭିକ ପାର୍ଟିର ବହୁ ତଥାକଥିତ ନେତା, ( ଏମାନଙ୍କ ମଧ୍ୟରେ ଥିଲେ ଟ୍ରଟସ୍କି ) ହତୋତ୍ସାହିତ ହୋଇ ଯାଇଥିଲେ । ଜାରସାହିର ପ୍ରଚଣ୍ଡ ଦମନ ଓ ଅନ୍ୟ ପକ୍ଷରେ ଡୁମା ବା ପାର୍ଲିଆମେଣ୍ଟ ଗଣତନ୍ତ୍ରର ଥୋପ ବହୁ ବିପ୍ଳବୀଙ୍କୁ ଆକୃଷ୍ଟ କରିବାର ଦେଖା ଯାଇଥିଲା । କିନ୍ତୁ ଅକାତର, ଦୂରଦ୍ରଷ୍ଟା ଲେନିନ କହିଲେ "ଏହି ୧୯୦୫ ବିପ୍ଳବ ହେଉଛି ଏକ ଷ୍ଟେଜ ରିହର୍ସାଲ । ପ୍ରକୃତ ମହାନାଟକ ଆସୁଛି ।"

ଅବଶ୍ୟ "ସାଥୀ, ସଭିଏଁ ଲେନିନ ହୁଅନ୍ତି ନାହିଁ ଅଥବା ଷ୍ଟାଲିନ !" କିନ୍ତୁ ଲେନିନ୍‌ଙ୍କର ଆମେ ଶିଷ୍ୟମାନେ ତାଙ୍କ ଠାରୁ ତ ଶିକ୍ଷା କରିଛୁଁ, ଯେ ଜନତା ଯେ ପର୍ଯ୍ୟନ୍ତ ପର୍ଯ୍ୟୁଦସ୍ତ, ଯେ ପର୍ଯ୍ୟନ୍ତ ଶୋଷିତ, ଯେ ପର୍ଯ୍ୟନ୍ତ ଶ୍ରେଣୀ ସମାଜ ବିଦ୍ୟମାନ, ସେ ପର୍ଯ୍ୟନ୍ତ ବିପ୍ଳବର ବାରମ୍ବାର ପରାଜୟ ହିଁ ବିଜୟର ସୋପାନ ।

ଏହି ଆପ୍ତ ଉଦାହରଣ ଏଠାରେ ପ୍ରାସଙ୍ଗିକ । କାରଣ ରଘୁବାବୁ ଲେଖିଛନ୍ତି— "ମୁଁ ନିଶ୍ଚିତ ଭାବରେ ଅନୁଭବ କଲି ଜନଗଣଙ୍କର କର୍ଣ୍ଣଧାରମାନେ ଗଣମୁକ୍ତି ଆଭିମୁଖ୍ୟ

ପ୍ରତି ଅନୁରକ୍ତ ନୁହନ୍ତି । ଜନସାଧାରଣଙ୍କୁ ସେମାନଙ୍କର ଅସ୍ପଷ୍ଟ, ଅସୁବିଧା କଥା କହି, ମନ କିଣି, ମିଥ୍ୟା ପ୍ରତିଶ୍ରୁତି ଶୁଣାଇ, ସେମାନଙ୍କୁ ପ୍ରତାରିତ କରି ସର୍ବଦା ଆପଣାର ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ଲାଗି ଅଧିକ ଯତ୍ନବାନ । ସେ ପରିପ୍ରେକ୍ଷୀରେ ବିପ୍ଳବୀ କବିତା ଜନଗଣଙ୍କ ପ୍ରତି ପ୍ରତାରଣାର ହତିଆର ହୋଇଥାନ୍ତା ସିନା । ମୁଁ ସେ ପାପରେ ଭାଗୀଦାର ହେବାକୁ ଗ୍ରହି ନଥିଲି । ବିପ୍ଳବ କବିତା ବନ୍ଦ କରିବାକୁ ମୋର ବୈପ୍ଳବିକ ଚେତନା ମୋତେ ଦୃଢ଼ ଭାବରେ ବାରଣ କରିଥିଲା ।"

( ପୁନଶ୍ଚ ।୮ ପୃଷ୍ଠା -- ରଘୁନାଥ ଦାସ )

'ଜନଗଣଙ୍କର କର୍ଣ୍ଣଧାରମାନେ' ସ୍ୱପ୍ନ ତରର ନିସ୍ପାମାଜ ନୁହନ୍ତି । ସେମାନଙ୍କର ମନକିଣା ମିଥ୍ୟା କଥାରେ ବିପ୍ଳବର ଜନ୍ମ ସମ୍ଭାବନା ନିର୍ଭର କରେ ନାହିଁ । ସେ ପରିପ୍ରେକ୍ଷୀରେ ବିପ୍ଳବୀ କବିତାର ଭୂମିକା ପାଇଁ କବିର କର୍ତ୍ତବ୍ୟ ଜନସାଧାରଣଙ୍କର ଗଭୀର ଅଭ୍ୟନ୍ତରରେ ପ୍ରବେଶ କରିବା । ମାଓ-ସେ-ତୁଙ୍ଗ ଭାଷାରେ "ପହଁରିବାକୁ ହେଲେ ପାଣିରେ ପଶିବାକୁ ହେବ । କାଦୁଅ ଦେହରେ ଲାଗିବ ।" ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ ।

ନିଷ୍ପାପ ଆତ୍ମା :

ମୋତେ କହିବାକୁ ଶଙ୍କା ଲାଗୁଛି । ତେବେ ବି କହିବାକୁ ପଡ଼ୁଛି ଯେ ରଘୁବାବୁ ଥିଲେ ଜଣେ ନିଷ୍ପାପ ଆତ୍ମା । ଠିକ୍ ଜଣେ ଜୈନ ମୁନିଙ୍କ ପରି । 'ଅଗଷ୍ଟ ପନ୍ଦର' କବିତା ପ୍ରକାଶିତ ହେବା କାଳରେ ସେ ରୋମାଣ୍ଟିକ ଦୃଷ୍ଟିରୁ ସଂସାରକୁ ଦେଖୁଥିଲେ । ସେତେବେଳେ କାରାଗାରରୁ ମୁକ୍ତି ପାଇଲା ଉପଲକ୍ଷେ ଏହି ଅକିଞ୍ଚନ ଲେଖକ ଲେଖିଥିଲା—

"ହାଘାଇ ଯେବେ ଆଟର ହେଲାଣି
ଦିଲ୍ଲୀ ବା କେତେ ଦୂର ?
ଶୁଣ ଝିଙ୍କର ପୂଜାରେ ସାଥୀ
ଆଜି ମୁକ୍ତି ପାଇଲାରେ"

ରଘୁବାବୁଙ୍କ ସେ ଗଭୀର ଆତ୍ମପ୍ରତ୍ୟୟ କାହିଁଗଲା ? କାହିଁକି ଗଲା ?

ନାଡ଼ିର ସ୍ପନ୍ଦନ ଥିବାଯାଏ ତାହା ଯେପରି ମନୁଷ୍ୟ ପାଇଁ ଥାଏ "**Taken for granted**" ଅର୍ଥାତ୍ "ଅଛି ତ ଥିବ, ରହିବ" ଠିକ୍ ସେପରି ଭାବରେ ଆଜି ସେହି ସ୍ପନ୍ଦନର ଶେଷ ଛିଟାଟି ନିଷ୍ପନ୍ଦ ହୋଇଯିବା ପରେ ଆମେ ଖୋଜୁଛୁ "ସେ କାହିଁଗଲା, କାହିଁଗଲା ? ଓଡ଼ିଶାର ସାହିତ୍ୟ, ବିପ୍ଳବୀ ସାହିତ୍ୟ ପାଇଁ ଏକ ବହୁମୂଲ୍ୟ ଦୁଷ୍ପ୍ରାପ୍ୟ

ସମ୍ଭାବନା କାହିଁଗଲା ?" ଆପଣାକୁ, ସାରା ବିପ୍ଳବୀ ଆନ୍ଦୋଳନର ଦୁର୍ବଳତାକୁ ଢୋଷିବା ଛଡ଼ା ଆଉ ଗୋଟିଏ କଥା ଶିକ୍ଷା କରାଯାଇପାରେ । ସେତେବେଳେ ଆଉ ଝରା ହୋଇଥିବା ତପ୍ତ କାଞ୍ଚନ ପରି ଥିଲା ଯୁବକର ଅନଳରେ ପରିଚ୍ଛନ୍ନ ଯୁବମାନସ । ସାରା ଭାରତବର୍ଷରେ ସେତେବେଳେ ଥିଲା ବିପ୍ଳବୀ କବିତା, ଶିଳ୍ପ, ସାହିତ୍ୟର ଏକ ମହାସଂଗମଣ କାଳ । ବଙ୍ଗଳାରେ ତରୁଣ କବିମାନେ ନଜରୁଲ-ପରବର୍ତ୍ତୀ ଓ କିଛି ପରିମାଣରେ ନଜରୁଲୀୟ ଉଦାତ୍ତ ଗୁରଣଗୀତ ରଚନା କରୁଥିଲେ । ସେତେବେଳେ 'ଅଗଷ୍ଟ ପନ୍ଦର' ଓଡ଼ିଶାର ମଧ୍ୟବିତ୍ତ ଯୁବ ମହଲରେ ଯେଉଁ ଉନ୍ମାଦନା ସୃଷ୍ଟି କରିଥିଲା ତାହା ଏବେ ବି ସ୍ମରଣୀୟ ।

ସେତେବେଳେ ବିପ୍ଳବୀ କବିତା ଆନ୍ଦୋଳନର ଜଣେ ବିଶିଷ୍ଟ ନାୟକ ସଚି ରାଉତରାୟ ଅପସରି ଯାଇ ନେପଥ୍ୟରୁ ଝଙ୍କାର କଲେ—

କିଏ ଆସିବେ, ଜଣାନାହିଁ
ଜଣା ବା ଅଜଣା
ତଥାପି ଦିନ ଗଣେ ନିର୍ଜନ କୁଟୀରେ
ମନେ ମନେ ଖୋଜିପାଏ
ସେମାନଙ୍କ ହଜିଲା ଠିକଣା ।

( ସଙ୍କେତ ୧୯୪୯ )

ସେତେବେଳେ ସେ ସମୟର ସାମୟିକ ସାହିତ୍ୟ ପତ୍ରିକା 'ସଙ୍କେତ'ର ପରବର୍ତ୍ତୀ ସଂଖ୍ୟାରେ ରଘୁନାଥ ଦାସ ଲେଖିଲେ—

"ଜାଣେ ଜାଣେ ସେମାନେ ଆସିବେ
ଜୟଧ୍ୱନି ଯାର ଶୁଭେ ଲକ୍ଷ କୋଟି କଣ୍ଠେ ।"

ରଘୁବାବୁଙ୍କ ଜୀବନ ଆମର ଭବିଷ୍ୟତ ବଂଶଧରଙ୍କ ପାଇଁ, ବିପ୍ଳବୀଙ୍କ ପାଇଁ ଓ ବିପ୍ଳବର ଜୟଯାତ୍ରା ପାଇଁ ଏକ ଶିକ୍ଷକ, ଏକ ସ୍ମାରକ ଭାବରେ କାର୍ଯ୍ୟକରୁ । ସେ ଥିଲେ ଗୋଟିଏ ଦୀପଶିଖା, ଯାହା ଝଞ୍ଜାବାତ୍ୟାରେ ଆଶ୍ରୟ ନପାଇ ଲିଭିଗଲା, କିନ୍ତୁ ନଇଁଲା ନାହିଁ ; କାରଣ ଦୀପଶିଖା କେବେ ନଇଁ ପଡ଼େ ନାହିଁ । ଆମର ସହକର୍ମୀ ଓ ସହଯୋଦ୍ଧାଙ୍କର ଅକ୍ଷମଣୀୟ ଅପରାଧରୁ ଭବିଷ୍ୟତକୁ ବଞ୍ଚାଇବାକୁ ହେଲେ ଆମକୁ ତାଙ୍କର ନଜିର ରକ୍ଷା କରିବାକୁ ହେବ ।

ଶେଷରେ କହିବି, 'ଲେନିନ'ଙ୍କ ଭାଷାରେ କବି କୌଣସି ସର୍ବହରା ଏକନାୟକତ୍ୱର ହୁକୁମଦାର ମାନେ ନାହିଁ । ତାକୁ ସେଥିରେ ଆବଦ୍ଧ କରିବା ଅର୍ଥ ତାହାର ସୃଜନୀ ଶକ୍ତିରେ ବାଧା ଦେବା ଓ ତାହା ହେବ ଜନସାଧାରଣଙ୍କ ପ୍ରତି କ୍ରୁର ପ୍ରତାରଣା । ଆଜିର

ନାମଧାରୀ ବିପ୍ଳବୀ ପାର୍ଟିରେ କବି ଯୋଗ ଦେଉ କି ନ ଦେଉ—ସେମାନଙ୍କର ଜନସାଧାରଣଙ୍କ ଭିତରେ କେତେଦୂର ଚେର ପଶିଛି ତାହା ତ ଜଣାଶୁଣା । ପ୍ରତ୍ୟେକ ବିପ୍ଳବୀ କବିଙ୍କୁ, ସେ ବରଟୋଲ୍ଟ ବ୍ରେଖ୍ଟ ହୁଅନ୍ତୁ ବା ପାବଲୋ ନେରୁଦା ହୁଅନ୍ତୁ, ଆପଣାର ଜନସହଯୋଗ ଓ ଜନ ଆନ୍ଦୋଳନର ବିପଜ୍ଜନକ ପିଚ୍ଛିଳ ପଥରେ ଯିବାକୁ ହୁଏ । ଏପରିକି ରୋମାଣ୍ଟିକ ଯୁଗର କବି କୀଟସ୍ – ତାଙ୍କର ଅପୋଗଣ୍ଡ ଯୁବକ ଅନୁଭୂତିରୁ କହିଛନ୍ତି – "ସେ (କବି) ଏଠାରେ, ସେଠାରେ ସର୍ବତ୍ର । ଯାହା ଶୁଚିବାୟୁଗ୍ରସ୍ତ ଦାର୍ଶନିକଙ୍କୁ ରୋଷାୟିତ କରେ, ତାହା କବିଙ୍କୁ ଉତ୍ଫୁଲ୍ଲିତ କରେ ।"

ମୋର ଦୁର୍ଭାଗ୍ୟ ଯେ ରଘୁବାବୁଙ୍କର ମୃତ୍ୟୁ ପୂର୍ବରୁ ତାଙ୍କର 'ପୁନଶ୍ଚ' କବିତା ସଙ୍କଳନ ମୁଁ ଦେଖି ନ ଥିଲି । ସେଥିରେ ଥିବା 'ଏ ଚଣ୍ଡ ଚନ୍ଦ୍ରର ଯାତ୍ରା' ପଢି ପାରିଥିଲେ ତାଙ୍କର ମୃତ୍ୟୁ ପୂର୍ବରୁ ତାଙ୍କର ହତାଶାକୁ ନିଶ୍ଚିହ୍ନ କରିବାକୁ ସମସ୍ତ ଉଦ୍ୟମ କରି ଯାଇ ପାରି- ଥାଆନ୍ତି । ସେ ହିସାବରେ ଆମେ ସମସ୍ତେ "ଗଣମୁକ୍ତି ଲେଖକ ଓ ଶିଳ୍ପୀ" ଗୋଷ୍ଠି ମଧ୍ୟ ଅପରାଧୀ । ଦୁଃଖିନୀ ଓଡ଼ିଶାର ପାଠକ ଗୋଷ୍ଠି ବିଶେଷତଃ ଏହାର ମହାନ୍ ଐତିହ୍ୟ ସମ୍ପନ୍ନ ଜନସାଧାରଣଙ୍କ ନିକଟରେ ଆମର ଅପରାଧ ପ୍ରକାଶ କରିବାକୁ ଆମେ କୁଣ୍ଠିତ ହେବୁ ନାହିଁ ଓ ତାହା ଭବିଷ୍ୟତରେ ଯେପରି ନ ଘଟେ ସେଥିପାଇଁ ହୁସିଆର ରହିବୁ ।

ଏତିକି ମାତ୍ର ଆମର ଦୃଢ଼ ଅଙ୍ଗୀକାର ।



# ରଘୁବାବୁ

## ମନମୋହନ ଚୌଧୁରୀ

ରଘୁବାବୁଙ୍କ ସହିତ ପ୍ରାୟ ତିରିଶ ବର୍ଷର ପରିଚୟ । ୧୯୫୫-୫୬ରେ ଯେତେବେଳେ ଭୂଦାନ-ଗ୍ରାମଦାନ ଆନ୍ଦୋଳନ ପୂରା ଜୋରରେ ଚାଲିଥିଲା, କୋରାପୁଟରେ ଶହ ଶହ ଗାଁ ଗ୍ରାମଦାନ ହୋଇଥିଲା, ସେତେବେଳେ ସେ ଓ ତାଙ୍କ ସ୍ତ୍ରୀ ମନୋରମା ଦେବୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ଆସିଥିଲେ । ସେହିଦିନୁ ରଘୁବାବୁ କଟକରେ ସର୍ବୋଦୟ ଆନ୍ଦୋଳନ ପକ୍ଷରୁ ଆୟୋଜିତ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେଇ ଆସିଛନ୍ତି ଓ ନିଜର ବଳିଷ୍ଠ ବିଚାର ଦ୍ୱାରା ସମସ୍ତ କାର୍ଯ୍ୟକ୍ରମକୁ ସମୃଦ୍ଧ କରିଛନ୍ତି ।

ରଘୁବାବୁଙ୍କ ସହିତ ପରିଚୟ ସିନା ଏତେ କାଳରୁ, ମାତ୍ର ତାଙ୍କର ତ କେବେ ନିଜକୁ ପ୍ରଚାର କରିବାର ଅଭ୍ୟାସ ନଥିଲା, ସେଥିପାଇଁ ତାଙ୍କ ଭିତରେ କେତେ ଗୁଣ ଯେ ଭରି ରହିଥିଲା ତାହା ଜାଣିବାକୁ ସମୟ ଲାଗିଲା । ଯଥା : ସେ ଯେ ଏକ ଉଚ୍ଚକୋଟିର କବି ଥିଲେ ତାହା ଏଇ ମାତ୍ର ଅଳ୍ପଦିନ ତଳେ ଜାଣିବାକୁ ପାଇଲି ଯେତେବେଳେ ତାଙ୍କର କବିତାର ଏକ ସଙ୍କଳନ ହାତକୁ ଆସିଲା । ଭାଷା ଓ ଭାବରେ ସମୃଦ୍ଧ ଏଭଳି କବିତା ମୁଁ ଓଡ଼ିଆ ଭାଷାରେ କମ୍ ଦେଖିଛି ।

ତାଙ୍କର ବିଶିଷ୍ଟତା ଥିଲା ଯେ, ସେ ସବୁବେଳେ ବାଟ ଖୋଜୁଥିଲେ, ଆଜିର ଅନ୍ୟାୟ ଓ ଶୋଷଣରେ ଜର୍ଜରିତ ସମାଜକୁ, ତାର ଦୀନତମ ବ୍ୟକ୍ତିକୁ, ସୁଖ ଓ ଶାନ୍ତିର ଆସ୍ୱାଦନ ଦେବାର । ପ୍ରଥମ ଜୀବନରେ ମାର୍କ୍ସବାଦର ବିଚାରର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ପରେ ସେ ଗାନ୍ଧିଜୀଙ୍କର ବିଚାରପ୍ରତି ଆକୃଷ୍ଟ ହେଲେ । ମାତ୍ର ତାଙ୍କର ଏହି ବିଚାର ପରିକ୍ରମା ଏକ ଆଧ୍ୟାତ୍ମିକ ବିକାଶର ପରିଚୟ ଥିଲା । ଏଥିରେ 'ଗୁଖ୍ଣିଆ' ସ୍ୱଭାବ ଆଦୌ ନ ଥିଲା । କୌଣସି ବିଚାରକୁ ସେ ଉପରଠାଉରିଆ ଭାବରେ ଗ୍ରହଣ କରିଥିବାର ମୁଁ କେବେ ଦେଖି ନାହିଁ । ଅନେକ ଆଲୋଚନା ପ୍ରସଙ୍ଗରେ ଦେଖିଛି ଯେ ସବୁବେଳେ ନିଜର ସ୍ୱତନ୍ତ୍ର ମତ ସେ ବ୍ୟକ୍ତ କରିଥାନ୍ତି । ପ୍ରତ୍ୟେକ କଥାକୁ ଯୁକ୍ତିର କଷଟିରେ ପରଖି ଦେଖିଥାନ୍ତି ।

ତାଙ୍କର ନିଜସ୍ୱ ପରିସ୍ଥିତି ଯୋଗୁ ସେ ସେବା ଓ ସଂଗଠନ ମୂଳକ କାର୍ଯ୍ୟକ୍ରମରେ ନିଜେ ସମୟ ଦେଇ ପାରୁ ନ ଥିଲେ, ମାତ୍ର ତାଙ୍କର ସବୁବେଳେ ଏହି ଶ୍ରଦ୍ଧା ଥିଲା ଯେ

ଲୋକଙ୍କ ଭିତରେ ପ୍ରତ୍ୟକ୍ଷ କାମ ହେଉ, ଲୋକଙ୍କ ଭିତରେ ଜାଗରଣ ଆଣିବାପାଇଁ ଦୃଢ଼ ଉଦ୍ୟମ ହେଉ । ଏ ଦେଶର ଜନସାଧାରଣଙ୍କୁ ଉପରୁ ଗୁରୁଆଡ଼େ ଘୋଟି ରହିଥିବା ଦୁର୍ଦ୍ଦିନ ଭିତରୁ ଉଦ୍ଧାର ପାଇବାର ବାଟ ବଢେଇ ହେବ, ସେ ବିଷୟରେ ତାଙ୍କ ଭିତରେ ଗୋଟାଏ ପ୍ରକାରର ବ୍ୟାକୁଳତା ଥିଲା । କୌଣସି ସଂଗଠନ କାର୍ଯ୍ୟକ୍ରମର ସମ୍ବାଦ ପାଇଲେ ସେ ଆନନ୍ଦରେ ଏକ ପ୍ରକାର ଉଚ୍ଛୁଳି ଉଠୁଥିଲେ ।

ସାଧାରଣ ମଣିଷକୁ ଭଲ ପାଉଥିବା ଓ ତାହା ପାଇଁ ଚିନ୍ତା କରୁଥିବା ବ୍ୟକ୍ତି କମ୍ ଦେଖାଯାଆନ୍ତି । ମାତ୍ର ସେହିମାନେ ହିଁ ଏ ସମାଜ ରୂପକ ଭାତ ଥାଳିରେ ଲୁଣ ଭଳି । ସେହିମାନଙ୍କ ଯୋଗୁଁ ହିଁ ଆଶାର ଦୀପ ଲିଭି ନ ଯାଇ ପ୍ରଜ୍ଜ୍ୱଳିତ ହୋଇ ରହିଛି । ଏହିଭଳି ଏକ ମାନବ ପ୍ରେମୀଙ୍କୁ ବନ୍ଧୁରୂପେ ପାଇଥିବାରୁ ମୁଁ ନିଜକୁ ଭାଗ୍ୟବାନ ମଣୁଛି ।



# ସ୍ୱର୍ଗକୁ ପତ୍ର

## ଅଦ୍ୱୈତବଲ୍ଲଭ ରାୟ

ଶ୍ରଦ୍ଧେୟ ରଘୁନାଥ,

ତୁମ୍ଭେ ଆଜକୁ ଦୁଇବର୍ଷ ହେଲା ଆମଠାରୁ ଦୂରେଇ ଯାଇ ସ୍ୱର୍ଗରେ ନିଜର ଆସ୍ଥାନ ଜମାଇଲଣି । ସେଠାରେ ତୁମର ସମସାମୟିକଙ୍କ ସହ ବହୁ ପୁରାତନ ନେତା ଓ କର୍ମୀଙ୍କ ସାନ୍ନିଧ ଲାଭ କରି ହୁଏତ ଆମମାନଙ୍କୁ ଭୁଲି ଯାଇଥିବ ! ମାତ୍ର ଆମ୍ଭେମାନେ ତୁମକୁ ଭୁଲି ପାରିନାହୁଁ । ଏଥିର ଯଥେଷ୍ଟ କାରଣ ରହିଛି ।

ତୁମ୍ଭେ ଲବଣ ସତ୍ୟାଗ୍ରହ [୧୯୩୦]ରେ ଗାନ୍ଧିଜୀଙ୍କ ଡ଼ାକରାରେ ବାଳକ ଥାଇ ମଧ୍ୟ ଯୋଗଦେଲ । ସେ ସମୟର ବାନରସେନାଙ୍କ ମଧ୍ୟରେ ତୁମ୍ଭେ ଅନ୍ୟତମ । ମାତ୍ର ୧୧ବର୍ଷ ବୟସରେ ତୁମ୍ଭେ କେତେଦିନ କାରାବରଣ କରିଛ, ଏହା ମଧ୍ୟ ବାନର ସେନାଙ୍କ ମଧ୍ୟରେ ଆଲୋଚନା ହୋଇଥାଏ । ତୁମ୍ଭ ପିତା ଜଣେ ଶିକ୍ଷକ ଥାଇ ମଧ୍ୟ ତୁମ୍ଭର ଜାତୀୟତା ପଥକୁ ରୁଦ୍ଧ କରି ପାରିନାହାନ୍ତି ।

ପାଇକ ବିଦ୍ରୋହର କେନ୍ଦ୍ର ଖୋର୍ଦ୍ଧାର ଟାଙ୍ଗିପୁରରେ ତୁମ୍ଭର ଜନ୍ମ ହୋଇଥିବାରୁ ଯେ କୌଣସି କାର୍ଯ୍ୟରେ ତୁମ୍ଭେ ଟାଙ୍ଗିଙ୍କ ଭଳି ଆଗୁଆ ହୋଇ ସବୁ କ୍ଷେତ୍ରରେ ଧସିଯାଇ କାର୍ଯ୍ୟ କରିଯାଇଛ । ତୁମ୍ଭର ଗ୍ରନ୍ଥାବଳୀରେ ଲିଖିତ ପଦ୍ୟ କବିତା ଏବେ ମଧ୍ୟ ଆମ୍ଭମାନଙ୍କ ସ୍ମୃତିରୁ ଯାଇନାହିଁ ।

୧୯୪୦ ସମୟର ଛାତ୍ର ଆନ୍ଦୋଳନରେ ନେତା ରୂପେ କାର୍ଯ୍ୟକରି ତତ୍କାଳୀନ ଛାତ୍ର ସମାଜକୁ ଯେଭଳି ଉଦ୍‌ବୁଦ୍ଧ କରିଯାଇଛ ତାହା ଏ ଯୁଗର ଛାତ୍ରମାନଙ୍କ ମଧ୍ୟରେ ରେଖାପାତ କରୁଛି ।

ରାଜନୀତିରୁ ଫେରି ପୁଣି ଅଧ୍ୟୟନରତ ହେବା କେତେଦୂର କଷ୍ଟକର ତାହା ତୁମ୍ଭେ ଅଙ୍ଗେ ଲିଭାଇ ସାଇଛ ଏବଂ ଅଭାବ ଅନଟନ ମଧ୍ୟରେ ଶିକ୍ଷାକ୍ଷେତ୍ରରେ ଅଗ୍ରସର ହୋଇ ନିଜକୁ ମନୀଷୀ ରୂପେ ଠିଆ କରିବାର ଯେଉଁ ଦିଗ ଦର୍ଶନ ଦେଇଛ, ତାହା ଛାତ୍ର ସମାଜର ଆଦର୍ଶ ହୋଇ ରହିଛି । କେବଳ ଏତିକି ନୁହେଁ, ଶିକ୍ଷକତା କରି କେତେବର୍ଷ ଛାତ୍ରଗଠନ

ଢଙ୍ଗରେ ନିଜକୁ ନିୟୋଜିତ କରିବା ଓ ଅଭିବକମେଣ୍ଟର ସହ ଅନ୍ୟ ଗରିବ ଅସହାୟ ଗ୍ରାମବାସୀଙ୍କୁ ସାହାଯ୍ୟ କରିବାର ତୁମର ଯେଉଁ ମନୋବୃତ୍ତି ଥିଲା ଆଜି ସେ ଭାବଧାରା କେତେଜଣ ଶିକ୍ଷକଙ୍କର ରହିଛି, ତାହା ଆମ୍ଭେମାନେ ଅନୁଭବ କରୁଛୁଁ ।

କଲେଜ ଅଧ୍ୟୟନ ସମୟରେ ତୁମ୍ଭେ ଜାତୀୟତା ସ୍ରୋତରେ ଭାସି ସ୍ୱାଧୀନ ମତବାଦ ପୋଷଣ କରିଥିବା ଯୋଗୁଁ ଇଂରେଜ ଅମଲର କଲେଜ ଅଧ୍ୟକ୍ଷ ତୁମ ଉପରେ କୋପଦୃଷ୍ଟି ରଖି ତୁମକୁ black-listed କରିଥିଲେ ଓ ତୁମର ଭବିଷ୍ୟତ ଅନ୍ଧକାର କରିଥିଲେ । ମାତ୍ର ତୁମ୍ଭେ ସେହି ସ୍ୱାଧୀନ ଚିନ୍ତାଧାରାରୁ ଟଳେ ହେଲେ ଅପସରି ନାହଁ । ସେହି ମନୋବଳ ଏବେ ଅନ୍ୟତ୍ର ଦେଖିବା ସ୍ୱପ୍ନ ହୋଇଛି ।

ତୁମର ରାଜନୈତିକ ଚିନ୍ତାଧାରା ସ୍ୱତନ୍ତ୍ର ଥିଲା । ସ୍ୱାଧୀନତା ପ୍ରାପ୍ତି ପରେ କଂଗ୍ରେସ ଠାରୁ ଆରମ୍ଭ କରି ବିଭିନ୍ନ ରାଜନୈତିକ ଦଳର ଆଦର୍ଶ ଓ ନୀତିକୁ ତୁମ୍ଭେ ବିଶ୍ଳେଷଣ କରିଛ ଓ ଯେଉଁ ଆଦର୍ଶଟି ଠିକ୍ ବୋଲି ଭାବିଛ କୌଣସି ପ୍ରକାର ଦ୍ୱିଧା ନକରି ତାର ନେତୃତ୍ୱ ନେଇଛ ।

ଜଣେ ପୁରାତନ ସାମ୍ବାଦିକ ରୂପେ ସେହି ସମୟରେ ମୋର ତୁମ ସହ ବହୁବାର ସାକ୍ଷାତ ଆଲୋଚନା ହୋଇଛି ।

ଗ୍ରାମଦାନ ଓ ଭୂଦାନ ଆନ୍ଦୋଳନରେ ନିଜକୁ ସାମିଲ କରି ତଳଶ୍ରେଣୀରେ ଥିବା ଗ୍ରାମ୍ୟ ସାଧାରଣଙ୍କ ଉତ୍ତରୋତ୍ତର ଉନ୍ନତି କପରି ହେବ ତାହାହିଁ ସର୍ବଦା ଚିନ୍ତା କରିଛ । ତୁମ୍ଭେ ବିଭିନ୍ନ କ୍ଷେତ୍ରରେ ହେଉଥିବା ଦୁର୍ନୀତିକୁ ମୂଳୋତ୍ପାଟନ କରିବାରେ ସର୍ବଦା ସାହସର ସହିତ ଲାଗିଛ କିନ୍ତୁ ତୁମର କାର୍ଯ୍ୟ ଶେଷ ହେବା ଯଥେଷ୍ଟ ପୂର୍ବରୁ ତୁମକୁ ଭଗବାନ ନିଜ କୋଳକୁ ଟାଣିନେଲେ । ଏହାହିଁ ଆମ୍ଭମାନଙ୍କ ପକ୍ଷରେ ଦୁଃଖ ।

ତୁମ୍ଭେ ସ୍ୱର୍ଗରାଜ୍ୟରେ ଥାଇ ଆମ୍ଭମାନଙ୍କୁ ତୁମର ଶୁଭାଶିଷ ଦିଅ, ଏହାହିଁ ଆମ୍ଭମାନଙ୍କର କାମ୍ୟ ।

ତୁମର
ଅଦ୍ୱୈତବଲ୍ଲଭ ରାୟ



# ସଂଗ୍ରାମୀ ରଘୁନାଥ

## ରାମଚନ୍ଦ୍ର ରାମ

କୌଣସି ବ୍ୟକ୍ତି ବିଶେଷଙ୍କ ଜୀବନକାଳର କାର୍ଯ୍ୟାବଳୀ ଆଲୋଚନା ଓ ପର୍ଯ୍ୟାଲୋଚନା କଲାବେଳେ ତାଙ୍କ କାର୍ଯ୍ୟର ଓ ଜୀବନର ଠିକ ସମୀକ୍ଷା କରିବା ଉଚିତ । ତାହା ନକରି ଯଦି ଅଧାଅଧି କିମ୍ବା ଅତିରଞ୍ଜିତ କରି ବର୍ଣ୍ଣନା କରାହୁଏ ତାହାହେଲେ ତାଙ୍କର ଜୀବନ ଓ କାର୍ଯ୍ୟର ପ୍ରକୃତ ମୂଲ୍ୟାୟନ ହୋଇ ପାରେନା ଓ ଯେଉଁମାନେ ତାଙ୍କ ସଂକ୍ରାନ୍ତରେ ବିଶେଷ ଜାଣନ୍ତିନାହିଁ ଓ ଜାଣିବାକୁ ଇଚ୍ଛା କରନ୍ତି ସେମାନଙ୍କ ପ୍ରତି ଅନ୍ୟାୟ କରାହୁଏ । ଏହି ପରିପେକ୍ଷୀରେ ମୁଁ ରଘୁବାବୁଙ୍କ ସଂକ୍ରାନ୍ତରେ ସ୍ମୃତିଚାରଣ କରିବି ମାତ୍ର । ମୁଁ ଲେଖକ କିମ୍ବା ସାହିତ୍ୟିକ ନୁହେଁ, ତେଣୁ ରଘୁବାବୁଙ୍କ ସାହିତ୍ୟ-ସାଧନାର ଉପଯୁକ୍ତ ମୂଲ୍ୟାୟନ କରି ପାରିବିନି । ମନୋରମା ମୋତେ ବାରମ୍ବାର ଅନୁରୋଧ କଲାରୁ ମୋର ତାଙ୍କ ସଂକ୍ରାନ୍ତରେ ସୀମାବଦ୍ଧ-ଜ୍ଞାନ ପ୍ରକାଶ କରୁଛି ।

### ବିଦ୍ରୋହୀ ରଘୁନାଥ

୧୯୩୭ ଠାରୁ ୧୯୪୭ ପର୍ଯ୍ୟନ୍ତ ଭାରତ ତଥା ଓଡ଼ିଶାର ଜନଜାଗରଣ ଓ ଉଦବେଳନର ଯୁଗ । ଏହି ସମୟରେହିଁ ତରୁଣ ବୟସରୁ ଓଡ଼ିଶାର ବହୁ ମାନ୍ୟଗଣ୍ୟ ସାହିତ୍ୟିକ, ରାଜନୀତିଜ୍ଞ, ସୁବକ୍ତା, ପ୍ରଗତିବାଦୀ ଚିନ୍ତାଧାରାର ପ୍ରେରଣା ପାଇ ଓଡ଼ିଶାରେ ପ୍ରତିଷ୍ଠା ଅର୍ଜ୍ଜନ କରିଛନ୍ତି । ଏହି ଯୁଗରେ ରଘୁନାଥ ତରୁଣ ବୟସର ମନୀଷ । ୧୯୪୦ ମସିହା । ସେତେବେଳକୁ ଭାରତର ପ୍ରଥମ ଛାତ୍ର ଧର୍ମଘଟ ଓଡ଼ିଶାରେ ହୋଇସାରିଥାଏ—ମେଡ଼ିକାଲ ସ୍କୁଲରେ ଗୋରା ସାଇବାଣୀ ନର୍ସ, ଡାକ୍ତର ଓ ପ୍ରଶାସକମାନଙ୍କର ଓଡ଼ିଆ ଛାତ୍ରମାନଙ୍କ ପ୍ରତି ଅସଦ୍ ବ୍ୟବହାରର ପ୍ରତିବାଦରେ । ସ୍ୱାଧୀନତା ସଂଗ୍ରାମର ଜାଗରଣ, ଓଡ଼ିଶାର ଗଡ଼ଜାତ-ପ୍ରଜାମାନଙ୍କର ସାମନ୍ତବାଦୀ ଅତ୍ୟାଚାର ବିରୋଧରେ ବିଦ୍ରୋହ ବାୟୁମଣ୍ଡଳକୁ ସରଗରମ କରିଦେଇଥାଏ । ଏହି ସମୟରେ ଆମେ ଦୁହେଁ ରେଭେନ୍ସା-କଲେଜରେ ଛାତ୍ର । ସେତେବେଳକୁ ଆମ ପରିବାର ରଣପୁର ରାଜ-ଅତ୍ୟାଚାର ବିରୋଧରେ ନେତୃତ୍ୱ ନେଇ ଛାରଖାର ହୋଇ ସାରିଥାଏ ଓ ମୋର ପିତା ଓ ପିତୃବ୍ୟ ରଣପୁର ପ୍ରଜାମଣ୍ଡଳର ଆନ୍ଦୋଳନରେ କାରାରୁଦ୍ଧ ହୋଇ ସାରିଥାନ୍ତି । ରେଭେନ୍ସା କଲେଜ ଟେନିସ୍ ପଡ଼ିଆରେ ସ୍ୱାଧୀନତା-ସଂଗ୍ରାମର ତ୍ରିରଙ୍ଗୀ ପତାକା ସାଙ୍ଗକୁ ନିଖିଳ-ଉତ୍କଳ ଛାତ୍ରସଂଘର ଶାନ୍ତି, ମୁକ୍ତି, ପ୍ରଗତି ଲେଖାଥିବା ପତାକାକୁ ସେତେବେଳର

ପ୍ରିନ୍‌ସିପାଲଙ୍କ ଇଚ୍ଛା ବିରୋଧରେ ଉଡ଼ାଇ ଦିଆଗଲା । ସବୁ ଛାତ୍ର କଲେଜ କ୍ଲାସରୁ ପଳାଇ ଆସି ସଭାରେ ଯୋଗଦେଲେ । ଶୃଙ୍ଖଳା ଭଙ୍ଗ କରିଥିବାରୁ ଦୁଇଜଣ ଛାତ୍ର- ନୀଳମଣି ରାଉତରାୟ ଓ ବିବୁଧେନ୍ଦ୍ର ମିଶ୍ରଙ୍କୁ କଲେଜରୁ ବହିଷ୍କାର କରିଦିଆଗଲା । ଫଳରେ କଲେଜରେ ଧର୍ମଘଟର ଡାକରା ଦିଆଗଲା । ସେତେବେଳକୁ ବାର୍ଷିକ ପରୀକ୍ଷା ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ । ପରୀକ୍ଷା ବର୍ଜ୍ଜନ କରାଗଲା । ସେ ସମୟରେ ଯେଉଁମାନେ ଫାଟକ ପାଖରେ ଓ କ୍ଲାସରୁମର ଦ୍ୱାରରେ ପିକେଟିଂ କରୁଥିଲେ ସେହି ସ୍ୱେଚ୍ଛା-ସେବକ ସତ୍ୟାଗ୍ରହୀମାନଙ୍କର କମାଣ୍ଡର ହୋଇଥାନ୍ତି ରଘୁନାଥ ଦାସ । ବେକରେ ତାଙ୍କର ଡୋର ବଂଧା ହୁଇସିଲ୍ ଝୁଲୁଥାଏ । ତାଙ୍କ ହୁଇସିଲର ଶବ୍ଦ ସେତେବେଳର ଓଡ଼ିଶାର ଏକମାତ୍ର ପୋଲିସ ସାହେବଙ୍କ ହୁଇସିଲକୁ ପ୍ରତିବାଧ କରିଦେଲା । ପରୀକ୍ଷା ବର୍ଜ୍ଜନ କରା ହେଲା । କଲେଜ ବନ୍ଦ କରିଦିଆଗଲା । କଲେଜ ହତାରେ ପୋଲିସର ଛାଉଣି । ହଷ୍ଟେଲରୁ ଛାତ୍ରଙ୍କୁ ବାହାର କରିଦିଆଗଲା । ତା ବଦଳରେ ପୋଲିସଙ୍କୁ ଭର୍ତ୍ତି କରାଗଲା । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ମୁଁ ଜେଲ ଗଲି । ଫେରିଲବେଳକୁ ୧୯୪୩ ଅକ୍ଟୋବର । ଟେଷ୍ଟ ପରୀକ୍ଷା ମାତ୍ର ଦେଢ଼ମାସ, ବାର୍ଷିକ ପରୀକ୍ଷା ମଧ୍ୟ ଦେଢ଼ମାସ ଥାଏ । କିଏ ପରୀକ୍ଷା ଦେବ । ସବୁତକ ପାଠ ଜେଲ ଭିତରେ ପୋଡ଼ି ଖାଇଦେଇଥିଲି । ରଘୁବାବୁଙ୍କ ପାଖରେ ପହଞ୍ଚିଲି । ମୋତେ ଇଂରେଜୀ ଓ ଓଡ଼ିଆ ବିଚିଯୁଟିକୁ ପଢ଼ାଇ ଦିଅନ୍ତୁ ବୋଲି ଅନୁରୋଧ କଲି । ଗତାନୁଗତିକ କଡ଼ା-ଗୁଣ୍ଡି ପାନ ଝଣ୍ଡିକ କଳରେ ଗୋଞ୍ଜାଇ ମୋତେ ପଚାରିଲେ ଟିଉସନ ଫିସ୍ ? କହିଲି ଦେବି । ଫିସ୍ ହେଉଛି-ମଦନା ଦୋକାନରୁ ଦୁଇପ୍ଲେଟ୍ ଆଳୁଦମ୍ ଓ ପୁରି । ସେତେବେଳକୁ ଆଜିର ଦହିବରା ଓ ଆଳୁଦମ୍ ଭଳି ଯେ-ସେ ଦୋକାନରେ ଅଳୁଦମ୍ ମିଳୁ ନଥିଲା । ତାହା ପୁଣି ଖରା ଡାମ୍ । ପ୍ଲେଟ୍‌କୁ ପୁରୁଣା ଦୁଇ ପଇସା । ଦୁଇ ପଇସା ମଧ୍ୟ ଦୁର୍ଭିକ୍ଷ । ସେ ୧୦ଦିନ ଇଂରାଜୀ ପଢ଼ାଇଲେ । ମୋଟ ୫ଟି ପ୍ରବନ୍ଧ—ସେକ୍‌ସ୍‌ପିଅର, ସେଲି, ଟେନିସନ୍, ହାର୍ଡି ପ୍ରଭୃତିଙ୍କ ଉପରେ ଲେଖି ଦେଲେ । କହିଲେ-ସଂପୃକ୍ତ ଗ୍ରନ୍ଥକାରଙ୍କର ସଂପର୍କରେ ଯାହା ପ୍ରଶ୍ନ ପଡ଼ୁପଛେ ଏ ପ୍ରବନ୍ଧରୁ ଉଦ୍ଧାର କରି ଅ.ଖିବୁଜି ଲେଖିଦେବ । ପଚାରିଲି— ଯାହା ପ୍ରଶ୍ନ ପଡ଼ୁ ପଛେ ଏହାକୁ ଲେଖିଦେବି ? —ଉତ୍ତର ହଁ । ମୋର ଆଉ ସବୁ କଥା ବିସ୍ମରଣ ହେଉଛି – ସ୍ମରଣ ହେଉଛି, ପ୍ରଶ୍ନ ପଡ଼ିଲା – **"sweetest songs are those that tell the saddest thoughts."** । ମୁଁ ସେଲିଙ୍କ ଉପରେ ସେହି ପ୍ରବଂଧ ଆଖି ବୁଜି ଲେଖିଦେଲି । ପରୀକ୍ଷାରେ ପାସ ମଧ୍ୟ କଲି । ସେତେବେଳକୁ ଆମ ଉଭୟଙ୍କ ଆର୍ଥିକ ଅବସ୍ଥା ଭଲ ନୁହେଁ । ସାଥି ହୋଇ ଆଳୁଦମ୍ ଖାଇଲୁଁ – କିନ୍ତୁ ପଇସା ରଘୁବାବୁ ଦେଲେ – ମୋତେ ଦେବାକୁ ମନାକଲେ । ମୋତେ ଚରିଦିନ ପାଇଁ ଧାରୁଆ କରି ରଖିଲେ—ସେ ଧାର ଶୁଝିବାର ନୁହେଁ । ସେ ଥିଲେ ମେଧାବୀ ଛାତ୍ର । ତାଙ୍କର ପ୍ରତିଭା ବିକଶିତ ହେଲା—ସାହିତ୍ୟିକ ହିସାବରେ ।

## ବିପ୍ଳବୀ କବି, ଅଭିନେତା—ରଘୁଦାସ

ତାଙ୍କର ଲେଖା, କବିତା, ସାହିତ୍ୟ ହୃଦୟସ୍ପର୍ଶୀ ଓ ପ୍ରେରଣାଦାୟକ । ସେ ସମସ୍ତର ସମୀକ୍ଷା, ଆଲୋଚନା ଓ ସମାଲୋଚନା ମୋର କ୍ଷମତାର ବହିର୍ଭୂତ । ଯାହା ସେ ଲିଖିତ ଭାବରେ ଛାଡ଼ି ଯାଇଛନ୍ତି – ସାହିତ୍ୟିକ ଓ ସମାଲୋଚକମାନେ ତାର ଉପଯୁକ୍ତ ଅନୁଶୀଳନ କରନ୍ତୁ । ସେଥିପାଇଁ ସେ ଓଡ଼ିଆ ସାହିତ୍ୟରେ ଅମର । ମୁଁ କିନ୍ତୁ ସ୍ମୃତିଚାରଣ କରୁଛି ଯାହା ବହୁତ କମ ଲୋକ ଜାଣନ୍ତି କିମ୍ବା ଜାଣନ୍ତିନାହିଁ । ଭାରତର ପ୍ରଖ୍ୟାତ କବି ହାରୀନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ ୧୯୪୧ ମସିହା ବେଳକୁ ଓଡ଼ିଶାରେ ବହୁଦିନ ଅବସ୍ଥାନ କରୁଥିଲେ । କେଉଁ କାରଣରୁ ସେ ଏଠାରେ ଅବସ୍ଥାନ କରୁଥିଲେ ତାହା କହିବା ଅନାବଶ୍ୟକ । କବି ସଚ୍ଚି ରାଉତରାୟ ତାଙ୍କ କଥା ବୁଝିସୁଝି କରୁଥାନ୍ତି । ରଘୁବାବୁ, ସଚ୍ଚିବାବୁ ଓ ଆହୁରି ଅନେକ ସାହିତ୍ୟପ୍ରେମୀ, କଳାପ୍ରେମୀ ସେଠାରେ ସମବେତ ହେଉଥାନ୍ତି । ସେତେବେଳକୁ ଦ୍ୱିତୀୟ ମହାସମର ଚାଲିଥାଏ । ବାଲେଶ୍ୱର ଓ ଗଞ୍ଜାମରେ ନିଅଣ୍ଟ ଦୁର୍ଭିକ୍ଷ ଭଳି ଅବସ୍ଥା । ଚାଉଳ କାରବାରରେ ଚୋରାବେପାର ମଧ୍ୟ ହେଉଥାଏ । ନାଗରିକ ସଦନରେ ଏକ "ଭେରାଇଟି ସୋ"ର ବ୍ୟବସ୍ଥା ହେଲା— ଦୁର୍ଭିକ୍ଷ-ପ୍ରପୀଡ଼ିତ ଲୋକଙ୍କର ସାହାଯ୍ୟ ପାଇଁ । ରଘୁବାବୁ ନିଜର ଏକ କବିତା "ଖାଇବାକୁ ଦିଅ ଭାତ" ଅଭିନୟରେ ଫୁଟାଇଲେ । ସେତେବେଳେ କ୍ଷୀଣକାୟ ରଘୁବାବୁଙ୍କୁ ହାରୀନ୍ ମେକ୍‌ଅପ୍ କରାଇଥିଲେ ଜଣେ ଦୁର୍ଭିକ୍ଷ-ପ୍ରପୀଡ଼ିତ ଅନାହାରୀ ମଣିଷ ଭାବେ । ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ ହାରୀନ୍ । ଛାତିର ହାଡ଼ ଓ ପଞ୍ଜରାଗୁଡ଼ାକ ଗଣି ହେଉଥାଏ—ଆଖି କୋଟରଗତ—ଗାଲ ଠାକର । ଏକ ଜୀବନ୍ତ ମଣିଷର ପ୍ରେତ, ସତେ ଯେପରି ନାଗରିକ ସଦନକୁ ଓଲଟାଇ ଦେବ । ଦର୍ଶକଙ୍କ ଆଖିରେ ଲୁହ, କିନ୍ତୁ ଛାତିରେ କ୍ରୋଧ । ହେ ବିପ୍ଳବୀ କବି—ଅଭିନେତା ରଘୁନାଥ—ଏ ପର୍ଯ୍ୟନ୍ତ ମଧ୍ୟ ରକ୍ତ-ମାଂସ ବିହୀନ ଅସ୍ଥି-କଙ୍କାଳସାର ମଣିଷ "ଖାଇବାକୁ ଦିଅ ଭାତ" ବୋଲି ଚିତ୍କାର କରେ । ତୁମେ ନମସ୍ୟ ! ତୁମର କବିତା ଓ ଅଭିନୟ ପ୍ରତିଭାକୁ ପ୍ରଣାମ ।



# ସାଥୀ ରଘୁନାଥ ଦାସ

## ଗୋବିନ୍ଦଚନ୍ଦ୍ର ମହାନ୍ତି

ସାଥୀ ରଘୁନାଥ ଦାସଙ୍କ ସ୍ମୃତି ପଖାଳିବା ପାଇଁ ସ୍ମରଣିକାଟିଏ ପ୍ରକାଶିତ ହେଉଥିବା ଜାଣି ଦୁଃଖ ଓ ଆନନ୍ଦ ଲଗିଲା । ଏତେ ଶୀଘ୍ର ତାଙ୍କ ଭଳି ଦୃଢ଼ମନା ଦେଶପ୍ରେମୀ, ବୁଦ୍ଧିଜୀବୀଙ୍କ ବିୟୋଗ ଦୁଃଖପ୍ରଦ । ଆନନ୍ଦର ବିଷୟ ଯେ ଯେଉଁମାନେ ଦେଶ ପାଇଁ, ଜାତି ପାଇଁ, ପୁଣି ନିଷ୍ପେଷିତ, ଶୋଷିତ ଶ୍ରେଣୀ ଓ ଜନଗୋଷ୍ଠୀମାନଙ୍କର ଶୋଷଣ, କଷଣ, ନିର୍ଯାତନା, ଲାଞ୍ଛନାରୁ ମୁକ୍ତି ପାଇଁ ସଂଗ୍ରାମ କରୁଥିଲେ, ସେମାନଙ୍କ ସମ୍ବନ୍ଧରେ ଉତ୍ତର ସୂରୀମାନେ କିଛି ଜାଣିବାର ସୁଯୋଗ ଏଦ୍ୱାରା ପ୍ରକାଶନ ଯୋଗାଇ ଦେବ । ସାଥୀ ରଘୁନାଥ ଦାସ ସେହି ପର୍ଯ୍ୟାୟର ।

ବ୍ରିଟିଶ ସାମ୍ରାଜ୍ୟବାଦର ଗୋଲମି ଦେଶରୁ ଯାଇ ନଥାଏ । କଂଗ୍ରେସ, କମ୍ୟୁନିଷ୍ଟ, ସୋସାଲିଷ୍ଟ, ସନ୍ତ୍ରାସବାଦୀ ନେତା ଓ କର୍ମୀମାନଙ୍କ ଉପରେ ଆକ୍ରମଣ । ସେତିକିବେଳେ ଗ୍ରୁବସଂଘ ଓଡ଼ିଶାରେ ଏକମାତ୍ର ସଙ୍ଗଠିତ ଛାତ୍ର ସଙ୍ଗଠନ । ସାମ୍ରାଜ୍ୟବାଦ-ବିରୋଧୀ ସ୍ୱାଧୀନତା ସଂଗ୍ରାମକୁ ନୂତନ ଆଦର୍ଶ, ନୂତନ ଆଭିମୁଖ୍ୟ ଓ ନୂତନ ଲକ୍ଷ୍ୟରେ ପରିଚାଳନା କରି ସେଥିରେ ଛାତ୍ର ସମାଜକୁ ପ୍ରଗତିଶୀଳ କରେଇ ଅଙ୍ଗୀଭୂତ କରିବାକୁ ହେବ ; ଏହାହିଁ ଥିଲା ଆହ୍ୱାନ । ସେହି ସମୟରେ ପୁଣି ଦ୍ୱିତୀୟ ମହାସମର ଏବଂ ୧୯୪୧ ଜୁନରେ ପୃଥିବୀର ପ୍ରଥମ ଶୋଷଣ ବିହୀନ ସମାଜବାଦୀ ରାଷ୍ଟ୍ର ସୋଭିଏତ୍ ୟୁନିଅନ ଉପରେ ଆକ୍ରମଣ । ଦେଶ ଭିତରେ ଦକ୍ଷିଣପନ୍ଥୀ ନେତାମାନେ ସ୍ୱାଧୀନତା ସଂଗ୍ରାମକୁ ଶୋଷିତ ଶ୍ରେଣୀଗୁଡ଼ିକର ଆଧେୟ ଦେବାର ବିରୋଧୀ । ତେଣୁ ଉତ୍କଟ କମ୍ୟୁନିଷ୍ଟ ବିରୋଧିତା–ବ୍ରିଟିଶ ସାମ୍ରାଜ୍ୟ-ବାଦର ସୋଭିଏତ୍ ଓ କମ୍ୟୁନିଷ୍ଟ ବିରୋଧିତା ସାଙ୍ଗକୁ ଦେଶପ୍ରେମୀ ଶିବିରରେ ସାମ୍ରାଜ୍ୟବାଦ ବିରୋଧରେ, ସହଯୋଦ୍ଧା କମ୍ୟୁନିଷ୍ଟମାନଙ୍କ ବିରୋଧରେ ବିଷୋଦ୍‌ଗାର ।

ରଘୁନାଥ ବାବୁ ବାଛିନେଲେ ଛାତ୍ର ଆନ୍ଦୋଳନ ଭିତର ଦେଇ ଜୀବନର ଆଦର୍ଶ ରୂପେ ମାର୍କସବାଦ-ଲେନିନବାଦ । ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ ତାଙ୍କର ଏହି ଦୀକ୍ଷା ଗ୍ରହଣ ।

ସେହିଦିନ ଠାରୁ ସେ ଶେଷ ପର୍ଯ୍ୟନ୍ତ ସେହି ମତାଦର୍ଶର ଆଶ୍ରୟୀ ଥିଲେ, ରାଜନୈତିକ ପାର୍ଟି-ମଞ୍ଚର ପରିବର୍ତ୍ତନ ସତ୍ତ୍ୱେ ।

ସେତେବେଳେ ଅସଂଖ୍ୟ ଦେଶପ୍ରେମୀ ଜେଲରେ । ଛାତ୍ରସଙ୍ଘର ତୁଙ୍ଗନେତାମାନେ ମଧ୍ୟ ଜେଲଖାନାରେ । ତେଣୁ ଅନ୍ୟ ଯେତେଜଣ ଛାତ୍ରନେତା ବାହାରେ ରହିଯାଇଥିଲେ ତନ୍ମଧ୍ୟରୁ ସାଥୀ ରଘୁନାଥ ଅନ୍ୟତମ । କାରାବାସରେ ଥିଲାବେଳେ ବେଳେବେଳେ ସମ୍ବାଦପତ୍ରରେ ପ୍ରକାଶ ପାଏ ସାଥୀ ଦାସଙ୍କ ସନ୍ଦର୍ଭ । ସେଗୁଡ଼ିକ ଅକାଟ୍ୟ, ବିଜ୍ଞାନସମ୍ମତ ଓ ମାର୍କସୀୟ ମତାଦର୍ଶ ଅନୁସରଣରେ ଲିଖିତ । ସେ ଆଲୋଚନାଚକ୍ରରେ ପ୍ରତିପକ୍ଷଙ୍କୁ ମୁକାବିଲା କରିବାରେ ସମର୍ଥ ହେଉଥିବା ସମ୍ବାଦ ପାଇ ଆମେ ସବୁ ଉଲ୍ଲସିତ ହେଉଥାଉ । କାରଣ ବାହାରେ ସେ ଥିଲେ ଏକମାତ୍ର ବୁଦ୍ଧିଜୀବୀ, କମ୍ୟୁନିଷ୍ଟ ତାର୍କିକ, ଯିଏ ଅନ୍ୟମାନଙ୍କ କଟାକ୍ଷ, ଆକ୍ରମଣକୁ ପ୍ରତିହତ କରିପାରୁଥିଲେ ।

୧୯୪୫ ଶେଷ ବେଳକୁ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ପଦ ପାଇ ତାଙ୍କୁ ଦିଆଯାଇଥିବା ଦାୟିତ୍ୱକୁ ଏକାନ୍ତ ନିଷ୍ଠାର ସହ ପାଳନ କରୁଥିଲେ ।

ପ୍ରଥମେ ଏକ ଛାତ୍ର ସଭାରେ ତାଙ୍କ ଭାଷଣ ଶୁଣିବାର ସୁଯୋଗ ମୋତେ ମିଳିଥିଲା । ରଘୁବାବୁ ଗୁଡ଼ାଏ କଥା କହନ୍ତି ନାହିଁ, ଯାହା କହନ୍ତି ସଂକ୍ଷିପ୍ତ ଏବଂ ରୋକଠୋକ । ସେ ବହିର୍ମୁଖୀ ଯେତେ ନଥିଲେ, ସେତେ ଥିଲେ ଅନ୍ତର୍ମୁଖୀ । ୧୯୪୮ ମାର୍ଚ୍ଚ ୧୫ ତାରିଖ । ଟାଉନହଲରେ ଛାତ୍ରସଂଘ ପକ୍ଷରୁ ମାଟ୍ରିକ ପରୀକ୍ଷାର୍ଥୀମାନଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥାଏ । ପୁରୋଧା ରଘୁବାବୁ । ବର୍ଷଟିଏ ବି ପୂରିନଥାଏ ସ୍ୱାଧୀନତା ପ୍ରାପ୍ତିର । ଟାଉନହଲରେ ଭରପୂର ପିଲାଙ୍କୁ ସେ ଯେତେବେଳେ ଭାଷଣ ଦେଲେ, ପିଲାଏ ଯେପରି ମନ୍ତ୍ରମୁଗ୍ଧ ହୋଇ ଶୁଣୁଥାନ୍ତି । ଅତି ସରଳ, ସାବଲୀଳ ଭାଷାରେ ସେ ଆଗାମୀ ଦିନର ଉଚ୍ଚଶିକ୍ଷାର୍ଥୀମାନଙ୍କ ଆଗରେ କ'ଣ କର୍ତ୍ତବ୍ୟ ଏବଂ ଏ ଦେଶରେ ସ୍ୱାଧୀନତା କେଉଁ ଶ୍ରେଣୀ ହାତରେ ପଡ଼ିଛି ତାହାର ବିଶ୍ଳେଷଣ କରି ଉପସ୍ଥିତ ଛାତ୍ର ଓ ଅନ୍ୟମାନଙ୍କୁ ମୁଗ୍ଧ କରିଥିଲେ । ଅନେକେ ମଞ୍ଚକୁ ଆସି ଏ ଯୁବବକ୍ତାଙ୍କୁ ବଧେଇ ଜଣାଇଥିଲେ ।

କଟକ ସହରରେ ସେତେବେଳେ ଥିବା ନୂତନ ପାର୍ଟି ସାଥୀ ସମର୍ଥକମାନଙ୍କୁ ମାର୍କସବାଦୀ ଶିକ୍ଷା ଦେବା ପାଇଁ ତାଙ୍କୁ ମଧ୍ୟ ଦାୟିତ୍ୱ ଦିଆଯାଏ । ସାଥୀ ଦାସ ସେତେବେଳକୁ ପାର୍ଟିର ଅନୁମତିକ୍ରମେ ଓକିଲାତି କଲେଣି । କଚେରୀକୁ ଆସିବା ବେଳେ ନଚେତ୍ ଫେରିବାବେଳେ ସେ ନିୟମିତ ବୃଦ୍ଧନଚୌକ ପାର୍ଟି ଅଫିସକୁ ଆସନ୍ତି । ତାଙ୍କ କାମଦାମ କ'ଣ ବୁଝିନିଅନ୍ତି ।

ସେତେବେଳେ ପାର୍ଟି ଉପରେ ଆକ୍ରମଣ ଆରମ୍ଭ ହୋଇଯାଇଥାଏ । ବହୁ କମ୍ୟୁନିଷ୍ଟ ନେତାଙ୍କୁ ଓ ଭାଗଚାଷୀ ଆନ୍ଦୋଳନରେ ଚାଷୀମାନଙ୍କୁ ନାନା ମାଲି ମକଦ୍ଦମାରେ ପକାଯାଉଥାଏ । ଆମର କମ୍ୟୁନିଷ୍ଟ ଉତ୍କଳ ନେତା ସାଥୀ ବିଶ୍ୱନାଥ ପଶାଏତ୍ ଏହିସବୁ

ମକଦ୍ଦମାରେ ବିନା ଫିସ୍‌ରେ ଏବଂ ହାତରୁ ବେଳେବେଳେ କୋର୍ଟ ଫି ଦେଇ ଲଢ଼ିବାର ପଦ୍ଧତି ଅନୁସରଣ କରୁଥାନ୍ତି । ସାଥୀ ରଘୁନାଥ ଦାସ ଏ କ୍ଷେତ୍ରରେ ତାଙ୍କର ସହାୟକ ଯେ ହେଲେ ତାହା ନୁହେଁ, ବିଭିନ୍ନ ସ୍ଥାନରେ ଭାଗଚାଷୀ ଓ କମ୍ୟୁନିଷ୍ଟ କର୍ମୀମାନେ ମକଦ୍ଦମାରେ ପଡ଼ିଲେ ସେ ମଧ୍ୟ ସାଥୀ ପରିଏଡ଼ିଙ୍କ ଐତିହ୍ୟକୁ ରକ୍ଷା କରିବା ପାଇଁ ଅକୁଣ୍ଠ ଚିତ୍ତରେ ଆଗଭର ହେଉଥିଲେ । ଏହାକୁ କହନ୍ତି କମିଟମେଣ୍ଟ । ପ୍ରତିଶ୍ରୁତି ଯେଉଁ ଶ୍ରେଣୀ-ସ୍ୱାର୍ଥର ରକ୍ଷା ପାଇଁ ନିଜ ଜୀବଦ୍ଦଶାରେ ଥାଇ ମଧ୍ୟ ତାହା ପାଳନ କରିବା ।

ସେ ଯେ ଜଣେ ସୁସାହିତ୍ୟିକ-ତାହାର ସ୍ୱାକ୍ଷର ବହନ କରେ 'ଫାଶି ଆସାମୀର ଗୁପ୍ତ ଚିଠି'—ଚେକୋସ୍ଲୋଭାକ କମ୍ୟୁନିଷ୍ଟ ବୀର, କମ୍ରେଡ଼ ଜୁଲିୟସ ଫୁଚିକ, ହିଟଲରୀ ବନ୍ଦୀ ଶିବିରରେ ଥାଇ ଫାଶି ପାଇବା ପର୍ଯ୍ୟନ୍ତ ଗୁପ୍ତରେ ବାହାରକୁ ପଠାଇଥିବା ଚିଠିଗୁଡ଼ିକ । ତାଙ୍କ ଲେଖନୀରେ ତାହା ଅନୁବାଦ ସାହିତ୍ୟ ହୋଇ ନାହିଁ, ଯେପରି ଏକ ମୌଳିକ ରଚନା । ତାଙ୍କର ଏହି କୃତି ସେକାଳର ନବୀନ ବହୁ ଯୁବକଙ୍କୁ କମ୍ୟୁନିଷ୍ଟ ଆଦର୍ଶ ପ୍ରତି ଆକୃଷ୍ଟ କରିଥିଲା । 'ନୂଆ ଦୁନିଆ'ରେ ତାହାର ସମୀକ୍ଷା ଛଦ୍ମନାମରେ କମ୍ରେଡ଼ କୃଷ୍ଣପ୍ରସାଦ ପଟ୍ଟନାୟକ କରିଥିଲେ । ଏହାପରେ ସେହି ପୁସ୍ତକଟି ପ୍ରକାଶିତ ହୋଇଥିଲା ।

କମ୍ୟୁନିଷ୍ଟ ମୂଲ୍ୟବୋଧ, ନୂତନ ସାମାଜିକ ମୂଲ୍ୟବୋଧ ଓ ଦୃଢ଼ମନାର ଏକ ପରିଚୟ ମିଳିଥିଲା ତାଙ୍କ ବିବାହ ବେଳେ । ବାଲେଶ୍ୱର ଜିଲ୍ଲାର ସୋରୋରେ ଘର, କଟକର ଚାନ୍ଦନୀଚୌକର ବାସିନ୍ଦା, ଜଣେ ପଦସ୍ଥ ସରକାରୀ କାର୍ଯ୍ୟାଧ୍ୟକ୍ଷ ଶ୍ରୀ ବିଷ୍ଣୁଚରଣ ମହାପାତ୍ରଙ୍କ କନ୍ୟା ମନୋରମାଙ୍କ ସହିତ ବିବାହ ଲଗ୍ନ । ଅମେ ଥାଉଁ ବରଯାତ୍ରୀ । ପ୍ରତିଷ୍ଠିତ, ସଙ୍ଗତିସମ୍ପନ୍ନ ବିଷ୍ଣୁବାବୁ । ଯୌତୁକ କଥା ତ ନାହିଁ । କିନ୍ତୁ ଯାହାବା ସିଏ ଝିଅର ବ୍ୟବହାର ଉପଯୋଗୀ ନୂତନ ଘରକରଣା ଆସବାବପତ୍ର ଦେବେ ତାହା କିଛି କମ୍ ବ୍ୟୟ ସାପେକ୍ଷ ନୁହେଁ । ରଘୁବାବୁଙ୍କର ଜିଦ୍ ଅଧ୍ୟାପିକା ମନୋରମା କେବଳ ପିନ୍ଧିଥିବା ଶାଢ଼ୀ ଛଡ଼ା ଆଉ କିଛି ନେଇପାରିବେ ନାହିଁ । ସେଥି ସକାଶେ ଘଣ୍ଟା ଘଣ୍ଟା ଅଚଳାବସ୍ଥା । ଶେଷରେ ରଘୁବାବୁଙ୍କ ମୂଲ୍ୟବୋଧର ବିଜୟ ହେଲା ।

ପାର୍ଟିର ଉତ୍କଳ ସେଲ୍ । ରଘୁବାବୁ ସେଥିରେ ସଦସ୍ୟ । ବିଶ୍ୱନାଥବାବୁ ନେତା । ୧୯୫୨ର ସାଧାରଣ ନିର୍ବାଚନ । ପାର୍ଟି ବସ୍ତୁତଃ ବେଆଇନ ଅବସ୍ଥାରୁ ବାହାରିଥାଏ । ଶହ ଶହ ସାଥୀ ବର୍ଷେ ଦୁଇବର୍ଷ ଜେଲଖାନାରେ ରହି ଖଲାସ ହେଉଥାନ୍ତି । ନେତାମାନେ ଗୋପନବାସରୁ ଫେରୁଥାନ୍ତି ।

ସେହି ସମୟରେ ଯେଉଁମାନେ କମ୍ୟୁନିଷ୍ଟଙ୍କ ବିରୋଧରେ ଓ ସୋଭିଏତ୍ ୟୁନିଅନ ବିରୋଧରେ କୁତ୍ସା କରୁଥିଲେ, ସେମାନଙ୍କ ମୁକାବିଲାରେ ସେ ଥିଲେ ଧୁରନ୍ଧର । ନିର୍ବାଚନ ପାଣ୍ଠିକୁ ଓ୍ୱାର୍କସ ସେଲ ୬୦୦ ଟଙ୍କା ଦେବ ବୋଲି ନିଷ୍ପତ୍ତି ହୋଇଥାଏ । ଦାୟିତ୍ୱ ସାଥୀ ରଘୁନାଥଙ୍କ ଉପରେ । ଅଫିସରେ ହାତରେ ୬୦୦ ଟଙ୍କା ଧରି ସେ ହାଜର ।

ଯେଉଁ କାମଟି ସେ ହାତକୁ ନେଉଥିଲେ, ତାକୁ ସାଧ୍ୟମତେ, କମ୍ୟୁନିଷ୍ଟ ସୁଲଭ ନିଷ୍ଠାର ସହ ସେ ପାଳନ କରୁଥିଲେ ।

ପରେ ସେ ଅବଶ୍ୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ପଦ ନନେଇ ଅନ୍ୟ ଏକ ପାର୍ଟିର ପ୍ରତିଷ୍ଠାତା ସଦସ୍ୟ ହେଲେ । କୌଣସି ବୁର୍ଜ୍ଜୁଆ ମତାଦର୍ଶ ତାଙ୍କୁ ପ୍ରଭାବିତ କରିପାରି-ନଥିଲା । ତାଙ୍କ ମତାଦର୍ଶର ବିଶ୍ୱବିଶ୍ରୁତ ନେତା ରହିଲେ ମାର୍କସ-ଏଙ୍ଗେଲସ୍-ଲେନିନ ।

ରାଜନୈତିକ ପାର୍ଟି-ମଞ୍ଚର ବିଭିନ୍ନତା ସତ୍ତ୍ୱେ ସାଥୀ ରଘୁନାଥ ଦାସ ବ୍ୟକ୍ତିଗତ ସମ୍ପର୍କରେ ଉଚ୍ଚକୋଟୀର ଆଚରଣ ପ୍ରଦର୍ଶନ କରୁଥିଲେ ।

ନବଯୁଗ ପ୍ରେସ୍‌ରେ ତାଙ୍କର ଆଠଗଡ଼ ପ୍ରଜାସ୍ୱତ୍ୱ ଆଇନ ସମ୍ପର୍କୀୟ ଗବେଷଣା ପୁସ୍ତକ ପ୍ରକାଶନ ବେଳେ ତାଙ୍କ ସହିତ ଯେତେଥର ଜାତୀୟ-ଆନ୍ତର୍ଜାତୀୟ ସମସ୍ୟାଗୁଡ଼ିକ ସମ୍ପର୍କରେ ଆଲୋଚନା ହୋଇଛି, ସେଥିରେ ଗଭୀର ମତପାର୍ଥକ୍ୟ ରହିଛି ବୋଲି ସେ କେବେ କହିନାହାନ୍ତି । କର୍ମକୌଶଳ ସମ୍ପର୍କରେ ତାଙ୍କର ପାର୍ଥକ୍ୟ କଥା ଉଲ୍ଲେଖ କରନ୍ତି ।

ତାଙ୍କର ଅକାଳ ବିୟୋଗ ଓଡ଼ିଶାର ବାମପନ୍ଥୀ ଆନ୍ଦୋଳନର ଜଣେ ନିରଳସ ସାଧକ ଓ ନେତାଙ୍କୁ ରାଜନୈତିକ ମଞ୍ଚରୁ ଅପସାରେଇ ନେଲା । ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଓ ତାଙ୍କ ପତ୍ନୀ ମନୋରମା ଓ ସନ୍ତାନମାନଙ୍କ ପ୍ରତି ଗଭୀର ସମବେଦନା ।



# ଆଡ଼ଭୋକେଟ ରଘୁନାଥଙ୍କ ସ୍ମୃତି

## ନବକିଶୋର ଦାସ

ଆଡ଼ଭୋକେଟ ରଘୁନାଥ ଦାସ ମୋର ଜଣାଶୁଣା ଥିଲେ । ତାଙ୍କ ସଙ୍ଗେ ଆଇନ ଶ୍ରେଣୀରେ ପଢ଼ିଥିଲି ଗୋଟିଏ ବର୍ଷ, କାରଣ ବି.ଏ. ପାଶ ପରେ ମୁଁ ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରି, ଆଡ଼ଭୋକେଟ ପରେ ହେଲି । ସେତେବେଳେ ମୁଁ ରଘୁନାଥବାବୁଙ୍କୁ ଜାଣିଥିଲି, ମାତ୍ର ପରିଚୟ ନିବିଡ଼ ନଥିଲା । ସେ ବାର ଲାଇବ୍ରେରୀରେ ଯୋଗଦେବା ପରେ କମ୍ୟୁନିଷ୍ଟ ଦଳରେ ପ୍ରାୟ ଯୋଗ ଦେଇଥିଲେ ଓ ପ୍ରତିଦିନ ବାର ଲାଇବ୍ରେରୀରେ ଶ୍ରେଣୀ-ଦ୍ୱନ୍ଦ୍ୱ କଥା ପ୍ରଚାର କରୁଥିଲେ । ଏହା ମୋତେ ଖଟକା ଲାଗିଲା । କାର୍ଲମାର୍କସଙ୍କ ଚିନ୍ତାଧାରା କେତେଦୂର ନିର୍ଭୁଲ, ମୁଁ ପରୀକ୍ଷା କରିବାକୁ ଲାଗିଲି ଏବଂ କମ୍ୟୁନିଷ୍ଟ ମାନିଫେଷ୍ଟୋ ପଢ଼ିଲି । ଏହା ଫଳରେ ମୁଁ ନବ୍ୟବାଦ (Neoism) ମତବାଦ ଆବିଷ୍କାର କଲି ଓ ଦର୍ଶାଇ ଦେଲି ଯେ ଶ୍ରେଣୀହୀନ ସମାଜ ସଂସାରରେ ଅସମ୍ଭବ । ସବୁବେଳେ ଦୁଇଟି ଆର୍ଥିକଶ୍ରେଣୀ ପୃଥିବୀରେ ରହିବେ, ସେମାନେ ଉତ୍ପାଦନକାରୀ ଓ ସେବାକାରୀ ବର୍ଗ । ରଘୁନାଥବାବୁଙ୍କ କଥାବାର୍ତ୍ତାରେ ମୁଁ ବିଚଳିତ ହୋଇ ନଥିଲେ, ଏହି ନୂତନ ଆବିଷ୍କାର କରିପାରି ନଥାନ୍ତି । ସେଥିପାଇଁ ରଘୁନାଥବାବୁଙ୍କୁ ତାଙ୍କ ତିରୋଧାନ ପରେ ମଧ୍ୟ ମୁଁ କୃତଜ୍ଞତା ଜଣାଉଛି ।

ବାବୁ ରଘୁନାଥ 'ଜହ୍ନଘର' ନାଟକ ଓ କେତେକ ରସାଣିତ କବିତା ମଧ୍ୟ ଲେଖି ଛାପିଥିଲେ । ସେ ଯେ ଅସାଧାରଣ ଲୋକ, ଏହିସବୁ ସାହିତ୍ୟ ପଢ଼ିଲେ ଜଣାପଡ଼ିବ । ରଘୁବାବୁଙ୍କ ପିତା ଯାଜପୁର ହାଇସ୍କୁଲର ସହକାରୀ ପ୍ରଧାନ ଶିକ୍ଷକ ଥିଲେ, ମାତ୍ର ଏହି ମାଷ୍ଟରଙ୍କ ଭୟରେ ଆମ୍ଭେମାନେ ଯାଜପୁର ଛାଡ଼ି କଟକରେ ପଢ଼ିଥିଲୁ । ରଘୁନାଥବାବୁ ଏହା ପରେ ବହୁ ଆଇନ ବହି ଟିପ୍ପଣୀ ସହ ଛାପିଲେ । ସେ ନିଜେ ଛାପାଖାନା ମଧ୍ୟ ତାଙ୍କ ଘରେ ଖୋଲିଥିଲେ । ମାତ୍ର ତାହା ପ୍ରାୟ ଚଳାଇ ପାରିଲେ ନାହିଁ । କର୍ମଚାରୀମାନେ ଅକ୍ଷର ଚୋରି କରିନେଲେ । ରଘୁନାଥବାବୁ ହାଇକୋର୍ଟର ଆଇନ ପତ୍ରିକାର ସମ୍ପାଦକ ହୋଇ ଯିବାରୁ ବାରଲାଇବ୍ରେରୀରୁ ଅଲଗା ହୋଇଗଲେ । ସେ ବହୁ ମକଦ୍ଦମାର ଆଡ଼ଭୋକେଟ ଥିଲେ । ତାଙ୍କର ସବୁଠାରୁ ଚିତ୍ତାକର୍ଷକ ମକଦ୍ଦମା ଥିଲା ଏମ୍. ଏଲ୍. ଏ. ମାନଙ୍କ ପେନ୍‌ସନ ବିରୁଦ୍ଧରେ କେସ । ରଘୁନାଥଙ୍କ ଜୀବଦ୍ଦଶାରେ ଏହି କେସ ଶୁଣାଣି ହୋଇ ପାରିଲା ନାହିଁ ।

ରଘୁନାଥବାବୁ ଯେ ଏକାଧାରରେ କବି, ଲେଖକ ଓ ଭାବୁକ ଥିଲେ ଏହା ବହୁ ଲୋକ ପ୍ରାୟ ଜାଣନ୍ତି ନାହିଁ । ସେ ମୌଳିକ ଚିନ୍ତା ଖୁବ୍ କରୁଥିଲେ ଓ କେଉଁ ଦଳ ବା ରାଜନୈତିକ ନେତୃତ୍ୱ ତାଙ୍କର ଆଦର୍ଶ ସହିତ ଖାପ ଖାଇଲା ଭଳି ଜଣାନାହିଁ । ସେ କମ୍ୟୁନିଷ୍ଟଦଳ ଗୋଷ୍ଠୀ ଛଡ଼ା କେତେ ସର୍ବୋଦୟୀ ନେତା, କର୍ମୀଙ୍କ ସଙ୍ଗରେ ଯୋଗ ଦେଉଥିଲେ । ରଘୁନାଥବାବୁ ଏତେ ଚଞ୍ଚଳ ଆମ୍ଭମାନଙ୍କ ଭିତରୁ ଚାଲିଯିବେ ବୋଲି ମୋତେ ଜଣା ନ ଥିଲା । ତାଙ୍କ ସହଧର୍ମିଣୀ ଇନ୍ଦ୍ରପ୍ରସ୍ଥ ବିଦ୍ୟାଳୟର ଅଧ୍ୟାପିକା ଥିଲେ । ସେ ବର୍ତ୍ତମାନ ଅବସର ଗ୍ରହଣ କରିଛନ୍ତି ଓ ତାଙ୍କର କନ୍ୟାମାନେ ସୁଶିକ୍ଷିତା, ଜଣେ ମଧ୍ୟ ଆଡ଼ଭୋକେଟ । ରଘୁନାଥବାବୁଙ୍କ ସମସ୍ତ ଲେଖା ସଂଗୃହୀତ ହୋଇ ପ୍ରକାଶ ପାଇବା ଉଚିତ । ତାଙ୍କ ପ୍ରକୃତ ପରିଚୟ ତାଙ୍କ ସାହିତ୍ୟରୁ ନିଶ୍ଚୟ ମିଳିଯିବ । ସାହିତ୍ୟିକଙ୍କ ପରିଚୟ ଅନ୍ୟମାନେ ଦେବା କି ପ୍ରୟୋଜନ ? ସାହିତ୍ୟରୁ ସାହିତ୍ୟିକଙ୍କ ପୂର୍ଣ୍ଣ ପରିଚୟ ଓ ବ୍ୟକ୍ତିତ୍ୱର ଚିହ୍ନଟ ମିଳେ । ରଘୁନାଥବାବୁଙ୍କ ଆତ୍ମା ସଦ୍‌ଗତି ପାଉ, ଏତିକି ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।



"ମଣିଷର ଉତ୍ତପ୍ତ ନିଃଶ୍ୱାସ—
କେ ପାରିଛି ସହି?
ବଞ୍ଚିତ କୁରୁକ୍ଷେତ୍ରେ
ବେଗଧରେ ଏ ଯେ ରକ୍ତ-ନଈ ।
ଅନିବାର୍ଯ୍ୟ ସ୍ରୋତେ ତା'ର
କେତେ କେତେ ଦୁଃଶାସନ ଶବ
ଯାଇଅଛି ଭାସି,
କେତେ ରାଜା ଓ ବାଦଶା,
ପୋପ୍, ଜାର୍, ଫାସିଷ୍ଟ, ନାତ୍‌ସୀ,
ବେବିଲୋନ, ରୋମ, ଗ୍ରୀସ୍, ମେସିଡ଼ନ୍, ହିଟଲର ବର୍ଲିନ୍
ସବୁ···ସବୁ ହୋଇଅଛି ଲୀନ ॥"

(ଅଗଷ୍ଟ ପନ୍ଦର)

# ରଘୁବାବୁ ଥାଆନ୍ତେ କି ?

## ରାଜକିଶୋର ମିଶ୍ର

ଆଜକୁ ପ୍ରାୟ ୩୭ ବର୍ଷ ତଳର କଥା । ଯୁଗ ଅନୁସାରେ ୩ଯୁଗ ପୂର୍ବର । ଆଜିକାଲିର ବିଜ୍ଞାନ ଓ କାରିଗରି କୌଶଳ ପ୍ରୟୋଗ ପରେ ମଧ୍ୟ ପ୍ରାୟ ପୁରୁଷେ ଗଲାଣି । ମୁଁ ସେତେ-ବେଳେ ପୁରୀ କଲେଜ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ । ଭୂତକୋଠି ପାଖ ହଗୁଡିଆ ସରକାରୀ ଘରେ ରହୁଥିଲି । କଲେଜର ଜଣେ ଅଧ୍ୟାପକ ଝିଅପିଲାଙ୍କ ସଙ୍ଗେ ଖରାପ ବ୍ୟବହାର କରିବା ସଙ୍ଗେ ସଙ୍ଗେ ସଦ୍ୟ ବିବାହିତ ଲେକଚରର୍‌ମାନଙ୍କ ସ୍ତ୍ରୀମାନଙ୍କୁ ମଧ୍ୟ ସେଥିରେ ସାମିଲ କରୁଥିଲେ । ଏଣେ ମୋର ପରୀକ୍ଷକ ଭାବରେ କଟକ ଯିବାର ଥିଲା । ମୋ ସ୍ତ୍ରୀ ଏକାକୀ ରହିବାକୁ ଡର ଡର ହୋଇ ମୋତେ କହିବାରୁ ମୁଁ କିଛି ଏସିଡ୍ ଆଣି ଆତ୍ମରକ୍ଷା କରିବାକୁ ଦେଇ ଆସିଥିଲି । ପରୀକ୍ଷା ସରିବାରୁ ଏ ବିଷୟରେ କହିବାକୁ ଯାଇଥିଲି ଝୋଲସାହୁ ।

ରଘୁବାବୁ ଓ ମୁଁ ତଳ ଉପର ହୋଇ ପଢ଼ିଥିଲୁ । ଷ୍ଟ୍ରାଇକ ବେଳକୁ ସେ ଆଗ, ମୁଁ କିନ୍ତୁ ତାର ଧାର ଧାରୁ ନଥିଲି । କେବଳ ଭଲ ପଢ଼ୁଥିବା ହେତୁ ମୋର ତାଙ୍କ ସଙ୍ଗେ ମେଳ । ଝୋଲସାହୁର ସେଇ ପିଣ୍ଡାଳି ଥିବା ଗ୍ରେଟ ଘର, କଟକର ଗଳି କନ୍ଧ ଭଳି ନୁହେଁ, ବେଶ୍ ଖୋଲା ଜାଗା, ମୋ ପରି ଅନୁକୂଳିଆଙ୍କୁ ଭଲ । ଅବଶ୍ୟ ମୋର ଆଉ କେତେକ ବଡ଼ ଆଡ଼ଭୋକେଟ ବନ୍ଧୁ ଥାଆନ୍ତି ଯେଉଁମାନେ ପରେ ଜଜ, ଏପରିକି ଚିଫ୍ ଜଷ୍ଟିସ୍ ମଧ୍ୟ ହେଲେ । ସେଇଠି ଥାନ୍ତି ରଘୁବାବୁ, ସାନ ଗେଡ଼ା ମଣିଷ, କିନ୍ତୁ ବୁଦ୍ଧିରଶକ୍ତି ବେଶ ଉନ୍ନତ । ମୁଁ ତାଙ୍କୁ ସେଦିନ ଏମିତି କିଛି ଆସିଚି ବୋଲି କହିଥିଲି । ସେ ମୋତେ ଉତ୍ତର ଦେଲେ "ଆଜି ପର୍ଯ୍ୟନ୍ତ ବାଡ଼ି ଠେଙ୍ଗା ମାଡର ଯୁଗ ଥିଲା, ଆପଣ କଣ ଏସିଡ୍ ମାଡ଼ ଯୁଗ ଆରମ୍ଭ କଲେଣି ? ହଉ ଅସୁବିଧା ସୁବିଧା ପାଇଁ ମୁଁ ତ ଅଛି" । ତାଙ୍କଠାରୁ ଅଭୟବାଣୀ ଶୁଣି ପୁଣି ଫେରିଲି ତାଳଚେରର ଗାଡ଼ିରେ । ଘରେ ରାତି ପ୍ରାୟ ୧୨ଟାରେ ପହଞ୍ଚିଲି—ସତକୁ ସତ ମୁଁ ଦେଇଥିବା ଏସିଡ୍‌ର ସଦ୍‌ବ୍ୟବହାର ହୋଇଛି ଏବଂ ଆସାମୀ ଡାକ୍ତରଖାନାରେ । ମୁଁ ଆଇ: ଏସ୍: ସି: ରେ ରସାୟନ ପ୍ରଥମ ପେପର୍‌ର ପରୀକ୍ଷକ ଥାଏ ବିପିନବାବୁ ଥାନ୍ତି ସିଣ୍ଡିକେଟ ମେମ୍ବର । ସେ ମୋତେ ଫେଲ୍ ହୋଇଥିବା ଜଣେ ବଡ଼-ଲୋକର ପୁଅ ପାଇଁ କହିଲେ । ମୁଁ ଏ ଭ୍ରଷ୍ଟାଚାରର ବିରୋଧରେ ବିଶ୍ୱବିଦ୍ୟାଳୟରେ ଆପତ୍ତି କଲି । ସମାଜରେ ଦୁର୍ନୀତି ସେତେବେଳୁ ପ୍ରବେଶ କଲାଣି ଏବଂ ଦୁର୍ନୀତି ବିରୋଧରେ ଯାଇ ଲୋକେ କିପରି ଅସୁବିଧାରେ ପଡ଼ନ୍ତି ତାହା ମୁଁ ବର୍ଣ୍ଣନା କରୁଚି । ଭାଇସ୍‌ଚାନ୍ସେଲର

ବାଜି ନ ଖାଇଁ—ସାପ ନ ମରୁ ଏମିତି ରିପୋର୍ଟ ଦେଲେ। କିନ୍ତୁ କଣ ହେବ ? ଜାଗ୍ରତ ସାମ୍ବାଦିକମାନେ ଏ ବିଷୟରେ ଆଲୋଚନା କଲେ। ହେଲେ କେତେକ ବ୍ୟକ୍ତି, ମହେଶବାବୁ ଓ ଡ଼ାକ୍ତର ପ୍ରସାଦ ଆପତ୍ତି ଫେରାଇ ନେବାକୁ ପରାମର୍ଶ ଦେଲେ। ରଘୁବାବୁଙ୍କ ସଙ୍ଗେ ଦେଖା ହୋଇଥିଲି। ସେହି କେବଳ ମୋତେ ଦୃଢ ଭାବରେ ରହିବାକୁ ପରାମର୍ଶ ଦେଇଥିଲେ। ତାପରେ ବାଚୁ ଜଗନ୍ନାଥ ଦାଶ କମିସନ ବସାଇ କରି ବିପିନ-ବାବୁଙ୍କୁ ଦଣ୍ଡିତ କଲେ। ମୁଁ ସେଦିନ ଯାଇଥିଲି। ସେ (ରଘୁବାବୁ) ରସଗୋଲା ମଗାଇ ମୋତେ ସମ୍ବର୍ଦ୍ଧନା କରିଥିଲେ। ଏ ସମ୍ବନ୍ଧରେ ମୁଁ କାହାଠାରୁ ଖଣ୍ଡେହେଲେ ଭଲ ଚିଠି ମଧ୍ୟ ପାଇ ନ ଥିଲି। ଏ ସମାଜର ଅବସ୍ଥା ଚିନ୍ତା କଲେ ହତାଶ ହେବାକୁ ହୁଏ।

ତାପରେ କେତେ ବର୍ଷ ଗଡ଼ିଗଲା। ମୁଁ ଇତସ୍ତତଃ ବଦଳି ହୋଇ ପୁଣି କଟକ ଫେରିଲି। ରଘୁବାବୁ ସେଇଠି ଥାଆନ୍ତି। ଘର ବଖେଇବାକୁ ଟିକିଏ ଯାଗା କିଣିଥାନ୍ତି— ମୁଁ ଯେଉଁ ସ୍ତ୍ରୀଙ୍କୁ ଆଦର୍ଶ ନାରୀ ରୂପେ ଗଢ଼ିବାକୁ ଚାହୁଁଥିଲି, ମୋ କମିଶନର ଶ୍ୱଶୁରଙ୍କ ଇଙ୍ଗିତରେ ସେ ଜଣେ ଭ୍ରଷ୍ଟା ସ୍ତ୍ରୀ ସାଙ୍ଗରେ ବୁଲି ନାରୀ ମଙ୍ଗଳ ସମିତି କରନ୍ତି। ମୁଁ ଏହା ବାରଣ କରିବାରୁ ମୋର ନାରୀ ପ୍ରଗତି ପାଇଁ ଆଗ୍ରହ ନାହିଁ କହି ଆମ ଶ୍ୱଶୁର ତାଙ୍କ ଝିଅକୁ ଘରକୁ ନେଇଗଲେ ଏବଂ ମୋ ନା'ରେ ଜୁଡ଼ିସିଆଲ ସେପାରେସନ ଓ ଖୋରାକି କେଶ ମଧ୍ୟ କଲେ। ରମାଦେବୀ ମତେ ଖୋରାକି ଦେବାକୁ କହିଲେ। ଆଉ କେତେ ଲୋକ ସେପରି କିଛି କିଛି ପରାମର୍ଶ ମଧ୍ୟ ଦେଉଥାନ୍ତି। କେବଳ ରଘୁବାବୁ ମୋ ସଙ୍ଗେ ଏକମତ ହେଲେ। ତେଣୁ କେଶ ନ ଲଢି ତାଙ୍କ ପ୍ରସ୍ତାବ ଅନୁସାରୀ ମୋ ସ୍ତ୍ରୀ ପିଲାମାନଙ୍କ ସହିତ ଅନୁକୂଳ ଘରେ ରହିଲେ ଓ ମୁଁ ଭୂଦାନରେ ମିଶିଲି। ଏପରି ଏକ ପ୍ରସ୍ତାବ ଦେଇ ସେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରିବାରୁ ମୋ ପିଲାମାନେ ପଢ଼ାପଢ଼ି କରିବାକୁ ଅନୁକୂଳ ହୋଇ ଜୀବନରେ ସଫଳକାମ ହେଲେ।

ଏବେ ପୁରୁଷେ ବ୍ୟବଧାନରେ ମୁଁ ଦିନେ ଡ଼ାକ୍ତରଖାନାରୁ ଫେରୁଥାଏ। ଛେଣ୍ଡିପଦାର ଜଣେ ରୋଗୀର ଦେହଯାକ ପୋକ ସାଲୁବାଲୁ। **S. D. M. O.** ଙ୍କୁ କୁହାକୁହି କରି ତାକୁ ଡ଼ାକ୍ତରଖାନା ବାରଣ୍ଡାରେ ରଖାଇଲି। 'କୃଷ୍ଣଚନ୍ଦ୍ର' ଖବରକାଗଜର ସମ୍ପାଦକ ଶ୍ରୀଯୁକ୍ତ ଗୋବିନ୍ଦ ରାଏଙ୍କୁରୁ ମୋତେ ଦେଖି କହିଲେ 'ଆମ ଗାଁଆଡ଼େ ଟିକିଏ ପାଦ ପକାଇବେନି ?' ମୁଁ ତାଙ୍କୁ କହିଲି 'ମୁଁ ଜଣେ ସେବକ, ଏପରି ନକହି ମୋତେ ଆପଣଙ୍କର ଆବଶ୍ୟକ ହେଲେ କାନଧରି ନେଇପାରନ୍ତି।'

ତାଙ୍କ ଗାଁ। ନା କେନ୍ଦୁପଲି। ଗୋଟିଏ ଦୁଇଟି ବ୍ରାହ୍ମଣ ଘର ସାଙ୍ଗକୁ କେତେ-ଗୁଡ଼ିଏ ଗରୀବ ଖେଇଘର। ଗଲାଦିନ ଜଣକ ସ୍ତ୍ରୀ ୩୫ ବର୍ଷ ବୟସରେ ମରିଥାଏ ଯେ ତା ଶୁଦ୍ଧି କ୍ରିୟାରେ କହାକଟା। ବୁନ୍ଦ ବୁନ୍ଦ ବିଷାକ୍ତ ପାଣି ପିଇ ତାର ଅକାଳ ମୃତ୍ୟୁ।

ପ୍ରାୟ ୫ଟା ବେଳେ ନବୀନ ଜେନାର କୂଳକୁ ସେ ମୋତେ ବୁଲାଇ ନେଲେ । କି ଗନ୍ଧ ! ମୁଁ ସଲଫ୍ୟୁରେଟେଡ ହାଇଡ୍ରୋଜେନ ଗନ୍ଧ ଘଣ୍ଟା ଘଣ୍ଟା ବରଦାସ୍ତ କରିପାରିବି, କିନ୍ତୁ ନଇକୂଳର ସେ ଗନ୍ଧ ୧୫ ମିନିଟ ମଧ୍ୟ ସମ୍ଭାଳି ପାରିଲି ନାହିଁ । କେତେ ଦିନ ଧରି ସେ ଅଞ୍ଚଳରେ ବୁଲି ଦେଖିଲି ୧୫ଟା ଗ୍ରାମପଞ୍ଚାୟତର ପ୍ରାୟ ଲକ୍ଷାଧିକ ଲୋକ ତଳିତଳାନ୍ତ । ଥର୍ମାଲ ଓ ଫର୍ଟିଲାଇଜରର ପାଉଁଶବର୍ଷା ( ash rain ), ବିଷାକ୍ତ ବାଷ୍ପ ଓ ଦୂଷିତ ତୈଳାକ୍ତ ପାଣି ଦ୍ୱାରା ଅକାଳ ମୃତ୍ୟୁ, ଅପମୃତ୍ୟୁ, ଏବଂ ପିଲାଙ୍କ ନାନାଦି ଫୁସ୍‌ଫୁସ୍ ରୋଗ ସହିତ ଶସ୍ୟହାନୀ ଓ ଗୃହପାଳିତ ପଶୁଙ୍କ ମୃତ୍ୟୁ । ଜନମଙ୍ଗଳ ରାଷ୍ଟ୍ରରେ ଖୋଦ୍ ସରକାରଙ୍କ ଦ୍ୱାରା ଜନ ଅମଙ୍ଗଳ । ଏଥିପାଇଁ ମୁଖ୍ୟ ବିଚାରପତିଙ୍କ ଦୃଷ୍ଟି ଆକର୍ଷଣ କରିବାରୁ ସେ ଏହାକୁ writ ( ରିଟ୍ ) କେଶ୍ ଭାବେ ଗ୍ରହଣ କଲେ । ମୁଁ ବାର୍ ଆସୋସିଏସନର ପ୍ରେସିଡେଣ୍ଟ ମାଧବାନନ୍ଦ ଦାଶ, ଓ ବାରିଷ୍ଟର ରଞ୍ଜିତ ମହାନ୍ତି ପ୍ରଭୃତିଙ୍କୁ ଚିଠି ଲେଖି ଉତ୍ତର ପାଇଲି ନାହିଁ । ସେତେବେଳେ ମୋର ବିବେକ ବିକଳରେ ଡ଼ାକୁଥିଲା "ରଘୁବାବୁ ଆଉଥରେ ଫେରିଆସନ୍ତେ କି ?"



"ନର୍ଯାତନ ମଣି ତୁଚ୍ଛ, କମାଣରେ କରି ଉପହାସ,
ଗଣିବଲେ ବଳୀୟାନ୍, ବିଜୟେ ଯା' ଅଟଳ ବିଶ୍ୱାସ,
ପଦେ ପଦେ ଘାତକର ବେୟୋନେଟ କରିଛି ସାମନା
ତଥାପି ଚଳି ଯେ ଚଳେ କାଳସର୍ପ ହଳାହଳ ଫଣା,
ନିଷ୍ଠିତ ଗଡର ଡ଼ାକେ ବଜ୍ରମୁଷ୍ଟି ହାଣି ଉର୍ଦ୍ଧ୍ୱନଭେ
ଜାଣେ, ଜାଣେ ସେମାନେ ଆସିବେ ।
ଶୁଣ ଶୁଣ, ପଥେ ପଥେ ବାଜି ଉଠେ ଶୁଭ ପଦଧ୍ୱନି—
ଅଭିଯାତ୍ରୀ ଜନତାର ..... ।
ନୁହେଁ ନୁହେଁ ଅନ୍ୟର ସରଣୀ ।"
(ପଦଧ୍ୱନି)

# ଅତୀତ ସ୍ମୃତିର ପୃଷ୍ଠାଏ

## ଶଶିଭୂଷଣ ମିଶ୍ର

ରଘୁବାବୁଙ୍କ ସହିତରେ ମୋର ପ୍ରଥମ ଦେଖା ୧୯୪୭ ଅକ୍ଟୋବରରେ । ପ୍ରଥିତଯଶା ଆଡ଼ଭୋକେଟ ଚନ୍ଦ୍ରମଣି ଆଗ୍ରୱାଲଙ୍କ ସିରସ୍ତାରେ ଆମେ ଦହେଁ ଜୁନିୟର ଭାବରେ ଥିଲୁ—ଅବଶ୍ୟ ସେ ମୋର ଢେର ଆଗରୁ ସେଠାରେ ଥିଲେ । ନିଜର ପ୍ରତିଭା ଓ ପ୍ରତ୍ୟୁତ୍ପନ୍ନମତି ଯୋଗୁଁ ଆଇନଗତ ଜଟିଳ ସମସ୍ୟାମାନ ରଘୁବାବୁ ଅକ୍ଳେଶରେ ସମାଧାନ କରି ପାରୁଥିଲେ ବୋଲି ଚନ୍ଦ୍ରମଣି ବାବୁ ଓ କୋର୍ଟର ହାକିମମାନଙ୍କର ସେ ପ୍ରୀତିଭାଜନ ହୋଇଥିଲେ । ରଘୁବାବୁ ଗଲେ ଏ ବ୍ୟବସାୟରେ ମୁଁ ତାଙ୍କ ପାଖରେ ପ୍ରଥମେ ଖଡ଼ି ମଡ଼ାଇ ସବୁ ଶିଖିଛୁ । ଏପରିକି ମୁଁ କଟକରୁ କେଉଁଝରର ଆସିବା ପରେ ମଧ୍ୟ କୌଣସି ଜଟିଳ ମକଦ୍ଦମା ହାତରେ ପଡ଼ିଲେ ମୁଁ ତାଙ୍କ ସାହାଯ୍ୟ ଲୋଡ଼ୁଥିଲି ଏବଂ ତାହା ଆଶାତୀତ ଭାବରେ ପାଉଥିଲି । ଆଇନଜୀବୀ ଭାବରେ ନିଜର ନିଷ୍ଠା ପାଇଁ ସେ ସୁନାମ ଅର୍ଜନ କରିଥିଲେ ଏବଂ ବହୁ ଆଇନ ବହି ସଙ୍କଳନ କରିଥିଲେ । I. L. R. C. L. T. ଓ କଟକର 'The Lawyer'ର ସେ ବହୁଦିନ ଧରି ସମ୍ପାଦନା କରୁଥିଲେ । ଓଡ଼ିଶା High Court ଦ୍ୱାରା ପ୍ରକାଶିତ ରାୟସବୁର Judicial Index ପ୍ରସ୍ତୁତିରେ ତାଙ୍କ ଅବଦାନ ମଧ୍ୟ ଭୁଲିବାର ନୁହେଁ ।

ରଘୁବାବୁଙ୍କ ଠାରୁ ଶୁଣେ ସେ ତାଙ୍କ ଭାଇ ବାଞ୍ଛାନିଧିବାବୁଙ୍କ ପାଖରେ ଛାତ୍ରଜୀବନରେ ରହି ଯାଜପୁର ହାଇସ୍କୁଲରେ ପ୍ରାୟ ୧୯୩୪ ବେଳକୁ କେତେବର୍ଷ ଅଧ୍ୟୟନ କରିଥିଲେ । ସେହି ସମୟରେ ମୋର ଦୁଇଜଣ ପିତୃବ୍ୟ ଲବ୍ଧପ୍ରତିଷ୍ଠ ଶିକ୍ଷାବିତ୍ ଶ୍ରୀଯୁକ୍ତ ଅଚ୍ୟୁତାନନ୍ଦ ମିଶ୍ର (୯୩) ସେ ସ୍କୁଲର ପ୍ରଧାନ ଶିକ୍ଷକ ଓ ଅନ୍ୟତମ ପିତୃବ୍ୟ ସ୍ୱର୍ଗତ ମୂର୍ଚ୍ଛାନନ୍ଦ ମିଶ୍ର ସହକାରୀ ପ୍ରଧାନ ଶିକ୍ଷକ ଥିଲେ । ସେମାନଙ୍କ ପାଖରେ ରଘୁବାବୁ ଅନେକ ଉନ୍ନ ଶିକ୍ଷା ଲାଭ କରି ସେମାନଙ୍କ ଆଦର୍ଶରେ ଏପରି ଅନୁପ୍ରାଣିତ ହୋଇଥିଲେ ଯେ ସେମାନଙ୍କ ସ୍ତବଗାନ କରିବାରେ ସେ ଥିଲେ ମୁଖର । ମୋର ପିତୃବ୍ୟମାନେ ମଧ୍ୟ ସେମାନଙ୍କ ପ୍ରିୟ ଛାତ୍ର ରଘୁର ମେଧା, ପରିଶ୍ରମ ଓ ମନୁଷ୍ୟତାର ଅନୁରୂପ ପ୍ରଶଂସା କରିଥାଆନ୍ତି ।

ସ୍କୁଲ ଓ କଲେଜରେ ଭଲ ଛାତ୍ର ଭାବରେ ତାଙ୍କର ଖ୍ୟାତି ଥିଲା । ତତ୍କାଳୀନ ପାଟନା ବିଶ୍ୱବିଦ୍ୟାଳୟରୁ ଇଂରେଜି ଅନର୍ସ ସହ ବି: ଏ: ପାଶ୍ କରି ଏମ୍: ଏ: ପଢ଼ୁଥିବା

ହେଲେ ଖ୍ୟାତନାମା ପ୍ରଫେସର ସୁନ୍ଦରମ୍, ଭିଃ ଭିଃ ଜନ ଟ୍ରଭେଲିଙ୍କ ପ୍ରୀତିଭାଜନ ହୋଇଥିଲେ । ସେ ସେମାନଙ୍କର ଏତେ ପ୍ରିୟ ଥିଲେ ଯେ କଲେଜ ଛାଡ଼ିବାର ବହୁବର୍ଷ ପରେ ମଧ୍ୟ ତାଙ୍କ ବିବାହର ବନ୍ଧୁମିଳନରେ ପ୍ରଫେସର ସୁନ୍ଦରମ୍ ନିଜେ ଆସିଥିଲେ । ମୁଁ ଏଠାରୁ ଯାଇ ସେ ଉତ୍ସବରେ ଯୋଗ ଦେଇଥିଲି । ସେ ସ୍ମୃତି ସବୁ କାଲିପରି ଆଖି ଆଗରେ ନାଚିଯାଉଛି ।

ରଘୁବାବୁଙ୍କର ଆଇନ ଶାସ୍ତ୍ରରେ ଯେମିତି ପ୍ରବେଶ ଥିଲା, ତତୋଧିକ ଦକ୍ଷତା ଥିଲା ସାହିତ୍ୟ, ସମାଲୋଚନା, ରାଜନୀତି ଓ ଦର୍ଶନଶାସ୍ତ୍ରରେ । ଯେ କୌଣସି ବିଷୟରେ ଘଣ୍ଟା ଘଣ୍ଟା ଧରି ଆଲୋଚନା କରି ସେ ଆମ୍ଭମାନଙ୍କୁ ବିସ୍ମିତ କରିଦେଉଥିଲେ । ତାଙ୍କ ଲେଖାର ଶୈଳୀରେ ଅଭିନବତ୍ୱ ଥାଏ । ଇଂରେଜୀ ଓ ଓଡ଼ିଆରେ ଗଦ୍ୟ, ପଦ୍ୟ, ପ୍ରବନ୍ଧ ସମାଲୋଚନା ଯାହା ହେଉ ପଛେ ଗୋଲ ଗୋଲ ସୁନ୍ଦର ଅକ୍ଷରରେ ଅବଲୀଳା କ୍ରମେ ସେ ଅପୂର୍ବ ରଚନାମାନ ଲେଖିପାରୁଥିଲେ ।

ଏତେ କାର୍ଯ୍ୟବ୍ୟସ୍ତତା, ଅଭାବ ଅନଟନ ମଧ୍ୟରେ ସେ ନିଜ ଆଦର୍ଶରୁ କେବେହେଲେ ବିଚ୍ୟୁତ ହୋଇନାହାନ୍ତି । କମ୍ୟୁନିଷ୍ଟ ପାର୍ଟିର ସେ ଜଣେ ସକ୍ରିୟ ସଭ୍ୟ ଓ ଉପଦେଷ୍ଟା ଥିଲେ ଓ ସେ ଆନ୍ଦୋଳନରେ ତାଙ୍କର ବିଶ୍ୱାସ ଅତୁଟ ଥିଲା । କାର୍ଲମାର୍କସ ଓ ଅନ୍ୟ ରୁଷୀୟ ତଥା ବୈଦେଶିକ ଚିନ୍ତକମାନଙ୍କର ସନ୍ଦର୍ଭ ସବୁ ସେ କେବଳ ଭଲ ଭାବରେ ପଢ଼ିଥିଲେ ତାହା ନୁହେଁ, ତହିଁରେ ଅନୁପ୍ରାଣିତ ହୋଇଥିଲେ ଏବଂ ନିର୍ଭୀକ ମତବ୍ୟକ୍ତ କରୁଥିଲେ ।

ଏ ସମ୍ବନ୍ଧରେ ଗୋଟିଏ ଛୋଟ କଥା ଆଜି ମନେ ପଡ଼ି ହସ ମାଡ଼ୁଛି । ସେ ସମୟରେ କଟକରେ ନୂଆକରି ରେଡ଼ିଓ ଷ୍ଟେସନ ହୋଇଥାଏ । ସେଠାରେ ଆନ୍ତର୍ଜାତିକ ସମ୍ବାଦ ସବୁର ପାକ୍ଷିକ ସମାଲୋଚନା ୧୫ ମିନିଟ୍ ପାଇଁ କରିବାକୁ କେତେ ଥର ସୁଯୋଗ ମିଳିଥିଲା । ଏହା ମୁଖ୍ୟତଃ ରାଜନୈତିକ ସମାଲୋଚନା ହୋଇ ଥିବାରୁ ତହିଁରେ ନିରପେକ୍ଷ ମତବ୍ୟକ୍ତ କରିବା ବାଧ୍ୟ । ସମ୍ବାଦ ପରିବେଷଣରେ କାଳେ କୌଣସି ଆପତ୍ତି-ଜନକ ମତାମତ ତହିଁରେ ପ୍ରସ୍ଫୁରିତ ହୋଇଯିବ ସେଥିପାଇଁ ସତର୍କତା ଦୃଷ୍ଟିରୁ ସେହି ସମାଲୋଚନାଟି ଲେଖି ସେମାନଙ୍କର କଡ଼ାକଡ଼ି ଯାଞ୍ଚ ପାଇଁ ଦିନେ ପୂର୍ବରୁ ଦେବାକୁ ପଡ଼ୁଥିଲା । ତାହା ଲେଖିବାର ଭାର ମୁଁ ରଘୁବାବୁଙ୍କ ଉପରେ ସମ୍ପୂର୍ଣ୍ଣ ନ୍ୟସ୍ତ କରି ତାଙ୍କୁ ବାରମ୍ବାର ତାଗିଦ୍ କରି ଦେଇ ଥାଏଁ ଯେପରି କୌଣସି କମ୍ୟୁନିଷ୍ଟ ଭାବଧାରା ସେଥିରେ ପରିସ୍ଫୁଟ ନ ହୁଏ । ସେ ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ ତାହା ମୋ ପାଇଁ ଲେଖି ଦିଅନ୍ତି । ସେ ଲେଖାରେ ଭାଷା ଓ ଭାବର ଏପରି ଅପୂର୍ବ ସମନ୍ୱୟ ହୋଇଥାଏ ଓ ସେ ଲେଖା ଏତେ ବଳିଷ୍ଠ ଯେ ତାହା ପଢ଼ିସାରି ମୁଁ ରଘୁବାବୁଙ୍କୁ କହେଁ ଏହା ପୁରାପୁରି ଗୋଟିଏ କମ୍ୟୁନିଷ୍ଟ ଟ୍ରାକ୍ଟର ପତ୍ରିକା ହୋଇଗଲା । ସେ ହସିହସି ଜବାବ ଦିଅନ୍ତି କୌଣସି କାଟଛାଟ ନ କରି ତାହା

ସିଧା ପଠାଇଦିଅ । ତାହାର ଅନ୍ତର୍ନିହିତ ତଥ୍ୟ ସହଜରେ ବୋଧଗମ୍ୟ ହେବ ନାହିଁ । ସତକୁ ସତ ସେ ଲେଖାରେ ସେମାନେ ହସ୍ତକ୍ଷେପ କରିବାତ ଦୂରର କଥା ସେଥିପାଇଁ ବରଂ ମୁଁ ଏକାଧିକ ବାର ପ୍ରଶଂସିତ ହୋଇଅଛି । କିନ୍ତୁ ସେ ପ୍ରଶଂସାର ଭାଜନ ପ୍ରକୃତରେ କିଏ ?

ବୟସରେ ମୋ ଠାରୁ ମାତ୍ର ବର୍ଷେ ବଡ଼ ହୋଇଥିଲେହେଁ ରଘୁବାବୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଓ ପରମ ହିତୈଷୀ ଥିଲେ । ଆମ ଭିତରେ କେତେ ରଙ୍ଗରସ, ଥଟ୍ଟା ପରିହାସ ଏପରିକି ମୁକ୍ତ ଭିତରେ ଗାଳିଗୁଲଜ ପ୍ରାୟ ଲାଗି ରହୁଥାଏ—କିନ୍ତୁ ସେଥିରେ କୌଣସି ଅଶ୍ଳୀଳତା ନ ଥାଏ । ଆମ ଦୁଇଜଣଙ୍କର ପରମ ପ୍ରିୟ ବସ୍ତୁ ଥିଲେ କଡ଼ା ପାନ ଓ କପେ ଭଲ ଚା' । ସିନେଆରଙ୍କ ସିଡ଼ିଘରେ ହେଉ ବା ଦୀର୍ଘ ଦିନ ପରେ ବାଟରେ ଘାଟରେ ଦେଖା ହେଲା ବେଳେ ହେଉ ବା ସେ ଲକ୍ଷ୍ୟରେ କରେଣ ଯାଉଥିବା ବେଳେ ହେଉ ମୋ ସହିତ ଅକସ୍ମାତ ଭେଟ ହୋଇଗଲେ ସତେ ଯେପରି ମୋ ଅନ୍ତରେ ଭାବ ବୁଝିପାରି ତତ୍‌କ୍ଷଣାତ୍ ତାଙ୍କ କଳା କୋର୍ଟ ପକେଟରୁ ଖଣ୍ଡିଏ ପାନ ମୋ ଆଡ଼କୁ ବଢ଼ାଇ ଦିଅନ୍ତି । ତହିଁରେ ଭାଷାର ଚାକଚକ୍ୟ ନାହିଁ— କେବଳ ହୃଦୟ !

ଏ ପୁଣି ଏକ ଅପୂର୍ବ ଯୋଗ । ତାଙ୍କ ସ୍ତ୍ରୀ ବିଦୁଷୀ ଶ୍ରୀମତୀ ମନୋରମା ମୋ ସ୍ତ୍ରୀ ଶାନ୍ତିର ବାଲ୍ୟବନ୍ଧୁ ଓ ସହପାଠିନୀ । ଭଲଗୁଣୀ ହିସାବରେ ଉଭୟ ସୁନାମ ଅର୍ଜ୍ଜନ କରିଥିଲେ ଓ ଉଭୟଙ୍କର ଘନିଷ୍ଠତା ଯଥେଷ୍ଟ ଥିଲା । ବାଙ୍ଗରା ଗ୍ରେଟିଆ ମଣିଷଟି । ନବଦ୍ୱୀପର ପରିଧାନ-ଖଣ୍ଡିଏ ସାଧାରଣ ଧୋତି ଓ ଜାମା କିନ୍ତୁ ତା ଭିତରୁ ଫୁଟିଉଠେ ବୁଦ୍ଧିଦୀପ୍ତ, ନିର୍ଭୀକ, ପ୍ରତିଭାବାନ ଚେହେରା— ଆଦର୍ଶର ଏକ ପ୍ରତୀକ । ଜୀବନର ଏତେ ଝଡ଼ଝଞ୍ଜା, ସୁଖଦୁଃଖ, ଅଭାବ ଅନଟନ, ଶାରୀରିକ ଓ ମାନସିକ ଅଶାନ୍ତି ଭିତରେ ତାଙ୍କୁ କେବେ ଭାଙ୍ଗି ପଡ଼ିବାର ବା ମୁହଁର ସେ ହସ ମଉଳି ପଡ଼ିବାର ମୁଁ କେବେ ଦେଖିନାହିଁ । 'Say not the struggle nought availeth' ର ସେ ଗୋଟିଏ ଜୀବନ୍ତ ପ୍ରତିମୂର୍ତ୍ତି । ଏପରି ଏକ ଚରିତ୍ର ବ୍ୟକ୍ତିଙ୍କର ଅନୁକରଣୀୟ ନୁହେଁକି ? କିନ୍ତୁ ଏଠାରେ ସ୍ୱତଃ ପ୍ରଶ୍ନ ଉଠୁଛି ଜୀବନରେ ସେ ଯେଉଁ ପ୍ରତିଷ୍ଠା ପାଇବାର ହକଦାର ଥିଲେ ତାହା ପାଇଲେକି ?

ଜୀବନରେ ରଘୁବାବୁ ଥିଲେ ପରିବ୍ରାଜକ । ତାଙ୍କୁ ସ୍ମରଣ କରି ଆଖିର ଲୁହ ଟୋପାଏ ଗଡ଼ାଇ ତାଙ୍କର ସ୍ମୃତି ତର୍ପଣ କଲେ ନିଜକୁ ଗୌରବାନ୍ୱିତ ମନେ କରିବି ।

ରଘୁବାବୁଙ୍କ ଅମର ଆତ୍ମା ମୋକ୍ଷ ଲାଭ କରୁ !

ଓଁ ମଧୁ, ମଧୁ, ମଧୁ,



# ଏକ ପ୍ରତିଭା : ପ୍ରହେଳିକାମୟୀ

## ଅନନ୍ତ ପଟ୍ଟନାୟକ

'ରଘୁନାଥ' ଜଣେ ଐତିହାସିକ ବ୍ୟକ୍ତି ଆଜି—ଥିଲେ ଯେତିକି ଦୂରରେ ସେତିକି ନିକଟରେ—ମୋ ପାଇଁ, ମୋ ସମକ୍ଷରେ ଗୋଟିଏ ପ୍ରହେଳିକା । ପରସ୍ପର ବିରୋଧୀ ଭାବ ଓ କର୍ମର ସମନ୍ୱୟରେ ଅନେକଙ୍କ ପାଖରେ ସେ ଅବୋଧ ଏକ ପ୍ରତିଭା । ଯେତିକି ଜ୍ୱଳନ୍ତ ସେତିକି ଶୀତଳ—ସାଧାରଣ ଜୀବନରେ ଆଇନଜୀବୀ ଓ ଗୃହସ୍ଥ—କିନ୍ତୁ ମନୋରାଜ୍ୟରେ ଭାବ ଓ ଆଦର୍ଶରେ ଚିର ସଂଚରଣଶୀଳ ଓ ତତ୍ତ୍ୱାନୁସନ୍ଧାନୀ । ଏଣୁ ଲୋକମଙ୍ଗଳ-କାମନାରେ କେତେବେଳେ ସଂଗ୍ରାମୀ ଓ ସଂଗ୍ରାମକୁ ଆହ୍ୱାନକାରୀ ତ କେତେବେଳେ ବ୍ୟର୍ଥକାମ । ବିହ୍ୱଳିତ ଦୃଷ୍ଟି ଘେନି (କମ୍ୟୁନିଷ୍ଟ ମତବାଦରୁ ଗାନ୍ଧୀବାଦ, ଏପରିକି ସନାତନ ହିନ୍ଦୁ ଧର୍ମୀୟ ଆଧ୍ୟାତ୍ମିକତାର ଲକ୍ଷ୍ୟକାରୀ) ପରେ ପୁଣି ପ୍ରତ୍ୟାବର୍ତ୍ତନକାରୀ ସାମ୍ୟବାଦକୁ—'ସ୍ୱପ୍ନ'ରେ ।

ଏଣୁ ରଘୁନାଥଙ୍କ ସମ୍ପର୍କରେ କୁହାଯାଇପାରେ ମୋ ମତରେ ଯୋଡ଼ିଏ କଥା—ନିଃସଂଶୟରେ—

ପ୍ରଥମଟି ହେଉଛି, ଯେଉଁମାନଙ୍କ ହୃଦ୍‌ତନ୍ତ୍ରୀରେ ସ୍ପନ୍ଦିତ ହୁଏ ଦୁଃଖ, ଶୋକ, ଦାରିଦ୍ର୍ୟ, ଅତ୍ୟାଚାର, ଶୋଷଣ, ନିପୀଡ଼ନର ଛନ୍ଦ, କ୍ଷୀଣ ଭାବରେ ହେଉ ବା ପ୍ରବଳ ଭାବରେ ହେଉ—ସେମାନଙ୍କ ମଧ୍ୟରୁ କେତେକ ପ୍ରବୃଦ୍ଧ ବିମୂଢ଼ ହୁଅନ୍ତି, କେତେକ ଭାଗ୍ୟର ଦାସତ୍ୱରେ ଦିନ କଟାନ୍ତି କପାଳରେ ହାତ ମାରି, କିନ୍ତୁ ଅଳ୍ପ କେତେଜଣ, ଯେଉଁମାନଙ୍କର ମନ ଅସ୍ଥିର ହୁଏ, ବିଦ୍ରୋହ କରିଉଠେ—ବିମୂଢ଼ତାକୁ ଉପହାସ କରି ଭାଗ୍ୟର ଦାସତ୍ୱକୁ ବିଦ୍ରୂପ କରି ସବୁ ଦୁଃଖ, ଶୋକ, ନିର୍ଯ୍ୟାତନା, ଉତ୍ପୀଡ଼ନ ଇତ୍ୟାଦିର କାରଣର ସନ୍ଧାନ ପାଇଁ, ସେଇମାନେ ଅଗ୍ରସର ହୁଅନ୍ତି ନିର୍ଭୀକ ଭାବରେ । ବୈଷୟିକ, ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ପ୍ରବେଶ କରି ସମସ୍ତ ପ୍ରକାର ଦ୍ୱନ୍ଦ୍ୱ ବା ସଂଘର୍ଷର, ସମ୍ମୁଖୀନ ହୁଅନ୍ତି ବିପୁଳ ସଂଗ୍ରାମରେ । ଏଣୁ ସେମାନେ 'ଅସ୍ଥିର ଚିତ୍ତ' ବା 'ଦୋଳାୟମାନ' ମନୋବୃତ୍ତିର ବୋଲି ପ୍ରତିଭାତ ହେଉଥିଲେ ମଧ୍ୟ, ସଂଗ୍ରାମରେ ହାର୍-ଜିତ୍ ବା ଅଗ୍ରସରଣ ବା ପଶ୍ଚାଦପସରଣ ହେତୁ ପ୍ରତି ଘଟଣା ଓ ବସ୍ତୁର ବୈଜ୍ଞାନିକ ବିଶ୍ଳେଷଣ କରନ୍ତି । ପ୍ରକୃତରେ ଦେଖିଲେ ସେମାନଙ୍କ ପ୍ରତିଭାର ସ୍ଫୁରଣ ଆସେ ତାତ୍ତ୍ୱିକ ବିଚାରଣା ସହିତ ସୁକୋମଳ ହୃଦୟର ଆଲୋଡ଼ନରେ । ଜୀବନ-ମାର୍ଗରେ ଯାହା ଭେଟନ୍ତି

ସେମାନେ ସେ ସବୁ ସମ୍ପର୍କରେ ବାସ୍ତବ ଜ୍ଞାନ ବା ଉପଲବ୍ଧି ପାଇଁ ବ୍ୟାକୁଳ ହୁଅନ୍ତି । ଏହା ନିଶ୍ଚିତ ଯେ, ଓଡ଼ିଆ ସାହିତ୍ୟରେ ପ୍ରଗତିଶୀଳ ଚେତନାର ଅନ୍ୟତମ ସାର୍ଥକ ବାର୍ତ୍ତାବହ ଥିଲେ ରଘୁନାଥ । ସେ ଥିଲେ ପୁଣି ଆବେଗ ଆଲୋଡ଼ିତ ଓ ହୃଦୟର ବୁଦ୍ଧିଦୀପ୍ତ ଅସ୍ମିର ଚେତନାର ପ୍ରତିଭାଧର କବି । ଏହା ତାଙ୍କର କବିତା ଓ 'ମୁଖବନ୍ଦୀ'ରେ ଆଭାସିତ । ଏଣୁ ଅଭିଜ୍ଞାନ ପାଇଁ ପ୍ରଥମେ କେତୋଟି ମତାଦର୍ଶରେ କିଛି କିଛି ଦିନ ସଂପୃକ୍ତ ରହି ସେ ନିଜର ଯେଉଁ ବୈଜ୍ଞାନିକ ଓ ହୃଦୟ-କେନ୍ଦ୍ରୀ ପଥରେ ଗତି କରିଥିଲେ - ମୁକ୍ତକଣ୍ଠରେ ମୁକ୍ତିର, ସାମ୍ୟର ଜୟଗାନ ଗାଇ ପୁଣି ଶେଷରେ ସେହି କ୍ଷେତ୍ରକୁ ଫେରି ଆସିଥିଲେ । ଜୀବନଦୀପର ଆକସ୍ମିକ ନିର୍ବାଣ ପୂର୍ବରୁ ପ୍ରାୟ — ତାଙ୍କ ସାଧନା ଓ ରଚନାର ଦିଗ୍‌ବିଦିଗ ଘେନି ଲକ୍ଷ୍ୟ କରି ଯାଇପାରେ ବିଗୁର ବୁଦ୍ଧିର ତୀକ୍ଷ୍ଣତା, ସୂକ୍ଷ୍ମ ବୈଜ୍ଞାନିକ ଦୃଷ୍ଟିର ତୀବ୍ରତା ସହିତ ରାଗ ବିରାଗରେ 'ସନ୍ତୁଳିତ' ହୃଦୟର ସ୍ନିଗ୍ଧତା, ମୃଦୁଳତା ମଧ୍ୟରେ ଭାରସାମ୍ୟ ରହିଛି କେତେ, ରହିଥାନ୍ତା ବା କେତେ ?

ଇତିହାସରେ ଗାନ୍ଧୀ, ଲେନିନ୍‌ଙ୍କ ଭଳି ଅଦ୍ଭୁତ ପ୍ରତିଭାବନ୍ତ ହୋଇ ନ ଥିଲେ ସାଧାରଣ ଜୀବନ ତଥା ପାରିବାରିକ ବା ବୃତ୍ତିଗତ କ୍ଷେତ୍ରରେ କେବଳ ନୁହେଁ — ସମଗ୍ର ରୂପେ ମାନବ ଜାତିର ଚିନ୍ତା-ଚେତନା, କର୍ମ ଓ ଧର୍ମରେ ଭାରସାମ୍ୟ ରହିଛି ବା ରହିପାରେ କେତେଜଣଙ୍କର ! କାହାଠାରେ ବୁଦ୍ଧିର ଔଜ୍ଜ୍ୱଲ୍ୟ ତ କାହାଠାରେ ହୃଦୟର ଉଚ୍ଛ୍ୱାସ — ଆଉ ଏହି ଦୁଇଟିର ଆକର୍ଷଣ ବିକର୍ଷଣ ମଧ୍ୟରେ ସୁକୁମାର ଶିଳ୍ପ-ପ୍ରାଣ ବ୍ୟକ୍ତି ହୁଏ । ଅଥୟମନା ହେବା ଆଦୌ ବିସ୍ମୟକର ନୁହେଁ । ରଘୁନାଥଙ୍କ ପକ୍ଷରେ ଏପରି ଧାରଣା କରିବା ଅଯୌକ୍ତିକ ହେବନାହିଁ ; କାରଣ ପରାଧୀନତାର ବିଳୟ ଓ ସ୍ୱାଧୀନତାର ଅଭ୍ୟୁଦୟର ଦଶକରେ ବିକାଶ ଘଟିଥିଲା ତାଙ୍କ ପ୍ରତିଭାର । ସ୍ୱାଧୀନତା ଓ ସାମ୍ୟ, ଏହି ଦୁଇଟି ଚିନ୍ତାଧାରା ଓ କର୍ମଧାରାର କେତେବେଳେ ଏକତ୍ର, କେତେବେଳେ ବିଭକ୍ତ ପ୍ରବାହରେ ବିଧୌତ ହେଉଥିଲା ତାଙ୍କର ସମ୍ବେଦନଶୀଳ ବିଚଳିତ ହୃଦୟ ଓ ମସ୍ତିଷ୍କ । ଛାତ୍ରାବସ୍ଥାରୁ ସେ ଗ୍ରହଣ କରିଥିଲେ କମ୍ୟୁନିଷ୍ଟ ଆଦର୍ଶ ଓ କର୍ମପନ୍ଥା, ଜୀବିକାର ସନ୍ଧାନରେ ଆଇନ୍ ବ୍ୟବସାୟରେ ମଗ୍ନ ରହିବା ପର୍ଯ୍ୟନ୍ତ । ପରେ ସେ କମ୍ୟୁନିଷ୍ଟ ଦଳ ଛାଡ଼ି ଅନ୍ୟ ରାଜନୈତିକ ସଙ୍ଗଠନକୁ ମୁହାଁଇଥିଲେ ଅବଶ୍ୟ, କିନ୍ତୁ ଥରେ ଯିଏ 'ସମତା'ର ଓ 'ସ୍ୱାଧୀନତା'ର ଆଦର୍ଶ ଗ୍ରହଣ କରେ, ନିଷ୍ଠାପର ଭାବେ ସେଥିପାଇଁ କାର୍ଯ୍ୟ କରେ ମାନବିକ ଉଦାରତା ଯୋଗେ ସାମ୍ୟବାଦର ସମର୍ଥକ ହୁଏ ,ତାହା ପକ୍ଷରେ ଅନ୍ୟ ମତାଦର୍ଶର ପଥିକ ହେବା ହିଁ ଏକ ବିଡ଼ମ୍ବନା । ଏଥିପାଇଁ ଯେ ସାମ୍ୟବାଦୀ ଆଦର୍ଶ ବା ପନ୍ଥାରେ ବିଶ୍ୱାସୀ ଥାଏ ସେ ପରେ ତା'ର ଯେତେ ବିରୋଧୀ ହେଉ କି ତାକୁ ଘୃଣା ଚକ୍ଷୁରେ ଦେଖୁ — ସାମ୍ୟବାଦର ସୁମହାନ୍ କଳ୍ପନା ଓ ବାସ୍ତବ ଜୀବନ ନିର୍ମାଣର ପ୍ରେରଣାରୁ କେବେହେଲେ ନିଜକୁ 'ଅପ୍ରଭାବିତ' ବା ବିଳଗ୍ନ ରଖିପାରେ ନାହିଁ ।

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ ସମୟ ଧରି ପୃଥିବୀର ବହୁ ଦେଶରେ କମ୍ୟୁନିଷ୍ଟ ପଥରୁ ଚ୍ୟୁତ ବୁଦ୍ଧିଜୀବୀମାନଙ୍କ କ୍ଷେତ୍ରରେ ଏହାହିଁ ଦେଖା ଯାଇଛି । ମନେହୁଏ ରଘୁନାଥଙ୍କ ଜୀବନରେ ଏହାହିଁ ପ୍ରକଟିତ ହୋଇଛି । ଜନସାଧାରଣଙ୍କ ଦୁର୍ଦ୍ଦଶାରେ ବ୍ୟଥିତ ହୋଇ ସେ ଅତ୍ୟାଚାର, ଅନାଚାର, ନିର୍ପୀଡ଼ନ ଓ ସ୍ୱାର୍ଥପରତା ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ଓ ଉଦ୍‌ବୋଧନ ଦେଇଛନ୍ତି । ତାଙ୍କର କବିତା ପ୍ରଧାନତଃ – ଯଦିଓ ଅନବଦ୍ୟ, ତଥାପି ସାବଲୀଳ ଅନୁବାଦ ଓ ଗଳ୍ପ ରଚନା ପ୍ରଭୃତି କ୍ଷେତ୍ରରେ ସେ କମ୍ ପଟୁତା ଦେଖାଇ ନାହାନ୍ତି ।

ଦ୍ୱିତୀୟ କଥାଟି ହେଉଛି – ସାଧାରଣ ଲୋକ ସମାଜ ସହିତ ସାଲିସ୍ କରି ଚଳେ । ସମାଜର ପରଂପରା, ପ୍ରଥାଗତ ଯେତେ ଗତିବିଧି, ତାହା ବ୍ୟକ୍ତିତ୍ୱଘାତୀ, ଅତୀତର ଆଚାର ବିଚାର-ଆଶ୍ରୟୀ, ବର୍ତ୍ତମାନ ଯୁଗର ପରିପନ୍ଥୀ ଏବଂ ଭବିଷ୍ୟତର ଘୋର ବିରୋଧୀ ଓ ପଥ-ରୋଧକାରୀ ହେଲେ ମଧ୍ୟ ତାହାକୁ ମାନିନିଏ । ମାତ୍ର ପ୍ରତିଭାଶାଳୀ ବ୍ୟକ୍ତି ଚାହେଁ ସମାଜର ସଂସ୍କାର । ସେ ବର୍ତ୍ତମାନର ଯାହା ଜୀବନ୍ତ, ଆନନ୍ଦମୟ, ତାକୁ ସ୍ୱାଗତ ଜଣାଇ ନିର୍ଦ୍ଦ୍ଦକତାର ସହ ଯାହା ଭବିଷ୍ୟତର ନିର୍ମାଣକାରୀ ହେବ ସେଥିପାଇଁ ପାରିବାରିକ, ବୈଷୟିକ, ସାମାଜିକ କିମ୍ବା ରାଜନୈତିକ ଆଦି ସକଳ କ୍ଷେତ୍ରରେ ନିଜକୁ ସହଜରେ ସମେଳ ତା ସାମିଲ କରି ପାରେ ନାହିଁ । ସବୁ ସ୍ଥାନରେ ସବୁ ମୁହୂର୍ତ୍ତରେ ସଂଘର୍ଷ ଭିତରେ ହିଁ ସେ ଚାହେଁ ସମାଜକୁ ନିଜ ଆଦର୍ଶରେ, ନିଜ ଦୃଷ୍ଟିରେ ଗଠନ କରିବ— ତା'ର ପରିବର୍ତ୍ତନ ଆଣିବ । ଏହାହିଁ ହେଉଛି ବିପ୍ଳବୀର ପ୍ରବୃତ୍ତି ଓ ବୃତ୍ତି । ରଘୁନାଥଙ୍କ ଠାରେ ଏହାହିଁ ଦେଖା ଦେଇଥିଲା । ମୁଖ୍ୟତଃ – ଏଥିପାଇଁ ହତାଶାରେ ଓ ଦ୍ୱନ୍ଦ୍ୱରେ ପଡ଼ି ସେ ଯେପରି ସାଜିଥିଲେ 'ଜଟାୟୁ'—ଆପଣାର ପକ୍ଷ ଛେଦନ କରି ଆପେ ହିଁ ! ପାରିବାରିକ, ସାମାଜିକ ଆଦି ପରିସ୍ଥିତିରେ (ରାବଣ ରୂପୀ ରାକ୍ଷସୀ ଭାବନା ବା ଦୁଷ୍କର୍ମ ଚ) ଖଡ଼୍‌ଗାଘାତରେ ଲୋଟିଥିଲେ ସାମ୍ୟବାଦ ଭଳି ସୀତାଙ୍କୁ ଅପହରଣ କରି ନେଇଥିବା ଦୁର୍ବୃତ୍ତ ଶୋଷକମାନଙ୍କର ସମୂଳେ ବିନାଶ । ସେଥିପାଇଁ ଆକୁଳ ପ୍ରାଣରେ ଅପେକ୍ଷା କରି ଡ଼ାକିଥିଲେ 'ସମତା'ର ପ୍ରତିଷ୍ଠାତା ରାମଙ୍କୁ ।

ରଘୁନାଥଙ୍କ ରଚନାବଳୀର ବିଶଦ ଆଲୋଚନା ଅଳ୍ପରେ ସମ୍ଭବ ନୁହେଁ । ଠିକେ ଠିକେ ଦେଖିଲେ ଧାରଣା କରିହୁଏ, ଯେ କୌଣସି ପ୍ରଗତିଶୀଳ ଲେଖକର ରଚନା ଭଳି ସେ ସବୁରେ ଥିବ ଦୁଇଟି ଆଭିମୁଖ୍ୟ । ଗୋଟିଏ ଅଦର୍ଶାନୁଗ—ଅନ୍ୟଟି ଭାବଗତ । ସ୍ଥିତି ଅସ୍ଥିତି ସୂଚକ ବ୍ୟକ୍ତିର ହର୍ଷ ବିଷାଦର କୀଡ଼ା ଯେବେ ମୁଖ୍ୟତଃ ଜୀବନ ସଂକ୍ରାନ୍ତ ପ୍ରଶ୍ନ ସମ୍ପର୍କରେ ସଂଶୟାତ୍ମକ । ଏମୁ ଯେଉଁ ଶ୍ରେଣୀରୁ ସଂଜାତ, ସେହି ଶ୍ରେଣୀର ସ୍ୱାଭାବିକ ଦୁର୍ବଳତାର ଦୋଦୁଲ୍ୟମାନତାର ପରିଚାୟକ । ତାଙ୍କ 'ଅଗଷ୍ଟ ୧୫' କବିତାରେ ରାଜନୈତିକ ଦୃଷ୍ଟିର ଚମତ୍କାରିତା, କୃଷକ ଶ୍ରମିକଙ୍କର ସଂଗଠନ ଓ ସଂଘବଦ୍ଧ ଆନ୍ଦୋଳନ

ଲଗି ଉଦାତ୍ତ ଆହ୍ୱାନ, ପୁଞ୍ଜିବାଦର ଧ୍ୱଂସକ ଓ ସପକ୍ଷବାଦୀ ସ୍ୱାଧୀନତାପରର ସ୍ୱଦେଶୀ କାଠ-କର୍ତ୍ତୃଧାରଙ୍କ ପ୍ରତି ବକ୍ରୋକ୍ତି ଇତ୍ୟାଦି ପରବର୍ତ୍ତୀ ରଚନାରେ କିପରି ଏକ ତାତ୍ତ୍ୱିକ ବିଭ୍ରାଟରେ ପଡ଼ିଛି । (ଯାହା ସୃଷ୍ଟିଇଛି), ତାହାକୁ ସେ ଅତିକ୍ରମ କରିବାକୁ ତତ୍ପର ହୋଇଛନ୍ତି ଅବଶ୍ୟ ।

ରଘୁନାଥଙ୍କ କାବ୍ୟକୃତିର ତାତ୍ପର୍ଯ୍ୟ ପ୍ରଧାନତଃ, ସାମ୍ୟ, ଶାନ୍ତି, ସ୍ୱାଧୀନତାର ପଥିକ-ମାନଙ୍କ ଲଗି ଦିକ୍-ନିର୍ଣ୍ଣୟରେ ସାହାଯ୍ୟକାରୀ ହେଉ, ଏହାହିଁ କାମନା କରି ତାଙ୍କର ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧା ଜଣାଉଛି । ଏହି ସଂକ୍ଷିପ୍ତ ଲେଖାରେ ତାଙ୍କ ରଚନାରୁ ଉଦ୍ଧୃତି ଯୋଗେ ଦୃଷ୍ଟାନ୍ତ ଦେଇ ପାରିନାହିଁ । ଠାଏ ଦଠାଆ ବାଧ ହୋଇ ହୁଏତ ଭାବଗତ ପୁନରୁକ୍ତି କରିଛି । ସହୃଦୟମାନଙ୍କର ଉଦାରତାର ଆଶା କରୁଛି । ମୋ ସହିତ ଦ୍ୱିମତ ହେବେ ନାହିଁ — ଯଦି କହେ, ଦେଶର ଗୋଟିଏ ସଂଘର୍ଷମୟ ଯୁଗ-ସନ୍ଧିର ମୁହୂର୍ତ୍ତରେ ଯାହାର ପ୍ରକାଶ – ତାହାର ଦୀପ୍ତି ପ୍ରହେଳିକାମୟୀ, ଦ୍ୱନ୍ଦ୍ୱାତ୍ମିକା ହୋଇ ନାହିଁ କି ?



"ତୋ ପ୍ରଭୁ ନାହାନ୍ତି ଜାଣ ଆକାଶ ସେପଟେ
ସେ ଅଛନ୍ତି ପାଖେ ପାଖେ ଅତ୍ୟନ୍ତ ନିକଟେ ;
ଖୋଲିଦେରେ ଖୋଲିଦେରେ ତୋ ରୁଦ୍ଧ କବାଟ
ଯୁଗ ଯୁଗ ଧରି ଯହିଁ ବାନ୍ଧିଛୁ କମାଟ—
ଦୀର୍ଘଶ୍ୱାସ, ହା' ହୁତାଶ, ତପ୍ତ ଅସନ୍ତୋଷ ॥ "
(ମୂଲୁଣୀ ସ୍ତୁତି)

# ସ୍ମୃତିରୁ ଖିଏ

## ଗିରିଜା ଭୂଷଣ ପଟ୍ଟନାୟକ

୧୯୫୦ ମସିହା

ଜାନୁଆରୀ ମାସ ଶେଷ ସପ୍ତାହ ବା ଫେବୃଆରୀ ମାସର ପ୍ରଥମ ସପ୍ତାହ ହେବ ।

ଭାରତବର୍ଷର ପ୍ରଥମ ସାଧାରଣତନ୍ତ୍ର ଦିବସ ପାଳିତ ହୋଇଥାଏ ସଦ୍ୟ । ଜନ୍ମ ନେଇଥାଏ ନୂଆ ସମ୍ବିଧାନ, ନୂଆ ସାଧାରଣତନ୍ତ୍ର ।

ଝୋଲସାହିର ତାଙ୍କ ଦପ୍ତରକୁ ପଶିଗଲି । ସେ ମୋତେ ହାତଠାରି ବସିବାକୁ କହିଲେ ଏବଂ ତାଜା ଆସିଥିବା 'For a Lasting Peace, for Peoples' Democracy" ର ଏକ ଲେଖାରେ ଗୋଟିଏ ଚୁଟିଟିଆ, ଆଖିକୁ ଦେଖା ନ ଯାଉଥିବା ଓ ନାଲି ଦାଗ ଦିଆ ଯାଇଥିବା ପାରାଗ୍ରାଫକୁ ପଢ଼ିବାକୁ କହିଲେ । ଯେଉଁ ଖବର-କାଗଜଟି ସେ ମୋତେ ପଢ଼ିବାକୁ ଦେଲେ ତାହା କୋମିନୋଫର୍ମର ମୁଖପତ୍ର । ତୃତୀୟ କମ୍ୟୁନିଷ୍ଟ ଇଣ୍ଟରନେସନାଲ ଭାଙ୍ଗିଯିବା ପରେ ଆଉ ତ ଇଣ୍ଟରନେସନାଲ ଗଢ଼ା ଯାଇ ନାହିଁ । ପ୍ରତ୍ୟେକ କମ୍ୟୁନିଷ୍ଟ ପାର୍ଟିକୁ ଆପଣାର ନିଜସ୍ୱ ପନ୍ଥା ବାହାର କରିବା ପାଇଁ, ସମାଜବାଦ ପାଇଁ ଜାତୀୟ ପନ୍ଥା ଗ୍ରହଣ କରିବାକୁ କୁହା ଯାଇଛି । କିନ୍ତୁ କୌଣସି ଏକ କମ୍ୟୁନିଷ୍ଟ ପାର୍ଟି ଭୁଲ ବାଟରେ ପରିଚାଳିତ ହେଲେ ତାକୁ ସଂଶୋଧନ କରିବାର ବାଟ କଣ ? ପ୍ରତ୍ୟେକ କମ୍ୟୁନିଷ୍ଟ ପାର୍ଟିର ଅଭିଜ୍ଞତା ଅନ୍ୟମାନେ ଜାଣିବେ କିପରି ? ସେଥିଯୋଗୁ ଦ୍ୱିତୀୟ ମହାଯୁଦ୍ଧ ପରେ ଇଉରୋପର ସମାଜବାଦୀ ରାଷ୍ଟ୍ରମାନେ ଏକ ସଂସ୍ଥା ଗଠନ କଲେ । ନାଁ ଦେଲେ କୋମିନୋଫର୍ମ । ଏହା କୋମିନୋଟର୍ନ ବା କମ୍ୟୁନିଷ୍ଟ ଇଣ୍ଟରନେସନାଲ ଠାରୁ ଏଥିକରେ ସ୍ୱତନ୍ତ୍ର ଥିଲା ଯେ ଏହାର କର୍ତ୍ତୃତ୍ୱକୁ ମାନିବା ପାଇଁ କୌଣସି ସର୍ତ୍ତ ବା ମୋହର ନ ଥିଲା । ଅଠର ପୃଷ୍ଠାର କାଗଜ, ଆଠ ପଏଣ୍ଟ ଟାଇପ୍‌ରେ ଛପା । ଟିକିଏ ଆଖି ଖରାପ ଥିଲେ ପଢ଼ିବା କଠିନ । ଆଗରୁ କହିଛି କର୍ତ୍ତୃତ୍ୱ ନାହିଁ । ତେଣୁ ଭାଷାଟା ଅଥରଟେଟିଭ ନୁହେଁ ।

ପାରାଗ୍ରାଫଟି ପଢ଼ିଲି । ସେ କହିଲେ ଦେଖ, ଗଗନ ଦା' (ଗଗନ ବିହାରୀ ଜେନା, ତତ୍‌କାଳୀନ କଟକ ସିଟି ପାର୍ଟିର ସେକ୍ରେଟେରୀ)କୁ ଡ଼ାକ । ସେଣ୍ଟର ପାର୍ଟିକୁ ଲେଖ । ରାମବାବୁ (ରାମକୃଷ୍ଣ ପତି) ଗୁରୁଚରଣ ବାବୁ (ଗୁରୁଚରଣ ପଟ୍ଟନାୟକ)ଙ୍କୁ ଲେଖ । ସେତେବେଳକୁ ସେମାନେ ଅଣ୍ଡର୍ ଗ୍ରାଉଣ୍ଡ୍‌ରେ ।

ଏ କଥା କହୁଥିଲେ ଶ୍ରୀ ରଘୁନାଥ ଦାସ, ଆଡ୍‌ଭୋକେଟ ।

ତାଙ୍କୁ ମୁଁ ଜାଣିଥିଲି ମାର୍କ୍‌ସିଷ୍ଟ ଭାବରେ । ଆମ ପାର୍ଟି ଓକିଲ ଭାବରେ ସେତେବେଳକୁ ଥାଆନ୍ତି ଦୁଇଜଣ । ବିଶ୍ୱନାଥ ପଶାୟତ ଓ ରଘୁନାଥ ଦାସ । ହାଇକୋର୍ଟରେ ଆମର କେତେକ କେଶରେ ପୀତାମ୍ବର ମିଶ୍ର, ହରିହର ମହାପାତ୍ର, ରାଜକିଶୋର ଦାସ ଲଢ଼ିଥିବାର ଶୁଣିଛୁ । ରଘୁନାଥବାବୁଙ୍କୁ ମୁଁ ଥିଓରିଟିସିଆନ୍ ଭାବରେ କେବେହେଲେ ଗଣନା କରିନାହିଁ । ତଥାପି ସଭା ଡ଼କାହେଲା ।

ଫେବୃଆରୀ ମାସ ୨୦ ତାରିଖର ପୂର୍ବ ଘଟଣା ନିଶ୍ଚୟ । କାରଣ ୨୦ ତାରିଖ ବେଳକୁ ଅଧ୍ୟାପକ କୃଷ୍ଣ ପଟ୍ଟନାୟକ ଓ ମୁଁ ପଳାତକ ହୋଇ ସାରିଲୁଣି । ସଭାରେ ରଘୁନାଥବାବୁ କହିଲେ, କହିଲେ ସ୍ପଷ୍ଟ ଭାବରେ—କୋମିନ୍‌ଫର୍ମ ବାଃ ଟିଃ ରଣଦିଭେଙ୍କର ଲାଇନ୍ ଗ୍ରହଣ କରୁନାହିଁ । ଭାରତର ଜାତୀୟ ବୁର୍ଜୁଆଙ୍କୁ ମଧ୍ୟ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ସାମ୍ମୁଖରେ ନେବା ପାଇଁ ଭାରତୀୟ କମ୍ୟୁନିଷ୍ଟମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ ଦିଆ ଯାଇଛି । ପାର୍ଟି ଲାଇନ ବଦଳିବା ପାଇଁ ବାଧ୍ୟ । ଭାରତ ଏକ ସାଧାରଣତନ୍ତ୍ରରେ ପରିଣତ ହୋଇଛି । ଏକ ନୂଆ ସମ୍ବିଧାନ ପ୍ରଣୟନ ହୋଇଛି । ସମସ୍ତ ଦୁର୍ବଳତା ସତ୍ତ୍ୱେ ଏହା ହେଉଛି ଏକ ଅଗ୍ରଗତି । ଆମକୁ ଏହା ସ୍ୱୀକାର କରିବାକୁ ପଡ଼ିବ ଏବଂ ସମ୍ବିଧାନ ତଥା ସାଧାରଣତନ୍ତ୍ରର ଯେଉଁ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ ହୋଇଛି, ତା'ର ସୁଯୋଗ ନେବାକୁ ହେବ ।

ଆଡ୍‌ଭୋକେଟ ରଘୁନାଥ ଦାସ କହି ଚାଲିଥିଲେ । ଓକିଲତି ଅଭ୍ୟାସ । ପଏଣ୍ଟ ବାଇ ପଏଣ୍ଟ, ସେକ୍‌ସନ ବାଇ ସେକ୍‌ସନ ।

ସେ ଦିନ କଥାଟାର ଗୁରୁତ୍ୱ ଓଡ଼ିଶା ପ୍ରଦେଶରେ କେବଳ ନୁହେଁ ସାରା ଭାରତବର୍ଷରେ କେତେ ଜଣ ବୁଝି ପାରିଥିଲେ କି ନାହିଁ ଜାଣେନା । କିନ୍ତୁ ପୁରା ଦୁଇଟି ବର୍ଷ କଟିଗଲା ପାର୍ଟିକୁ ସେଇ ପାରାଗ୍ରାଫଟିର ତତ୍ତ୍ୱକୁ କାର୍ଯ୍ୟକାରୀ କରିବା ପାଇଁ । ଏଥିପାଇଁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧିମାନଙ୍କୁ ମସ୍କୋ ଯିବାକୁ ପଡ଼ିଥିଲା ଷ୍ଟାଲିନଙ୍କ ସହ କଥାବାର୍ତ୍ତା ହେବା ପାଇଁ । ବାଃ ଟିଃ ରଣଦିଭେଙ୍କ ଠାରୁ ରାଜେଶ୍ୱର ରାଓ (ତତ୍କାଳୀନ ହିଟ୍ ଏଣ୍ଡ୍ ରନ୍ ଇନ୍ ଦି ସିଟିଜ, ଏଣ୍ଡ୍ ଗରିଲା ଷ୍ଟ୍ରଗଲ୍ ଇନ୍ ଦି ଭିଲେଜେସ୍ ଲାଇନ)ଙ୍କ ପର୍ଯ୍ୟନ୍ତ ଗଡ଼ାଣି ଉଠାଣି ଭିତର ଦେଇ ଯିବାକୁ ପଡ଼ିଲା କମ୍ୟୁନିଷ୍ଟ ପାର୍ଟିକୁ ୧୯୫୦ ଜାନୁଆରୀ ମାସରୁ ୧୯୫୧ ର ଶେଷ ଭାଗ ପର୍ଯ୍ୟନ୍ତ ।

ଯେଉଁ କେତେଜଣ ଏଇ କଥାଟିକୁ ପ୍ରଥମରୁ ଧରି ପାରିଥିଲେ ସେମାନଙ୍କ ଭିତରେ ଥିଲେ, ରଘୁନାଥ ଦାସ, ଓକିଲ । ବର୍ତ୍ତମାନ ମାର୍କ୍‌ସ୍‌ବାଦୀ ଓକିଲମାନେ ତାତ୍ତ୍ୱିକ ବହି କେତେ ପଢ଼ୁଛନ୍ତି ବା ପଢ଼ିବା ପାଇଁ ସମୟ ପାଉଛନ୍ତି, ସେ ଏକ ସ୍ୱତନ୍ତ୍ର କଥା । କେବଳ

ୟା କଥାକୁ ତା' ଆଗରେ, ତା କଥାକୁ ୟା ଆଗରେ କହି ଆପଣାର ଅରିଜିନାଲିଟି ବା ମୌଳିକତା ପ୍ରମାଣ କରିବା ପାଇଁ ଆଜିର ଉଦ୍ୟମ ସେତେବେଳେ ସେମାନଙ୍କୁ ଛୁଇଁ ନଥିଲା।

ଆଜିର ଆଡ୍‌ଭୋକେଟ୍ ଜେନେରାଲ ଶ୍ରୀ ଗଙ୍ଗାଧର ରଥ ସେତେବେଳେ 'ସଂକେତ' ନାମରେ ଏକ ପତ୍ରିକା ପ୍ରକାଶ କରୁ ଥାଆନ୍ତି। ସେଇ ପତ୍ରିକାରେ ଓଡ଼ିଶାର ଲବ୍‌ଧପ୍ରତିଷ୍ଠ କବି ଶ୍ରୀ ସଚ୍ଚି ରାଉତରାୟ ଏକ କବିତା ଲେଖିଥିଲେ। ପୂରା କବିତାଟି ମନେ ନାହିଁ। ତେବେ ସେ କବିତାରେ ଏଇପରି ଥିଲା—

''କିଏ ଆସିବ, ଜଣା ନାହିଁ,
ଜଣା ବା ଅଜଣା,
ତଥାପି ଦିନ ଗଣେ ନିର୍ଜନ କୁଟୀରେ,
ମନେ ମନେ ଖୋଜି ପାଏ,
ସେମାନଙ୍କ ହଜିଲା ଠିକଣା''

ଏହା ସେତେବେଳେ ଚୀନ୍ ବିପ୍ଳବକୁ ଲକ୍ଷ୍ୟ କରି ଲେଖା ଯାଇଥିଲା। ସଙ୍ଗେ ସଙ୍ଗେ ଠିକ୍ ପରବର୍ତ୍ତୀ ସଂଖ୍ୟା 'ସଂକେତ'ରେ ଶ୍ରୀ ରଘୁନାଥ ଦାସ ତାର ଉତ୍ତରରେ ଲେଖିଲେ—

''ଜାଣେ ଜାଣେ ସେମାନେ ଆସିବେ,
ଜୟଧ୍ୱନି ଯାର ଶୁଭେ ଲକ୍ଷ କୋଟି ଜିଭେ''

କବି ରଘୁନାଥ ଦାସ। ସେ କିନ୍ତୁ ସ୍ପଷ୍ଟ। ଯେଉଁମାନେ ଆସିବେ ସେମାନଙ୍କୁ ସେ ଜାଣନ୍ତି। ସେମାନଙ୍କର ପଦଧ୍ୱନି ସ୍ପଷ୍ଟ। ସେମାନଙ୍କର ଜୟଜୟକାର ନାଦ ଧରିତ୍ରୀରେ। ତାହେଲେ 'ବାଜି ରାଉତ'ର ଲେଖକ ସଚ୍ଚି ରାଉତରାୟ କାହିଁକି ଲେଖିଲେ — ''କିଏ ଆସିବ ଜଣା ନାହିଁ, ଜଣା ବା ଅଜଣା'' ? ଏହା କବି ରଘୁନାଥ ଦାସଙ୍କ ପାଇଁ ଅସହ୍ୟ।

ରଘୁନାଥ ଦାସ, ଓକିଲ। ଓକିଲ ସର୍ବହରାଙ୍କର, ଓକିଲ ବିପ୍ଳବୀଙ୍କର। ଆଜି ବି ହେଇଭଳି ଅନେକ ଓକିଲ ଅଛନ୍ତି। ସେମାନେ ସର୍ବହରାମାନଙ୍କ ପାଇଁ ଶନିବାର ସନ୍ଧ୍ୟାରେ, ନଚେତ୍ ରବିବାର ଦିନ ସଭା କରନ୍ତି। ନିଜେ ଗାଡ଼ିରେ ଯାଇ ଅନ୍ୟମାନଙ୍କୁ ଚଲାଇ ଚଲାଇ ନିଅନ୍ତି ଶୋଭାଯାତ୍ରାରେ। ସମସ୍ତଙ୍କୁ ଚନ୍ଦା ଦିଅନ୍ତି। ବଡ଼ ବଡ଼ ଠିକାଦାର

ମାନଙ୍କର ଓକିଲାତି କରନ୍ତି କଲିକତା, ବମ୍ବେ, ଦିଲ୍ଲୀର ବିଳାସପୂର୍ଣ୍ଣ ହୋଟେଲମାନଙ୍କରେ । ଆଜି କେହି କେହି ପଇସା ପାଇବା ସତ୍ତ୍ୱେ ଭାଗଚାଷୀର ମୋକଦ୍ଦମା ଖାରଜ ହୁଏ, ଶ୍ରମିକର ପ୍ରଭିଡେଣ୍ଟ ଫଣ୍ଡ୍ ମିଳେ ନା, ସଂଗ୍ରାମୀ ଚାଷୀ ବା ମୂଲିଆ ଜେଲଖାନାକୁ ଯାଆନ୍ତି ଫିସ୍ ଟଙ୍କା ଦେଇ ସାରିବା ପରେ ବି । କାରଣ ସର୍ବହରାର ଓକିଲ ପାଇଁ କଣ୍ଟ୍ରାକ୍ଟରର ଟାଣିଖ ମନେ ରହୁଥାଏ,, ଚାଷୀ ମୂଲିଆର ତାରିଖ ପାଶୋର ହୋଇଯାଏ ।

ସେକାଳର ସର୍ବହରାର ଓକିଲମାନେ ଏଭଳି ନ ଥିଲେ । ମୋର ମନେ ପଡୁଛି ପୂର୍ଣ୍ଣ ମହାପାତ୍ର (ଢେଙ୍କାନାଳ)ଙ୍କ କଥା । ସ୍ଥାନପିଲଟିଏ ଗୀତବହି ବିକୁଥିଲା ଷ୍ଟେସନରେ, କଟକ ରେଲବାଇ ଷ୍ଟେସନରେ । ଗାଉଥିଲା .....

"କି ହେବ ଏ ସ୍ୱାଧୀନ ଦେଶ,
ଯଦି ମୋର ନ ପୁରେ ପେଟ
ସଢ଼ି ସଢ଼ି ଆମେ ମଲୁଣି ମୂଲିଆ,
ମୋ ଭାଇ ଶୋଇଛୁ ଫେସନ ଖଟ..."

× × ×

"ଗୃହଆଡ଼େ ଖାଲି କଳାପୋଡା ରାଜ,
ଜଳେ ମୋର ଦେହ, ଜଳେ ମୋ ପେଟ ।"

ମାଧବ ସିଂହର ଲେଖା ବୋଧହୁଏ । ଗୀତଟା ପୁରା ମନେ ପଡୁନାହିଁ । ପୂର୍ଣ୍ଣ ଗିରଫ ହେଲେ ରେଲବାଇ ଷ୍ଟେସନରେ । ସାକ୍ଷୀ ଟି:ଟି: ଆଇ: ଶ୍ରୀ ଆଗୃର୍ଯ୍ୟ । ପ୍ରସିଦ୍ଧ ଆଡ଼ଭୋକେଟ ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ବଡ଼ପୁଅ ! ଜେରା କରୁଥାନ୍ତି ରଘୁନାଥ ଦାସ । ଗୋଟିଏ 'କଳା ପୋଡା' ଶବ୍ଦ ଉପରେ ଚାଲିଲା ଦେଢ଼ ଘନ୍ଟ ଜେରା । ଆଗୃର୍ଯ୍ୟ ହରି ମୁଣ୍ଡ ଆଣ୍ଠୁ ଏ । ତଥାପି ରଘୁବାବୁ ନଛୋଡ଼ବନ୍ଧା । "ପ୍ରସିଦ୍ଧ ଆଡ଼ଭୋକେଟ ଚନ୍ଦ୍ରମଣି ବାବୁଙ୍କ ପୁଅ ତମେ । ତମେ ଇମିତ ବୋକା କେବେଠାରୁ ହେଲ ?" ପୂର୍ଣ୍ଣ ମହାପାତ୍ର ନିର୍ଦ୍ଦୋଷରେ ଖଲାସ । ରଘୁବାବୁ ତାଙ୍କୁ ଖୁଆଇ ପିଆଇ ରିକ୍ସା ଭଡ଼ା ଦେଇ ବିଦା କଲେ ଷ୍ଟେସନ ବଜାରକୁ ।

ମୁଁ ନିଜେ ଗିରଫ ହେଲି । ପ୍ରଥମେ ୧୯୭ଦଫାରେ । ରଘୁବାବୁ ଓକିଲ । କେହି କହୁଥିଲେ କି କୋର୍ଟ କହୁଥିଲା ମନେ ପଡ଼ୁନି । ୧୦୭ରେ ତ ଗୋଟାଏ undertaking ଦେଲେ ଚଳିବ । ରଘୁବାବୁ ଫଁକିନା ଜୋରରେ ଉଠିଲେ—"ଦୋଷୀ ଯଦି ଜେଲକୁ ଯିବ, ନିର୍ଦ୍ଦୋଷ ଯଦି ଘରକୁ ଯିବ, ପୁଣି undertaking କଣ ?"

ରଘୁବାବୁ ଓ୍କଳ ।

ରଘୁବାବୁ ଗମ୍ଭୀର ପ୍ରକୃତିର ଲୋକ । କିନ୍ତୁ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଭିତରେ ବେଶ୍ ହସ ଖୁସି କରି ପାରନ୍ତି । ତାସ ବି ଖେଳି ପାରନ୍ତି ଦିନ ସାରା । କିନ୍ତୁ କ୍ରୋଧୀ ମଣିଷ । ସାମାନ୍ୟ ତାସ୍ ଖେଳରୁ ମଧ୍ୟ ସେ ରାଗି ଯାଇ ସବୁ ସମ୍ପର୍କ ତୁଟାଇ ଦେଇ ପାରନ୍ତି ।

ରଘୁବାବୁ କମ୍ୟୁନିଷ୍ଟ ଆନ୍ଦୋଳନରୁ ଯେତେବେଳେ ସୋସିଆଲିଷ୍ଟ ୟୁନିଟି ସେଣ୍ଟରକୁ ଖସି ଗଲେ, ଆଉ କେବେ ପୁଣି ସେଥିରୁ ଚାଲିଗଲେ Supramental Phaceକୁ, ସେ କଥା ମୋର ହେଉ ହେଉ ନାହିଁ । କାରଣ ଦୀର୍ଘ ସମସ୍ତ କାରାବାସ, ଆତ୍ମଗୋପନ କାଳ ଭିତରେ ଏହି ସବୁ ଘଟଣାକୁ ମନେ ପକାଇ ହେଉ ନାହିଁ । ଏଇଟା ମଧ୍ୟ ସତ୍ୟ ଯେ ରଘୁନାଥ ବାବୁଙ୍କ ସହିତ ଉଭୟ ବ୍ୟକ୍ତିଗତ ଏବଂ ସାମୂହିକ ସମ୍ପର୍କ ଧୀରେ ଧୀରେ ଦୂରରୁ ଦୂରତର ହେବାକୁ ଲାଗିଥିଲା ।

ରଘୁନାଥ ଦାସ, ଲେଖକ ।

ଚେକୋସ୍ଲୋଭାକିଆର ପ୍ରତିନିଧି ଦଳକୁ ଯେତେବେଳେ ମୁଁ କହିଲି ଯେ ୧୯୪୮ ମସିହା ବେଳକୁ Julius Fuchic ଙ୍କର ପ୍ରସିଦ୍ଧ ବହି Notes from the Gallowsର ଓଡ଼ିଆ ଅନୁବାଦ 'ଫାଶୀଆସାମୀର ଶେଷ ଚିଠି' ପ୍ରକାଶିତ ହୋଇ ସାରିଥିଲା, ସେମାନେ ଯେପରି ଏହା ବିଶ୍ୱାସ କଲେ ନାହିଁ, ଠିକ୍ ସେଇପରି ବିଶ୍ୱାସ କଲେ ନାହିଁ ପୋଲଣ୍ଡ ପ୍ରତିନିଧିମାନେ ଯେ ଓ୍ୟାଦା ଓ୍ୟାଣ୍ଡେଲି ଓ୍ୟାସ୍କାଙ୍କର Just Loveର ଓଡ଼ିଆ ଅନୁବାଦ 'ପ୍ରେମର' ନକଦ ୧୯୪୮ ମସିହା ବେଳକୁ ପ୍ରକାଶିତ ହୋଇ ସାରିଛି । ମୋ ପାଖରେ ଥିବା ଏହି ବହି ଦୁଇଟିର ଏକମାତ୍ର କପିକୁ ୧୯୬୧ ମସିହାବେଳେ ପଠାଇବାକୁ ବାଧ୍ୟ ହେଲି ଚେକୋସ୍ଲୋଭାକିଆ ଓ ପୋଲଣ୍ଡର କର୍ତ୍ତୃପକ୍ଷଙ୍କୁ । ସେମାନେ ଆଶ୍ଚର୍ଯ୍ୟ ହେଲେ । ଭାରତବର୍ଷର ବହୁ ଭାଷାରେ ଅନୁବାଦ ହେବା ପୂର୍ବରୁ ଯେ ଏହା ଓଡ଼ିଆରେ ଅନୁବାଦ ହୋଇ ପ୍ରକାଶିତ ହୋଇଥିଲା, ଏହା ଆମ ପାଇଁ ଗର୍ବର କଥା ।

ବହି ଦୁଇଟିର ଅନୁବାଦକ ଓ ପ୍ରକାଶକ ଶ୍ରୀ ରଘୁନାଥ ଦାସ ।

ଏଇଠି ଉଲ୍ଲେଖ ମଧ୍ୟ କରାଯାଇପାରେ ଯେ ଶ୍ରୀ ସୁନନ୍ଦ କର ଗୋର୍କିଙ୍କର 'ମା' ଓ ପୋଲଣ୍ଡର ପାର୍ଟିଜାନ ସୈନ୍ୟମାନଙ୍କର ସଙ୍ଗୀତକୁ ଓଡ଼ିଆରେ ଅନୁବାଦ କରି ଆମକୁ ଗର୍ବିତ କରି ଯାଇଛନ୍ତି ।

"ଶୁଣାଯାଏ ମାଆ ଉତ୍କଳୀର କ୍ରନ୍ଦନ,
ସହିବୁନି ଆମେ ଏ ହୀନ ମରଣ,
ତେବେ ଚାଲ ସଇନିକ, ଘେରି ସୀମଦିକ୍
ବୁନିଆର ସ୍ଥଳ ଜଳ ବାୟୁ ନଭତଳ
ମାନବ ମୁକ୍ତିର ଲକ୍ଷ୍ୟ ଅଛି ଠିକ୍,
କଦମେ କଦମେ କର ତୃପ୍ତ ଧରାତଳ ।

ପୋଲଣ୍ଡ ପାର୍ଟିଜାନ ସୈନ୍ୟ ବାହିନୀର ଏଇ ସଂଗୀତ ଯେପରି ପ୍ରେରଣା ଦେଇଛି ଜୀବନରେ, ଠିକ୍ ସେଇପରି ..

"ଇଉରୋପ ଆକାଶରେ ନଇଁ ଆସିଥିଲା ଘନ ଅନ୍ଧକାର । ଭବିଷ୍ୟତ ବୁଡ଼ି ରହିଥିଲା ସେଇ ଭିତରେ । ବାଟ ସହଜ ନଥିଲା । ଅନେକ ବୁଦ୍ଧିଜୀବୀ ବାଟ ହରାଉଥିଲେ । ଦେହର ଚମଡ଼ାକୁ ସେମାନେ ରକ୍ଷା କରିଥିଲେ, କିନ୍ତୁ ବିକି ଦେଇଥିଲେ ପ୍ରାଣକୁ । ଆଉ ଯେଉଁମାନେ ତାହା କରିନଥିଲେ ସେମାନଙ୍କ ଭିତରେ ଥିଲେ ଜୁଲିଅସ୍ ଫ୍ୟୁଚିକ୍"...

ଏହା ପ୍ରେରଣା ଦେଇଛି, ଜୀବନର ବହୁ ସମସ୍ୟାରେ ବହୁ ସହଯୋଗୀଙ୍କୁ ।

ତାପରେ ରଘୁନାଥ ବାବୁଙ୍କୁ ଦେଖିଲା ବେଳକୁ ସମସ୍ତ ଅତିକ୍ରାନ୍ତ ହୋଇଛି । ବୟସ ଗ୍ରାସ କରିଛି ସମସ୍ତଙ୍କୁ । ରଘୁବାବୁ ଆସନ୍ତି ସଭାକୁ । ଗମ୍ଭୀର ମୁହଁ କରି ବସନ୍ତି । କେବେ କେବେ ଧାରେ ହସ ପଥର ଦେହରେ ବିଜୁଳି ପରି ଖେଳି ଉଭାଇଯାଏ । ଦୂରତ୍ୱ ବଢ଼ିଯାଏ । ସେ ଆସନ୍ତି, ବସନ୍ତି, ଶୁଣନ୍ତି ଆଉ ଚାଲି ଯାଆନ୍ତି । ଅନେକ କଥା ଉକୁଟେ ଆଉ ପରକ୍ଷଣରେ ଲିଭିଯାଏ ।

ହଠାତ୍ ଦିନେ ଖବର ପାଇଲି ଯେ ସେ ଆଉ ନାହାନ୍ତି । ସମସ୍ତେ ଦିନେ ଯିବେ ତ ନିଶ୍ଚୟ । ଜନ୍ମିଲେ ମରଣ ସତ୍ୟ, ନୁହେଁ ଖଣ୍ଡିବାର । କିନ୍ତୁ ହଠାତ୍ ରଘୁବାବୁ ଚଲେ ଗଲେ । କାହିଁକି ? ତା'ର ଉତ୍ତର କିଏ ଦେବ ? ସେ ତ ଏକ ଅନନ୍ତ ପ୍ରଶ୍ନ । କାହିଁକି ସେ ଆଗେ ଗଲେ, ମୁଁ କାହିଁକି ପରେ ଯିବି ? ଏ ପ୍ରଶ୍ନର ଉତ୍ତର ତ କେହି ଦେଇ ପାରି ନାହାନ୍ତି ।

"ମୁଁ ଜରାର ଅଧୀନ । ମୁଁ ଜରାକୁ ରୋଧ କରି ପାରେନା ।
ମୁଁ ରୋଗର ଅଧୀନ । ମୁଁ ରୋଗକୁ ଜୟ କରି ପାରେନା ।
ମୁଁ ମୃତ୍ୟୁର ଅଧୀନ । ମୁଁ ମୃତ୍ୟୁକୁ ରୋଧ କରି ପାରେନା ।

ମୋତେ ହନେନା ହନେ ସକଳ ପ୍ରିୟ ଜନଙ୍କଠାରୁ ବିଦାୟ ନେଇ ଫିବାକୁ ହେବ ।"

ଏଇ ଭବିଷ୍ୟବାଣୀ ହଠାତ୍ ମନେ ପଡ଼ିଲା ରଘୁବାବୁଙ୍କର ମୃତ୍ୟୁ ସମ୍ବାଦ ପାଇ । ତାଙ୍କର କାମ କଣ ସତରେ ସରି ଥିଲା ? କିନ୍ତୁ କାମ କଣ ସତରେ ସରେ ? ସରେ ନାହିଁ ବୋଲି ତ ମୃତ୍ୟୁ ଏତେ କଷ୍ଟକର, ଅସହ୍ୟ ।

କେବଳ ମଦର ଟେରେସା କହନ୍ତି ଯେ ମୃତ୍ୟୁ ହେଉଛି ସୁନ୍ଦର, ମୃତ୍ୟୁ ହେଉଛି ଘର ବାହୁଡ଼ା ଭଳି । କିନ୍ତୁ ସମସ୍ତେ ମଦର ଟେରେସା ନୁହନ୍ତି ।

ରଘୁବାବୁ ନାହାନ୍ତି । କେହି ରହିବେ ନାହିଁ । ଲେଖକ, ପାଠକ କେହି ରହିବେ ନାହିଁ । କିନ୍ତୁ, ମୃତ୍ୟୁ ପରେ ଆମେ ଦେଖୁ ମଣିଷର ସେଇ ଦିଗକୁ ଯାହା ଭଲ ଥିଲା, ସୁନ୍ଦର ଥିଲା ।

ରଘୁବାବୁ ମଣିଷ ଥିଲେ ।
ରଘୁବାବୁ ଦେବତା ନ ଥିଲେ ।

ମଣିଷର ଭଲ ଖରାପ ସବୁ ଗୁଣ ତାଙ୍କ ଭିତରେ ଥିଲା । ଆଉ ସେଇ ଯୋଗୁଁ ସେ ମଣିଷ ଥିଲେ ଏବଂ ତାଙ୍କୁ ଆମେ ହେଜୁଛୁ ଆଜି ।

କିନ୍ତୁ ମଣିଷ ଭିତରେ ଯାହା ଭଲ ଥିଲା, ଯାହା ଛୁଇଁ ଥିଲା ମୋତେ ଏବଂ ଅନ୍ୟମାନଙ୍କୁ ମୁଁ ତାହାହିଁ ଲିପିବଦ୍ଧ କରି ଯାଉଛି ସ୍ମୃତିକୁ ରୋମନ୍ଥନ କରି । କାରଣ ମହାକାଳ ବହୁ ଘଟଣାକୁ ନିଜ ହାତରେ ପୋଛି ଦେଇ ସାରିଲଣି ।

ବାଜେ କଥା ଲେଖି କିଛି ଲାଭ ନାହିଁ, ସେମୁଡ଼ିକ ତ୍ରେନ ଇନସପେକ୍ଟରର କାମ । ରଘୁବାବୁଙ୍କ ସାଙ୍ଗରେ ପରିଚୟ ଖୁବ୍ ନିବିଡ଼ ନଥିଲା ଖୁବ୍ ଦୂର ବି ନଥିଲା । କିଛି ସମୟ ପାଇଁ ସେ କୌଣସି ଦୃଷ୍ଟିରୁ ଆପଣାର ଥିଲେ । ସେଇ ଭିତରର ସ୍ମୃତିକୁ ଉଖାରି ଉଖାରି ଲେଖିଲା ବେଳେ ସେ ନିଜେ ଆସି ଯାଉଛନ୍ତି କାଗଜ ଉପରକୁ, କଲମ ମୁନକୁ । ଓଡ଼ିଆ, ଲେଖକ, ସାମ୍ୟବାଦୀ ରଘୁନାଥ ଦାସ । ହଠାତ୍ କଲମ ବନ୍ଦ ହୋଇ ଯାଉଛି । କଲମ ମୁନକୁ ରଚନା ଯେପରି ରୁନ୍ଧିଦେବ ସେଇପରି ମନେ ହେଉଛି ।

କେତେ କାହାଣୀ, କେତେ ଲୋକ । ସବୁ ଲେଖି ହେବ ନାହିଁ, ଲେଖିବା ସମ୍ଭବ ମଧ୍ୟ ନୁହେଁ । ଅନେକ ଲୋକ ଗଲେଣି, ଅନେକ ଲୋକ ଅଦ୍ୟାପି ଅଛନ୍ତି ।

ରଘୁବାବୁ ସାମ୍ୟବାଦୀ ଆନ୍ଦୋଳନ ଭିତରକୁ କେବେ ଆସିଲେ ମୋର ତାହା ମନେ ନାହିଁ । କିନ୍ତୁ କାହିଁକି ଗଲେ ତାହା ଲେଖି ହେବ ନାହିଁ । ସାମ୍ୟବାଦୀ ଆନ୍ଦୋଳନ ଜୀବନର ଏକ ନୂତନ ମୂଲ୍ୟବୋଧର ପ୍ରତୀକ । ତାହା ନ ଥିଲେ ସାମ୍ୟବାଦୀ ଆନ୍ଦୋଳନରେ ରହିବା ସମ୍ଭବ ନୁହେଁ । ଆଉ ଯେଉଁମାନେ ସେନ୍‌ସିଟିଭ୍ ସେମାନେ ବେଶୀ ଆଘାତ ପାଇବାକୁ ବାଧ୍ୟ । ଲେନିନ୍ ସେଇ ଯୋଗୁଁ ପାର୍ଟିର କ୍ୟାଡ଼ରମାନଙ୍କର ବ୍ୟକ୍ତିଗତ ସମସ୍ୟା ପ୍ରତି ଦୃଷ୍ଟି ଦେଉଥିଲେ, କିନ୍ତୁ ଭାରତବର୍ଷରେ ପି: ସି: ଯୋଶୀ ବା ଭଗବତୀ ପାଣିଗ୍ରାହୀମାନେ ତ ସବୁବେଳେ ମିଳିବେ ନାହିଁ । ଆଉ ମିଳିବେ ନାହିଁ ବୋଲି ତ ଅନେକ କର୍ମୀ ଗୃଲପିବେ ଦୂରକୁ । ସେ ବିଷୟରେ ଆଲୋଚନା କରି ଲାଭ ନାହିଁ । ସେଥିପାଇଁ ସ୍ୱତନ୍ତ୍ର ନିବନ୍ଧ ଆବଶ୍ୟକ । କିନ୍ତୁ ରଘୁନାଥ ଦାସ ଯେବେ ଯେଉଁ ବ୍ୟକ୍ତିଗତ ଆଘାତ ପାଇ ଆପଣାକୁ ସାମ୍ୟବାଦୀ ଆନ୍ଦୋଳନରୁ ନିଜକୁ ଅପସାରିତ କରି ନେଲେ ତାହାର ପୁନରାବୃତ୍ତି ନ ହେଲେ ହିଁ ଭଲ । ଏହା କେବଳ ସାମ୍ୟବାଦୀ ଆନ୍ଦୋଳନ ପାଇଁ ପ୍ରଯୁଜ୍ୟ ନୁହେଁ, ସମଗ୍ର ସମାଜ ପ୍ରତି ପ୍ରଯୁଜ୍ୟ ।

□ □

# ଏକ ସଫଳ ବ୍ୟକ୍ତିତ୍ୱ

## ଶ୍ରୀ ବିନୋଦ ମହାନ୍ତି

କବିବର ରାଧାନାଥ ଲେଖିଥିଲେ — "କେହି ରହିନାହିଁ ରହିବ ନାହିଁଟି ଭବରଙ୍ଗଭୂମି ତଳେ, ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ"। ଏ ଉକ୍ତିର ସତ୍ୟତା ନିଶ୍ଚୟ ରହିଛି । କିନ୍ତୁ ସମାଜଶାସ୍ତ୍ର ଭାଷାରେ ଏହାର ଅନ୍ୟ ଅର୍ଥ ହୋଇଛି ଅଭିନୟଟି କାହାର କିପରି ବା କେଉଁ ପ୍ରକାରର । ଯଦି ଅଭିନୟଟି ବ୍ୟକ୍ତିକୁ ସାମାଜିକ ଭାବରେ ପ୍ରଭାବିତ କରେ ଓ ସେହି ଅନୁରୂପ ବିକଶିତ କରାଏ ତେବେ ସେ ଅଭିନୟର ମହତ୍ତ୍ୱ ଥାଏ ଏବଂ ସେ ଅଭିନୟ ସମାଜ ବିଜ୍ଞାନରେ ସ୍ଥାନପାଏ । ସେ କ୍ଷେତ୍ରରେ ବ୍ୟକ୍ତି ଅପେକ୍ଷା ବ୍ୟକ୍ତିତ୍ୱ ମୁଖ୍ୟ ସ୍ଥାନ ଅଧିକାର କରେ ।

ମୋର ମନେହୁଏ ସ୍ୱର୍ଗତଃ ରଘୁନାଥ ଦାସ ଜଣେ ସେହିପରି ଏକ ମହନୀୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । କଟକ ସହରରେ ଖଣ୍ଡିଏ ପ୍ରାସାଦର ମାଲିକ ବା ଜଣେ ବିଶିଷ୍ଟ ଆଇନଜ୍ଞ ଭାବରେ ମୁଁ ତାଙ୍କୁ ଯେତେ ପରିମାଣରେ ଗ୍ରହଣ କରିନାହିଁ, ତା' ଠାରୁ ଅଧିକ ପରିମାଣରେ ଜଣେ ସଫଳ ବ୍ୟକ୍ତିତ୍ୱର ଅଧିକାରୀ ଭାବରେ ମାନି ନେଇଛି ।

ଏକଦା ପ୍ରାସାଦର ବାସିନ୍ଦା ହୋଇ ନଥିବାବେଳେ ମୁଁ ତାଙ୍କ ସହ ଆଲୋଚନା କରି ଯେଉଁ ତର୍କ ବା ନିଷ୍ପତ୍ତି ମାନବବାଦ ସମ୍ପର୍କରେ ପାଇଛି, ସେହିପରି ନିଷ୍ପତ୍ତି ଓ ତର୍କ ମଧ୍ୟ ସେ ପ୍ରାସାଦର ଅଧିକାରୀ ହେଲାବେଳେ ପାଇଛି । ଆନ୍ଧ୍ରପ୍ରଦେଶରୁ କଦଳୀ, ଅଣ୍ଡା ଓ ଫଳ ଆସି କଟକରେ ବିକ୍ରି ହେଉଥିବାରୁ ତାର ବିକଳ୍ପ ବ୍ୟବସ୍ଥା, ଅର୍ଥାତ୍ ତାହାର ଉତ୍ପାଦନ ଏଠାରେ କରାଯିବା ସମ୍ପର୍କରେ ସିଏ ଯେପରି ଉଦ୍‌ବେଗ ପ୍ରକାଶ କରିଛନ୍ତି, ଠିକ୍ ସେହିପରି ଉଦ୍‌ବେଗ ପ୍ରକାଶ କରିଛନ୍ତି ଭାରତବର୍ଷରେ ଜରୁରୀ ପରିସ୍ଥିତିର ଘୋଷଣା ଯୋଗୁଁ । ସବୁଗୁଡ଼ିକ ତାଙ୍କ ପାଖରେ ଥିଲା ଆବଶ୍ୟକତା ।

କଟକ ସହରରେ ଥରେ ଘଟିଥିବା ସାମ୍ପ୍ରଦାୟିକ ଗୋଳମାଳର ପରବର୍ତ୍ତୀ ଅବସ୍ଥାରେ ସିଏ ଓ ମୁଁ ଗୋଟିଏ ରିକ୍ସାରେ ଯାଉଥିବାବେଳେ ମୋତେ ନୂଆଖାଲି ହତ୍ୟା ସମ୍ପର୍କରେ କହୁଥିବାବେଳେ ବାଟରେ ଏକ କଳଖିଆ ଦୋକାନୀ ତାର ଘରର ପିଲାକୁ ମାରୁଥିବାରୁ ରଘୁବାବୁ ଯେପରି ବ୍ୟସ୍ତ ହୋଇ ପଡ଼ିଲେ ସେଥିରୁ ମୋର ମନେହେଲା ଯେ

ସିଏ ବୋଧେ ଏ ଘଟଣାରେ ନୁଆଖାଳିର ନୃଶଂସ କାଣ୍ଡକୁ ଅନୁଭବ କରୁଛନ୍ତି ।

ତାଙ୍କ ଲିଖିତ "ଅଗଷ୍ଟ ପନ୍ଦର" ଓ "ପୁନଶ୍ଚ" କାବ୍ୟଗ୍ରନ୍ଥ ଦୁଇଟିର କବିତାଗୁଡ଼ିକରୁ ପଂକ୍ତି ଉଦ୍ଧାର କଲାବେଳେ ସେ ଯେପରି ଭାବବିହ୍ୱଳ ହୋଇ ପଡ଼ୁଥାନ୍ତି, ଠିକ୍ ସେହିପରି ପୁରୁଣାକାଳର କୌଣସି କାବ୍ୟପଂକ୍ତି ପାଠ କଲାବେଳେ ମଧ୍ୟ ସମପରିମାଣରେ ପୁଲକିତ ହୋଇ ଉଠନ୍ତି ।

ତାଙ୍କ ନୈତିକତାପୂର୍ଣ୍ଣ ଦୃଢ଼ତାର ଏକ ଜ୍ୱଳନ୍ତ ଉଦାହରଣ ହେଲା – କଲିକତାରୁ ମୋର ଜଣେ ବନ୍ଧୁ ବ୍ୟବସାୟୀ ଓଡ଼ିଶା ଉଚ୍ଚନ୍ୟାୟାଳୟରେ ଗୋଟିଏ ରହିତାଦେଶ ଜାରି କରିବା ଉଦ୍ଦେଶ୍ୟରେ ମୋ ସହିତ ରଘୁବାବୁଙ୍କ ପାଖକୁ ଯାଇଥିଲେ । ସମସ୍ତ ଇତିବୃତ୍ତ ଶୁଣିବା ପରେ ରଘୁବାବୁ ଉକ୍ତ ମହକିଲଙ୍କୁ କହିଲେ "ଆଇନ୍ ତୁମ ସପକ୍ଷରେ ଆଦୌ ଯିବ ନାହିଁ ।" ଉକ୍ତ ବ୍ୟବସାୟୀ ମହକିଲ କହିଲେ "ଆଜ୍ଞା ମୁଁ ତାହା ଠିକ ଜାଣିଛି, କିନ୍ତୁ ମୁଁ ଚାହୁଁଛି କିଛି ସମୟ ଟାଳିଦେବ ।" ଉକ୍ତ ବ୍ୟବସାୟୀ ସାଧାରଣ ଦେୟ ଠାରୁ ଅଧିକା ଦେବାର ଇଚ୍ଛା ପ୍ରକାଶ କଲେ ମଧ୍ୟ ରଘୁବାବୁ ତାଙ୍କ ମୋକଦ୍ଦମାରେ ଲଢ଼ିବାର ସ୍ୱୀକୃତି ନଦେଇ ଫେରାଇ ଦେଲେ । ମୋ ଭରସା ଛାଡ଼ି ବନ୍ଧୁ ଜଣକ ନିଜ ଉଦ୍ୟମରେ ଅନ୍ୟ ଓକିଲଙ୍କ ପାଖକୁ ଯାଇ ଈପ୍ସିତ ବାଞ୍ଛା ପୂରଣ କଲେ । କିନ୍ତୁ କଲିକତା ଯିବାପୂର୍ବରୁ ସେ ମୋ ହାତ ଧରିପକାଇ କହିଲେ—"ମୋ ବ୍ୟବସାୟ ପ୍ରତିଷ୍ଠାନର ଅନେକ ମୋକଦ୍ଦମା ଓଡ଼ିଶା, ବିହାର ଓ ବେଙ୍ଗଲରେ ଚାଲୁଛି; କିନ୍ତୁ ମୁଁ କଟକରେ ଜଣେ ପ୍ରକୃତ ଅର୍ଥରେ ଓକିଲାତି କରୁଥିବା ବ୍ୟକ୍ତିଙ୍କୁ ଭେଟିଲି ।"

ସେହିପରି ଆଉ ଏକ ଘଟଣା । ମୁଁ ସଂପୃକ୍ତ ଥିବା ଗୋଟିଏ ସମାଜସେବୀ ସଂଗଠନର କାର୍ଯ୍ୟାଳୟ ଗ୍ରାମପଞ୍ଚାୟତର ମାଲିକାନାରେ ଥିବା ଏକ ଘରେ ଚାଲୁଥାଏ । କୌଣସି କାରଣରୁ ସରକାରୀ କର୍ତ୍ତୃପକ୍ଷ କ୍ଷୋଭ ପ୍ରକାଶ କରି ଉକ୍ତ ସଂସ୍ଥାକୁ ସେ ଘର ଛାଡ଼ି ଦେବାକୁ ବାରମ୍ବାର ଲିଖିତ ନିର୍ଦ୍ଦେଶନାମା ଜାରି କରୁଥାଆନ୍ତି । ସଂସ୍ଥା ମଧ୍ୟ ଆଇନ୍‌ବିତ୍‌ଙ୍କ ସହ ପରାମର୍ଶ କରୁଥାଏ । କିନ୍ତୁ କଥା ପ୍ରସଙ୍ଗରେ ମୁଁ ରଘୁବାବୁଙ୍କୁ ଏହା କହିଥିଲି । ଦିନକ ପରେ ତାଙ୍କଠାରୁ ଟାଇପ୍ କରା ଏକ ଚିଠି ପାଇଲି । ତାହା ଥିଲା ଗ୍ରାମଗୋଷ୍ଠି କମିଶନରଙ୍କ ଉଦ୍ଦେଶ୍ୟରେ ଲିଖିତ । ସେଇଟିକୁ ମୁଁ ଡାକରେ ଉପଯୁକ୍ତ ସ୍ଥାନକୁ ପଠାଇ-ଦେଇ ଆଜକୁ ସାତବର୍ଷ ହେଲା ନିଶ୍ଚିନ୍ତରେ ବସିଛି ।

ସେ କ୍ଷେତ୍ରରେ ପଇସା ଫେରାଇ ଏ କ୍ଷେତ୍ରରେ ବିନା ପାରିଶ୍ରମିକରେ ଆଇନଗତ ସାହାଯ୍ୟ ।

ସିଏ ମୋ ନେତା ନଥିଲେ କି ମୁଁ ତାଙ୍କ କର୍ମୀ ନଥିଲି । ତାଙ୍କ ଆଇନ ବ୍ୟବସାୟରେ ସିଏ ମୋ ବରିଷ୍ଠ ନଥିଲେ କିମ୍ବା ମୁଁ ତାଙ୍କ କନିଷ୍ଠ ନଥିଲି । ମୋ ପରିବାରର ତାଙ୍କ ପରିବାର ସହିତ ବନ୍ଧୁ ବାନ୍ଧବ ସମ୍ପର୍କ ନଥିଲା କିମ୍ବା ମୋ ସାମାଜିକ-ରାଜନୈତିକ କାର୍ଯ୍ୟରେ ତାଙ୍କଠାରୁ ମୁଁ କୌଣସି ସିଧାସଳଖ ପରାମର୍ଶ ନେଇନାହିଁ । ମୁଁ ଶିଷ୍ୟଗିରି ବା ସିଏ ଗୁରୁଗିରି କରି ନାହାନ୍ତି । କିନ୍ତୁ ତାଙ୍କ ସହିତ ମୋର ଆତ୍ମିକ ସମ୍ପର୍କ ଗଢ଼ିଉଠିଥିଲା । ତାଙ୍କର ସହୃଦୟତା, ତାଙ୍କର ଉଦାରତା, ଓ ନିଷ୍ଠାପୂର୍ଣ୍ଣ ବ୍ୟକ୍ତିତ୍ୱ ମୋ ଜୀବନ ଉପରେ ଅଖଣ୍ଡ ପ୍ରଭାବ ପକାଇପାରିଛି । ମାନସିକ ସ୍ତରରେ କ୍ଲାନ୍ତ ଅନୁଭବ କଲାବେଳେ ସିଏ ଆଲୋଚନା ମାଧ୍ୟମରେ ଉତ୍ସାହିତ କରିଛନ୍ତି । ମାନସିକ କ୍ଷୁଧା ହଟାଇବାକୁ ଖୋରାକ ମଧ୍ୟ ଯୋଗାଇଛନ୍ତି । ମାନସିକ ଅଶାନ୍ତ ବେଳେ ସ୍ନେହ ଅଜାଡ଼ିଛନ୍ତି, ସଂଘର୍ଷପୂର୍ଣ୍ଣ ସାମାଜିକ କାର୍ଯ୍ୟରେ ଆଗେଇବାର କାଇଦା ଶିଖାଇଛନ୍ତି । ଆଜି ମଧ୍ୟ ତାଙ୍କର ଆଖିରୁ "ଚରୈବେତି ଚରୈବେତି"ର ଉଦାତ୍ତ ଆହ୍ୱାନ ଆସୁଛି । ସେହିଭଳି ପରି ତାଙ୍କର ଆତ୍ମା ଆଜି ମଧ୍ୟ ନାଗରିକ ଅଧିକାର ଓ ଗଣତନ୍ତ୍ରର ସୁରକ୍ଷା ତଥା ବିକାଶ ପାଇଁ କାର୍ଯ୍ୟରତ ଥିବାର ମନେହୁଏ ।

ସିଏ ନିଜେ 'ଜଟାୟୁ' ଭାବରେ ଯେପରି ଅନ୍ୟାୟର ପ୍ରତିବାଦ ଓ ପ୍ରତିରୋଧ କରି ଯାଇଛନ୍ତି ତାହା ପ୍ରତ୍ୟେକ ସାମ୍ବାଦିକ ଓ ରାଜନୈତିକ କର୍ମୀଙ୍କୁ ପ୍ରଭାବିତ କରୁଛି । ତାଙ୍କର ଅମ୍ଳାନ ଆହ୍ୱାନ ଆଜି ମଧ୍ୟ ଆମ ଭିତରେ ବନ୍ଧୁ, ଦାର୍ଶନିକ ଓ ମାର୍ଗଦର୍ଶକ, ପରି କାମ କରୁଛି । ସମାଜସେବୀଙ୍କୁ ଅନ୍ୟମାନଙ୍କ ଠାରୁ ଯାହା ମିଳେନା ତାହା ରଘୁବାବୁଙ୍କ ଠାରୁ ମିଳୁଛି ।

ତେଣୁ ସମାଜ-ବିଜ୍ଞାନ ଅନୁଯାୟୀ ତାଙ୍କର ଅଭିନବତ୍ୱର ଯଥାର୍ଥତା ରହିଛି ତାହା ସ୍ୱୀକାର୍ଯ୍ୟ ।



# ପୁନଶ୍ଚ ଜାଗୃତିକାଳରେ ଆମ ସହ

# କବି ରଘୁନାଥ ଦାସ

ଶ୍ରୀ ସମରେନ୍ଦ୍ର ନାୟକ

କବି 'ଜଟାୟୁ'; ସାହିତ୍ୟିକ ରଘୁନାଥ ଦାସ; ଗଣତନ୍ତ୍ର ପ୍ରେମୀ ରଘୁବାବୁ ବିଦାୟ ନେଇଛନ୍ତି ଆମ ମେଳରୁ—ହଠାତ୍ ଆକସ୍ମିକ ଭାବରେ। ଜନ୍ମ-ମୃତ୍ୟୁର ଏଇ ଚିରନ୍ତନ ପ୍ରକ୍ରିୟା ଲକ୍ଷକୋଟି ବର୍ଷ ଧରି ପୃଥିବୀରେ ଚାଲି ଆସିଛି; ପୁଣି ଅନନ୍ତକାଳ ଧରି ପୃଥିବୀରେ ଚାଲୁରହିବ। ତେଣୁ ଆସିବା ଯିବା ଜମାରୁ ଗୁରୁତ୍ୱପୂର୍ଣ୍ଣ ନୁହେଁ। ଗୁରୁତ୍ୱପୂର୍ଣ୍ଣ ହେଉଛି ପୃଥିବୀରେ ରହଣିକାଳଟି, ମଣିଷର ଚିରବିଦାୟ ପରେ ଯାହାର ଚିରନ୍ତନ ମୂଲ୍ୟାୟନ ଘଟିଥାଏ।

ସବୁ ପ୍ରତିଭାଧରଙ୍କ ପରି କବି ରଘୁନାଥ ଦାସ ଥିଲେ ବହୁମୁଖୀ। ସେ ଏକାଧାରରେ ଥିଲେ ହାଇକୋର୍ଟର ଜଣେ ସ୍ୱନାମଧନ୍ୟ ଓକିଲ; ସାମୟିକ ରାଜନୀତିଜ୍ଞ ଓ ସଫଳ-ପ୍ରଗତିବାଦୀ ସାହିତ୍ୟିକ। ପ୍ରାୟ ପ୍ରତ୍ୟେକ ମଣିଷ, ପ୍ରତ୍ୟେକ ପ୍ରତିଭାଧରଙ୍କ ଚରିତ୍ର ଭିତରେ ଔଜ୍ଜ୍ୱଲ୍ୟ ସହ ଛୁଟା ଅନୌଜ୍ଜ୍ୱଲ୍ୟ; ଆଶା ସହ ଆଶାଭଙ୍ଗ ଓ ଗତିଶୀଳତା ଭିତରେ କ୍ଲାନ୍ତି ପାଖାପାଖି ରହିଥାଏ। ଯାହା ସର୍ବାଙ୍ଗସୁନ୍ଦର ତା' ଭିତରେ ବି କେଉଁଠି ନା କେଉଁଠି କଳାଦାଗଟିଏ ମିଳିବ। ତେବେ ସାମଗ୍ରିକ ଜୀବନରେ ଆଲୋକର ଦିଟ/ଦିଗ ସମୃଦ୍ଧ ଯଦି ତମିସ୍ରାକୁ ନିଷ୍ପ୍ରଭ-ମଳିନ କରିଦେଇଥାଏ, ତାହେଲେ ତାହାହିଁ ଜନ-ମାନସରେ ତୋଳିଧରିବା ଉଚିତ, ଯାହା ମାନବ ସମାଜର ଅଗ୍ରଗତିକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ଏକ ସଠିକ୍ ଦିଗ୍‌ଦର୍ଶନ ଦେବାରେ ସହାୟକ ହେବ।

ମୋର ଦୃଢ଼ ଆଶା ଓ ବିଶ୍ୱାସ ରଘୁନାଥ ଦାସ ଯଦି ତାଙ୍କର କୌଣସି ସର୍ଜନ-କର୍ମ ପାଇଁ ଓଡ଼ିଶାର ଜନ-ଜୀବନରେ ଚିରଞ୍ଜୀବିତ ରହନ୍ତି, ତାହା ହେଉଛି ତାଙ୍କର ମୂଲ୍ୟବାନ୍ ସାହିତ୍ୟିକ କୃତି ଓ ପ୍ରଚଣ୍ଡ କବି ପ୍ରତିଭାପାଇଁ, ତାର ପଟାନ୍ତର ନାହିଁ। ଯେତେଦିନ ପର୍ଯ୍ୟନ୍ତ ବୈପ୍ଳବିକ ପ୍ରକ୍ରିୟାରେ ଓଡ଼ିଶାର ନବ-ନବ ଉନ୍ମେଷ ଘଟୁଥିବ, ସେତେଦିନ ପର୍ଯ୍ୟନ୍ତ ରଘୁନାଥ ଦାସଙ୍କ ଆଗ୍ନେୟ କବିତାର ପଂକ୍ତି କାଳ-ଚେତନାର ସେତୁବନ୍ଧରେ ସୁଣ୍ଡୁରୀ ମୁକ୍ତାଟିଏ ହୋଇ ଯୁଗ ଝୁଲୁଥିବ; ଚାରଣକଣ୍ଠରେ, ରସଗ୍ରାହୀ ସଂଗ୍ରାମୀ ପ୍ରାଣରେ, ଅଧିକରୁ ଅଧିକ ରସୋତ୍ତୀର୍ଣ୍ଣ ହୋଇ ଉଠୁଥିବ, ଏହା ଧ୍ରୁବ, ଏହା ସତ୍ୟ।

୧୯୬୭ ମସିହାରେ ଘଟିଲା ନକ୍ସାଲବାଡ଼ିର ଐତିହାସିକ ଗଣ ଅଭ୍ୟୁତ୍ଥାନ । ଅପ୍ରତିରୋଧ ସେହି ପ୍ରଳୟଝଞ୍ଜାରେ ଥରଉଠିଲା ସାରା ଭାରତବର୍ଷ । ଶାସକଶ୍ରେଣୀ ପ୍ରମାଦ ଗଣିଲା । ସବୁ ରାଜ୍ୟର ସାହିତ୍ୟ ଭିତରେ ଦେଖା ଦେଲା ନବ-ଜାଗରଣ । ନୂଆ ମୋଡ଼ନେଲା ଭାରତୀୟ ସାହିତ୍ୟ ।

ସେତେବେଳେ ଅନ୍ୟାନ୍ୟ ଅନେକ ସମସ୍ୟା ସହ ନବାଗତ ବିପ୍ଳବୀ ଲେଖକମାନଙ୍କ ଭିତରେ ଆଲୋଚନା ହେଉଥାଏ ପୂର୍ବସୂରୀମାନଙ୍କ କଥା । କାହିଁକିନା, ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ପୂର୍ବସୂରୀ କହିଲେ ସେତେବେଳେ ଆମ ମେଳରେ କେହି ନଥାନ୍ତି । ଆମେ ଶୁଣୁଥାଉ—ସେମାନେ ସମସ୍ତେ ଲେଉଟି ଆସନ୍ତୁ ଆମ ଭିତରକୁ । (ସେ ଦୃଷ୍ଟିରୁ ପରବର୍ତ୍ତୀ ସମୟରେ ଅବଶ୍ୟ ଆମ ଉଦ୍ୟମର କିଛି ସଫଳତା ମିଳିଛି ।) ଥରେ ଆମେ କେତେ ଜଣ ବନ୍ଧୁ ସାଥି ହୋଇ ଭେଟିବାକୁ ଗଲୁ ରଘୁବାବୁଙ୍କୁ । ସତ କହିବାକୁ ଗଲେ, ତାଙ୍କ ସହ ଆଲୋଚନା କରି ଆମେମାନେ ତଟସ୍ଥ ହୋଇ ପଡ଼ିଥିଲୁ । ଯେ କୌଣସି ସାହିତ୍ୟ ବିଷୟକ ଆଲୋଚନା ; ବିଶେଷ କରି ନିଜ ଲେଖା ବିଷୟରେ ତାଙ୍କୁ ଯେତେବେଳେ କିଛି ପଚାରୁଁ, ସେ କେଉଁ ଗୋପନ ବେଦନାରେ ହୋଇ ଉଠିଲେ ଅସ୍ଥିର ; ପ୍ରଶ୍ନ ସମୂହ ଏଡ଼ାଇ ଯିବା ଭିତରେ ଯିଏ କି ମର୍ମନ୍ତୁଦ ଯନ୍ତ୍ରଣା ; ଯେଭେ କି ତାଙ୍କର ଏକାନ୍ତ କ୍ଷତକୁ ବିପେଇ ଦେଇଛି ଆମର ପ୍ରଶ୍ନବାଣ । ତାହା କି ପ୍ରକାରର ଦୁଃଖ—କି ପ୍ରକାରର ମର୍ମଦାହ ?? ଜଣେ ସର୍ଜନଶୀଳ ଲେଖକ ଯଦି ଲେଖି ଲେଖି ଅଟକିପଡ଼େ, ଆଉ ଆଗେଇ ପାରେନ ; ଅଥଚ ତାର ଦୁରନ୍ତ କାବ୍ୟଚେତନା ପାଖରୁ ତାର ଆତ୍ମା-ପୁରୁଷଟି ସେଥିପାଇଁ ପ୍ରତି-ନିୟତ ଦୋଷୀସାବ୍ୟସ୍ତ ହୋଇ ଧିକ୍‌କୃତ ହୋଇ-ଥାଏ ; ତାହା ଯେଉଁ ପ୍ରକାରର ମର୍ମବେଦନା, ଆମେ ସେଦିନ କବି ରଘୁନାଥ ଦାସଙ୍କୁ ଅନୁଭବ କରିଥିଲୁ ସେଇ ପ୍ରକାରର ଏକ ଚରମ ଦୁଃଖ ଭିତରେ । ତେବେ ଏତିକି ସମ୍ଭାବନା ନେଇ ଫେରିଥିଲୁ— କବି ଆଜି ବି ମରିନାହାନ୍ତି । ଘୁମୁରୁଥିବା ଦୁରନ୍ତ କାବ୍ୟ-ଚେତନା ଭିତରୁ ହୁଏତ ପୁନଶ୍ଚ କିଛି ଆସିପାରେ ।

ପ୍ରତିକ୍ରିୟାର ପ୍ରଚଣ୍ଡ ଝଡ଼ରେ ଭାଙ୍ଗି ପଡ଼ିଥିବା ମହୀରୁହଟି ଉପଯୁକ୍ତ ଆଲୋକ, ମୃତ୍ତିକା, ବାୟୁ ଓ ଆର୍ଦ୍ରତା ଭିତରେ ପୁଣିଥରେ ଶାଖା-ପ୍ରଶାଖା ମେଲି ପଲ୍ଲବିତ ହେଲା—ପୁଷ୍ପିତ ହେବାକୁ ଲାଗିଲା । ଦୀର୍ଘ ୨୦ ବର୍ଷର ନିରବଚ୍ଛିନ୍ନ-ସ୍ତବ୍ଧତା ପରେ ୧୯୭୩ ମସିହାରୁ କବି ରଘୁନାଥ ଦାସଙ୍କ ଲେଖନୀରେ ପୁଣି ଶୁଣାଗଲା ନିଦ୍ରାଭଙ୍ଗ ଓ ଜାଗରଣର ପଦଧ୍ୱନି । ୧୯୫୩ ପୂର୍ବର ରଚିତ ତାଙ୍କର କବିତାଗୁଚ୍ଛ ଏକତ୍ରିତ ହୋଇ ୧୯୭୩ ମସିହା ଏପ୍ରିଲ ମାସରେ ଆତ୍ମପ୍ରକାଶ କଲା କାଳଜୟୀ କାବ୍ୟଗ୍ରନ୍ଥ "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" । ତାହା ପଢ଼ିବା ପରେ ମୋର କବିପ୍ରାଣ ଚମତ୍କୃତ ଓ ଉଦ୍‌ବେଳିତ ହୋଇ ଉଠିଥିଲା । କାରଣ ଦୁଷ୍ପ୍ରାପ୍ୟ ହୋଇ ପଡ଼ିଥିବା କବିଙ୍କର କୌଣସି ଲେଖା ମୁଁ ସେପର୍ଯ୍ୟନ୍ତ

ପଢ଼ିନଥିଲି । 'ଅଗଷ୍ଟ ପନ୍ଦର ୧୯୪୭, ୧୯୪୮, ୧୯୪୯' ମୁଁ ଥର ଥର କରି ଅନେକ ଥର ପଢ଼ିଛି । ପ୍ରଥମଥର ପଢ଼ିବା ବେଳେ ପୂର୍ବ ପଠନର ସ୍ମୃତି ଉପରେ ଖେଳି ଯାଇଛି ପୁଣି ନୂତନ ଉଚ୍ଛ୍ୱାସ, ମନପ୍ରାଣରେ ଲାଗିଯାଇଛି 'ଲଗନ', ଚିନ୍ତାରାଜ୍ୟରେ ପରିକ୍ରମା କରିଛି ସାରା ଭାରତବର୍ଷ, ଜାଗ୍ରତ ସ୍ୱପ୍ନରେ ବିଚରଣ କରି ଦେଖିଛି-ଦୁଃଖିନୀ-ବନ୍ଦିନୀ ଜନ୍ମଭୂମି—ନିଷ୍ପେଷିତ ମଣିଷର ହାହାକାର, ବୁଭୁକ୍ଷା, ଶୋଷଣ, ଧର୍ଷଣ, ସର୍ବୋପରି ଶ୍ମଶାନ-ଶାନ୍ତ-ସ୍ୱାଧୀନତାର ସର୍ବଭୁକ୍ ଲେଲିହାନ୍ ଶିଖା ; ଯାହା ମୋତେ କରିଦେଇଛି ଦୃଢ଼, ମୁକ୍ତ-ସଚେତନ, ବାସ୍ତବ-ଅଭିମୁଖୀ । ସଠିକ ବିଷୟବସ୍ତୁ ନିର୍ବାଚନ, ସାବଲୀଳ ଶୈଳୀ, ହୃଦୟସ୍ପର୍ଶୀ ଭାଷା, ଅଭୂତ ଶବ୍ଦ ସଂଯୋଜନା ସହ ତୀକ୍ଷ୍ଣ ଇଙ୍ଗିତ ବହନକାରୀ ସେ କାବ୍ୟଗ୍ରନ୍ଥଟି ବାସ୍ତବିକ୍ ଅତୁଳନୀୟ, ଅନନ୍ୟ ଓ ଅସାଧାରଣ ।

ସେ କାବ୍ୟଗ୍ରନ୍ଥର ଭୂମିକା କିନ୍ତୁ ବିସ୍ମୟକର । ରଘୁନାଥ ଦାସ ସେଠାରେ କ୍ଳାନ୍ତ ଅସ୍ତଗାମୀ ସୂର୍ଯ୍ୟ ସହ ତୁଳନୀୟ । ରଘୁବାବୁଙ୍କ ସାରସ୍ୱତ-ପୁରୁଷର ବୃଦ୍ଧତା ଓ ବିଦାୟ-କାଳକୁ ସେଠାରେ ନୂତନ ଏକ କାବ୍ୟପୁରୁଷର ଉଦୟକାଳ ଭାବେ ପ୍ରତିପାଦିତ କରି-ଯାଇଅଛି । ଇମିତକି ସେ ଲୁଆଡ଼େ ପୂର୍ଣ୍ଣଭାବରେ ଅଦୃଶ୍ୟ ନହୋଇ ଆକାଶରେ ମିଟି ମିଟି କରୁଥିଲେ— ତାଙ୍କର ସୁଯୋଗ୍ୟ ଆଗ୍ନେୟ ଉତ୍ତରାଧିକାରୀଙ୍କ ପ୍ରତୀକ୍ଷାରେ । କେବଳ ସେତିକି ନୁହେଁ, ସେହି ଅଦୃଶ୍ୟ ଲାଲ୍‌-ସାରସ୍ୱତ-ଜ୍ୟୋତିଷ୍କଟିର (ରଘୁନାଥ ଦାସ) ନାକ୍ଷତ୍ରିକ-ଦାୟାଦ ହେବାର ଯୋଗ୍ୟତା ଓ ବିପ୍ଳବୀ ଉତ୍ତରାଧିକାର ଶେଷରେ ଆପଣା ମତରେ ହିଁ ଏକତରଫା ଭାବେ ସେଠାରେ ଦାବି କରାଯାଇଛି ।

ଏଠାରେ କବି ରଘୁନାଥ ଦାସଙ୍କ କେତେକ ପୁରାତନ କବିତାମୁକ୍ତ ଏକାଠି କରି କାବ୍ୟଗ୍ରନ୍ଥଟି ପ୍ରକାଶ କରାଇବା ଭିତରେ ହୁଏତ ଚିନ୍ତା କରାଯାଇଥିଲା – ରଘୁବାବୁ ଓଡ଼ିଆ ସାରସ୍ୱତ ଜଗତରୁ ଚିରକାଳ ପାଇଁ ବିଦାୟ ନେଇଥିବା ଏକ ପ୍ରତିଭା । ତାଙ୍କର ପୁନରୁତ୍ଥାନ ଅସମ୍ଭବ । ଏହି ସମୟରେ ତାଙ୍କର ଆଗ୍ନେୟ ଉତ୍ତରାଧିକାର ହାତେଇ ନେବା ସହଜ-ସାଧ୍ୟ ଓ ନିରାପଦ—ତାଙ୍କ ସାରସ୍ୱତ-ସାଧନାର ସିନ୍ଧି ମୁକ୍ତକରି ପୁଞ୍ଜି କିନ୍ତୁ ଲୁଣ୍ଠିତ କରା-ଯାଇପାରେ । କିନ୍ତୁ ସେତେବେଳେ ସେ ଜମାରୁ 'ମିଟି ମିଟି' କରୁ ନଥିଲେ । ୧୯୭୨ ମସିହାରୁ ରଘୁବାବୁ ପୁଣି ଫେରି ଆସିଥିଲେ ଆପଣାର ସର୍ଜନ-'ଦୁନିଆ'କୁ । ଏହା ହୁଏତ ଜଣା ନଥିଲା । "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" ପ୍ରକାଶ କରାଇବାର ସୁଯୋଗ ନେଇ ସବୁ କିଛି ଦାବି କରିବାର ଏଇ ବିଚିତ୍ର ପ୍ରହସନ ରଘୁନାଥ ଦାସ ସେତେବେଳରୁହିଁ ଠିକ୍ ବୁଝିଥିଲେ—ଶେଷ ପର୍ଯ୍ୟନ୍ତ ଅଧିକରୁ ଅଧିକ ବୁଝୁଥିଲେ । ସେ ନେଇ ରଘୁବାବୁଙ୍କର ଧ୍ୟାନଧାରଣା ବା କଣ ଥିଲା ?!? ମୋ ପାଖକୁ ଲେଖିଥିବା କେତେକ ଗୁରୁତ୍ୱପୂର୍ଣ୍ଣ ଚିଠି ଭିତରୁ ସେ ସମୟର ଏକ ଚିଠି ମୁଁ ପାଠକଙ୍କ ଅବଗତି ନିମନ୍ତେ ନିମ୍ନରେ ପ୍ରଦାନ କଲି । ଯେଉଁ ଚିଠି ରଘୁବାବୁଙ୍କ ବିଷୟରେ ସମ୍ୟକ ଧାରଣା ଦେବା ପାଇଁ ପାଠକମାନଙ୍କୁ ସାହାଯ୍ୟ କରିବ ।

କଟକ
୧୦ । ୧୧ । ୭୩

କଲ୍ୟାଣୀୟେଷୁ ସମରେନ୍ଦ୍ର !

ତୁମ ଚିଠି ପାଇ ବିଶେଷ ଆନନ୍ଦିତ ହେଲି । × × × ×

ପ୍ରଗତିଶୀଳ ସାହିତ୍ୟିକ ସାହିତ୍ୟ ଚର୍ଚ୍ଚା କରେ ନାହିଁ କବିଯଶ ଲିପ୍ସାରେ । ପ୍ରଗତି ଲାଗି ତାର ଗର୍ଭବେଦନା ହିଁ ତାହାର ସାହିତ୍ୟିକ କୃତି ଲାଗି ଉତ୍ସାହ ଓ ଉଦ୍ଦୀପନା ଆଣିଦିଏ । ବ୍ୟକ୍ତିକେନ୍ଦ୍ରିକ ଯୁଗରେ ଏ କଥା କଳ୍ପନା କରିବା ବି ଅଧିକାଂଶ ପକ୍ଷେ ଦୁରୂହ ହୋଇଛି । ଆତ୍ମପ୍ରତିଷ୍ଠା ଲାଗି ତୁମୁଳ ହଟ୍ଟଗୋଳ ଚାଲିଛି । ଜୀବନପ୍ରବାହ ପ୍ରତି ଯାହାର ଦୃଷ୍ଟି ପ୍ରସାରିତ, ସେ ଏ ସବୁକୁ ଅସାର ମନେ କରିବ । ଅବଦାନ ହିଁ ବ୍ୟକ୍ତି ଜୀବନର ଯାଥାର୍ଥ୍ୟ ପ୍ରତିପାଦନ କରେ— ଆତ୍ମପ୍ରତିଷ୍ଠା ନୁହେଁ । ଆତ୍ମପ୍ରତିଷ୍ଠା ଅଳୀକ, ଆତ୍ମସନ୍ତୋଷର ଉପାଦାନ ମାତ୍ର । ଜୀବନସ୍ରୋତ ଏ ପ୍ରଚେଷ୍ଟାକୁ ଉପହାସ କରେ— କ୍ଷୁଦ୍ରର କି ବିରାଟ ଆସ୍ଫାଳନ ! ଜୀବନକୁ ଅଧିକ ବିକଶିତ କରିବା ଲାଗି ବ୍ୟକ୍ତି ଯାହା କିଛି କରେ, ସେଥିରେ ତାର ଜୀବନ ସାର୍ଥକ ହୁଏ; ତାହାର ମୂଲ୍ୟ ସତ୍ୟ ଓ ନିତ୍ୟ । ପ୍ରଗତିବାଦୀର ଏହାହିଁ ଦୃଷ୍ଟିଭଙ୍ଗୀ ହେବା ଉଚିତ । ସାହିତ୍ୟିକ କୃତିର ମୂଲ୍ୟାୟନ ଏହି ଭିତ୍ତିରେ ହେବା ବିଜ୍ଞାନ ସମ୍ମତ ।

ଦୁଃଖର କଥା, ଆମ ସାମାଜିକ ଚେତନାର ସ୍ତର ଏବେ ଅତି ନିମ୍ନସ୍ତରରେ କହିଲେ ଠିକ୍ ହେବନାହିଁ—ବିକୃତ ଆତ୍ମପ୍ରତିଷ୍ଠା କରିବାରେ ଯେଉଁମାନେ ବ୍ରତୀ ସମାଜ ସେହିମାନଙ୍କୁ ହିଁ ସ୍ୱୀକୃତି ଦେଉଛି । ସମାଜର ବିଭିନ୍ନ କ୍ଷେତ୍ରରେ ଯେଉଁମାନେ ଅବଦାନ ଦେବାକୁ ଅଗ୍ରସର ହେଉଛନ୍ତି, ସେମାନଙ୍କୁ ଉତ୍ସାହିତ କରିବା ପରିବର୍ତ୍ତେ, ସେମାନଙ୍କ ଅବଦାନକୁ ସ୍ୱୀକାର କରିବା ପରିବର୍ତ୍ତେ, ସମାଜ ସେମାନଙ୍କ ପଥ କଣ୍ଟକିତ କରୁଛି, ସେମାନଙ୍କୁ ଆଦର୍ଶବାଦୀ ବୋଲି ବିଦ୍ରୂପ କରୁଛି । ଫଳତଃ ଭଗବତୀଙ୍କ ପରି ବହୁ ଆଗେଇଲା ସାଥୀ ଅକାଳ ମୃତ୍ୟୁମୁଖରେ ପଡ଼ୁଛନ୍ତି ଓ ସେହି ମଡ଼ାକୁ ପୁଞ୍ଜି କରି ବହୁ ବ୍ୟକ୍ତି ଆତ୍ମପ୍ରତିଷ୍ଠାରେ ଲାଗିପଡ଼ିଛନ୍ତି । ବ୍ୟକ୍ତିଗତ ଫାଇଦା ଉଠାଇବା ଏ ଯୁଗର ଧର୍ମ ହୋଇଛି । ଯୁଗଧର୍ମ ସାମାଜିକ ଚେତନାର ସ୍ତର ଉପରେ ଗଢ଼ିଉଠେ ।

ସାମାଜିକ ଚେତନାର ସ୍ତର ବିଷୟରେ ମୁଁ ସଚେତନ ହୋଇଯାଇଛି । ମୁଁ ଯେତେବେଳେ ଲେଖୁଥିଲି, ସାମାଜିକ ଚେତନା ମୋର ଲେଖାର ମୂଲ୍ୟ ବୁଝିବାକୁ ଅସମର୍ଥ ଥିଲା; ତେଣୁ ସେ ସେଗୁଡ଼ିକୁ କେବଳ ଯେ ଅବଜ୍ଞାରେ ଫିଙ୍ଗି ଦେଉଥିଲା ତାହା ନୁହେଁ, ମୋତେ ବ୍ୟଙ୍ଗ ବିଦ୍ରୂପ କରିବାଠୁ ନାନାଭାବରେ ମୋର କଣ୍ଠରୋଧ କରିବାକୁ ଚେଷ୍ଟା କରିଥିଲା । ଆଜି ମଧ୍ୟ ସେ ଯୁଗ ଅପସରି ଯାଇନାହିଁ । ଯଦିଓ

କେତେକଜଣ ଚିରନ୍ତନ ମୂଲ୍ୟବୋଧକୁ ଗ୍ରହଣ ନ କରିପାରି ନୂତନର ସନ୍ଧାନରେ ବାହାରିଛନ୍ତି— ଏହା ଶୁଭ ସୂଚନା। ଆତ୍ମପ୍ରତିଷ୍ଠାର ଉଗ୍ରିମବାଜି ଆଉ ସେମାନଙ୍କୁ ଭୁଲାଇ ପାରୁନାହିଁ; ଆଉ ସେମାନଙ୍କୁ ସମାଜର ତ୍ରାତା ଓ ନେତା ବୋଲି ଅନ୍ତତଃ କେତେକ ମନେ କରୁନାହାନ୍ତି। କିନ୍ତୁ ଏହି ଚେତନା ଠିକ୍ ଆସିବାକୁ ସମାଜକୁ ଅନ୍ତତଃ ପଚାଶ ବର୍ଷର ତିକ୍ତ ଅଭିଜ୍ଞତା ଭିତର ଦେଇ ଗତି କରିବାକୁ ହେଲା। ନିଜର ଅଭିଜ୍ଞତାରୁ ସେମାନେ ଉପାଦେୟ ଶିକ୍ଷା ଲାଭ କଲେ ଯେ— ବ୍ୟକ୍ତିର ଆତ୍ମପ୍ରତିଷ୍ଠାରେ ବ୍ରୁଷ୍ଟ ଦଳ ବା ନେତୃବର୍ଗ ସମାଜକୁ ଆଗେଇ ନେଇ ପାରିବେ ନାହିଁ। ଏହା ଭୁଲ ମାର୍ଗ! ବ୍ୟକ୍ତିପ୍ରତିଭାର ଚମତ୍କାରିତାରେ ସମାଜ ମୁଗ୍‌ଧ ହେଲେ ସାମାଜିକ ଉନ୍ନତି ସାଧିତ ହେବନାହିଁ। ବ୍ୟକ୍ତି-ପ୍ରତିଭା ସାମାଜିକ ଅଗ୍ରଗତି ଦିଗରେ ଆଧାରିତ କି ନୁହେଁ, ଏହାଦ୍ୱାରା ହିଁ ତାର ମୂଲ୍ୟବୋଧ ନିର୍ଦ୍ଧାରିତ ହେବା ଉଚିତ। ଅନ୍ୟ ସମସ୍ତ ମୂଲ୍ୟବୋଧ ଭ୍ରାନ୍ତ; ସମାଜର ତା ମହତ୍ତ୍ୱ ସମ୍ପର୍କ negative। ଜଣେ ଦକ୍ଷ ବକ୍ତା ବା କବି ହେଲେ ସମାଜର କି ଯାଏ ଆସେ, ଯେ ସାମାଜିକ ଚେତନାର ଅଭିବୃଦ୍ଧି ସାଧନରେ ସହାୟକ ନହୁଏ; ଯେ ତାର କୃତିଦ୍ୱାରା ସାମାଜିକ ଚେତନାକୁ କେବଳ ଭ୍ରାନ୍ତ ବା ଲୁପ୍ତ କରିବାରେ ସହାୟକ ହୁଏ। ଏହି ସତ୍ୟ ସମାଜ ଯେତେବେଳେ ଅନୁଭବ କରିବ, ତାର ମଙ୍ଗଳ ଓ କଲ୍ୟାଣ ସାଧିତ ହେବ— ମାୟାମୃଗମାନେ ସେତିକି ଦୂରକୁ ଘୁଞ୍ଚିବେ। ମାୟାମୃଗର ମୋହଗ୍ରସ୍ତ ସମାଜରେ ବହୁ ରାମ ଆହତ ନିହତ ହେବେ। ମାୟାମୃଗର ମୋହ କଟିଗଲେ ସମାଜରେ ରାମର ଅଭାବ ପଡ଼ିବ ନାହିଁ—ମୋ ଠାରୁ ଆହୁରି ବଳଶାଳୀ ପ୍ରତିଭାବାନ ଲେଖକ କବି ବାହାରିବେ। ତେଣୁ ମୁଁ ଆସ୍ଥାବାନ୍ ଯେ ସମାଜର ଜାଗୃତି ଅବଶ୍ୟମ୍ଭାବୀ। × × × × × × × ଏହା ଅଲଙ୍ଘନୀୟ। ସାମାଜିକ ଚେତନାକୁ ଉଦ୍‌ଭ୍ରାନ୍ତ କରିବାକୁ ମୁଁ କେବେ ଚେଷ୍ଟିତ ହୋଇନାହିଁ—ମୋର ଶକ୍ତିମତେ ତାହାକୁ ବିକଶିତ, ଉଦ୍‌ଜୀବିତ କରିବାକୁ ଚେଷ୍ଟା କରି ଆସିଛି। କିନ୍ତୁ ମୋର ଭୂମିକା ନାନା କାରଣରୁ ସୁପ୍ତ ଓ ପଙ୍ଗୁ ହୋଇପଡ଼ିଛି। ଦୁଃଖ ନାହିଁ। ଆଶାକରେ ତୁମ ମଧ୍ୟରେ ଯେ ଚେତନା ଅଙ୍କୁର ଉଠିଛି, ଦିନେ ପଲ୍ଲବିତ ଓ କୁସୁମିତ ହେବ। ଇତି ।

ତୁମର ଶୁଭାକାଂକ୍ଷୀ
ରଘୁନାଥ ଦାସ

ତା ୧୭-୩-୭୫ ମସିହାରେ ଆମେମାନେ ଶୁଭ ଦେଇଥିଲୁ ୰ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ନବଯୁଗ ସାହିତ୍ୟ ସଂସଦ' ପୁନଃ ପ୍ରତିଷ୍ଠା କରିବା ପାଇଁ। କବି ରଘୁନାଥ ଦାସ ଆମର ଶୁଭେଚ୍ଛୁ ଓ ଅଗ୍ରଜ ଭାବେ ଖୁବ୍ ଦୃଢ଼ତା ଓ ଆନ୍ତରିକତାର ସହ ଆମ ପାଖରେ ଛିଡ଼ା ହୋଇଥିଲେ; ପ୍ରତିଷ୍ଠା ବୈଠକରେ ଯୋଗ ଦେଇଥିଲେ ।

୧୯୭୫ ମସିହାରେ ଜରୁରୀ ଶାସନ ଘୋଷଣା ସଙ୍ଗେ ସଙ୍ଗେ ସାରା ଭାରତବର୍ଷରେ ସୂତ୍ରପାତ ଘଟିଲା ଏକ ଭୟାବହ ଅନ୍ଧାର ଶାସନର। ଖବରକାଗଜ ସମସ୍ତ ପ୍ରଗତିଶୀଳ ପତ୍ର-ପତ୍ରିକା ନିଷିଦ୍ଧ ହୋଇଯିବାକୁ ଲାଗିଲା। ଯୋଗାଯୋଗର ମାଧ୍ୟମ 'ଇଣ୍ଡିଆନ ପୋଷ୍ଟାଲ'

ଆମ ପାଇଁ ଅଚଳ ଦୁଅଣି ହୋଇଗଲା । ସେତେବେଳେ ଜରୁରି ଶାସନର ମଧ୍ୟାହ୍ନ; ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଭଗବତୀ ପାଣିଗ୍ରାହୀଙ୍କ 'ଶିକାର' ଗଳ୍ପ; ଯାହା ମୃଣାଳ ସେନଙ୍କ ଦ୍ୱାରା 'ମୃଗୟା' ନାମରେ ବିକୃତ ଚଳଚ୍ଚିତ୍ର ରୂପ ନେଇଥାଏ; ତା'ଉପରେ ଏକ ମିଳିତ ପ୍ରତିବାଦ ଆମମାନଙ୍କ ଦ୍ୱାରା ଓଡ଼ିଆ ଦୈନିକଗୁଡ଼ିକରେ ପ୍ରକାଶ ପାଇଥିଲା । ଓଡ଼ିଶାର ବୁଦ୍ଧିଜୀବୀ ମହଲ ଉପରେ ତାର ପ୍ରଭାବ ଥିଲା ଆଶାଜନକ । ତତ୍କାଳୀନ ସମାଜର ସ୍ଥବିରତା ଓ ଜଡ଼ତା ଭାଙ୍ଗିବାରେ ତାହା କରିଥିଲା ସହାୟକ ଭୂମିକା ନେଇଥାଏ । ସେଥିପାଇଁ କବି ରଘୁନାଥଙ୍କ ଠାରୁ ମିଳିଥିଲା ଆକୁଣ୍ଠ ସମର୍ଥନ; ହାର୍ଦ୍ଦିକ ଅଭିନନ୍ଦନ ।

ଧୀରେ ଧୀରେ ଯେତେବେଳେ 'ଇମର୍ଜେନ୍ସି'ର କଳାମେଘ ଅପସରି ଗଲା, ଦେଖାଗଲା— ଅନେକ ସହକର୍ମୀ ଆଉ ଆମ ମେଳରେ ନାହାନ୍ତି । କିଏ ସିଧାସିଧି ଶତ୍ରୁ ଶିବିରରେ ଶରଣାପନ୍ନ ହୋଇ କିଏ ବୁଡ଼ ବୁଡ଼ ପାଣି ପିଉଛି— ଲୁଚିଛି ନା ଗୋଡ଼ ଦୁଇଟି ଧରୁଛି; ପୁଣି କେହିକେହି ଚିରଦିନରେ ନୀରବ । ଯେ କେଇଜଣ ଆମେ ରହିଗଲୁ— ଆମେମାନେ ଆଶାଭଙ୍ଗ ଭିତରେ ନୂତନ ଆଶାର ସ୍ୱପ୍ନ ଦେଖିଲୁ । ୧୯୭୯ ମସିହା ଡିସେମ୍ବର ୨୪ ତାରିଖରେ ବାଲେଶ୍ୱରଠାରେ ଜନ୍ମ ନେଲା— "ଗଣମୁକ୍ତି ଲେଖକ ସାମ୍ମୁଖ୍ୟ, ଓଡ଼ିଶା" । (ପରବର୍ତ୍ତୀ ସମୟରେ "ଗଣମୁକ୍ତି ଲେଖକ ଓ ଶିଳ୍ପୀସାମ୍ମୁଖ୍ୟ, ଓଡ଼ିଶା" ।) ମୁଖପତ୍ର ଭାବେ ପ୍ରକାଶ ପାଇଲା "ଅଭିଯାତ୍ରୀ" । ରଘୁବାବୁଙ୍କ ସହ ଯୋଗାଯୋଗ ବେଶ୍ ସହଜ ହୋଇ ଉଠିଲା । 'ଅଭିଯାତ୍ରୀ'ରେ ତାଙ୍କ ଲେଖା ପ୍ରକାଶ ପାଇଲା । ତା ୨୪ ଓ ୨୫-୧୨-୧୯୮୨ ମସିହାରେ 'ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ'ର ପ୍ରତିଷ୍ଠା ଦିବସ ପାଳନ କରାଗଲା ଭୁବନେଶ୍ୱରରେ । ଉଦ୍‌ଘାଟକ ଭାବେ ଯୋଗ ଦେଇଥିଲେ କବି ରଘୁନାଥ ଦାସ । ସେହି ଉତ୍ସବଟି ଆମ ସମସ୍ତଙ୍କ ପାଇଁ ଅବିସ୍ମରଣୀୟ ହୋଇ ରହିବ । ୨୫ ତାରିଖ ସଂଧ୍ୟାରେ ଥାଏ କବିତା-ପାଠୋତ୍ସବ । 'ଅପଥଗାମୀ' ଶିରୋନାମାରେ ମୁଁ ଏକ ବହୁଚର୍ଚ୍ଚିତ କବିତା ପଢ଼ୁଥାଏଁ । ଆବୃତ୍ତି ଏକ ସାଂକେତିକ ସ୍ତରରେ ପହଞ୍ଚି ଯାଇଥାଏ । ହଠାତ୍ ରଘୁବାବୁ କାନ୍ଦି ଉଠିଲେ । ନିମିଷେ ଅଧେ ନୁହେଁ— ଅନେକ ସମୟ ଧରି । ଠିକ ଗ୍ରେଟ ଫିଲ୍ମମାନେ ଯେପରି ଧକେଇ ଧକେଇ କାନ୍ଦନ୍ତି— ଝରିପଡ଼ୁଥାଏ ଅବାରିତ ଅଶ୍ରୁର ଧାର । ଆମେମାନେ ସ୍ତମ୍ଭିତ ହୋଇ ରହିଗଲୁ । ସିଏ ତ ସାଧାରଣ କୌଣସି ଲେକ ନୁହନ୍ତି— ଓଡ଼ିଶା ସାରସ୍ୱତାକାଶର ଜ୍ୟୋତିଷ୍କ— ଏକଦା ଅନନ୍ୟ ଶକ୍ତିମାନ୍ ଲେଖକ ରଘୁନାଥ ଦାସ ନିଜେ କାନ୍ଦୁଥିଲେ । ତାଙ୍କର ସ୍ୱାଭାବିକତା ଫେରିବା ପରେ ଆମେମାନେ ଜାଣିବାକୁ ଚାହିଁଲୁ ସେହି ରହସ୍ୟମୟ ଅଶ୍ରୁତର୍ପଣର କାରଣ କେଉଁଠି ? ଉତ୍ତରରେ ସେ କହିଥିଲେ— "୩୦ ବର୍ଷ ତଳେ ମୁଁ ଯେତେବେଳେ ଓଡ଼ିଶାର ସାରସ୍ୱତ ଜଗତରୁ ବିଦାୟ ନେଲି ସେତେବେଳେ ଭାବିଥିଲି— ମୁଁ ଆଜି କେଉଁମାନଙ୍କ ମେଳରେ ବାଟ ଚାଲିବି ? କାହାପାଇଁ ବା ଲେଖିବି ?? ମୁଁ ଅନୁଭବ କଲି ସ୍ୱାଧୀନତାର ସ୍ୱର୍ଣ୍ଣମୃଗ କ୍ରମଶଃ ସବୁକିଛି ବିଭ୍ରାନ୍ତ କରି ଦେଉଛି— କମ୍ୟୁନିଷ୍ଟ ପାର୍ଟି

ଧୀରେ ଧୀରେ ଓହରି ଯାଉଛି ଶ୍ରେଣୀସଂଗ୍ରାମରୁ— ଫଳତଃ ଗଣଚେତନାର ମାନ ହୋଇ ଯାଉଛି ଦୁର୍ବଳ— ଖସି ଯାଉଛି ତଳକୁ ତଳକୁ । ସାହିତ୍ୟାଦର୍ଶ ପ୍ରତି ବିଶ୍ୱାସଭଙ୍ଗ ନକରିବା ପାଇଁ— ଲେଖନୀକୁ କଳଙ୍କିତ ନକରିବା ପାଇଁ ଆସ୍ତେ ଆସ୍ତେ ମୋ ସାହିତ୍ୟ-ସାଧନା ହୋଇ ଯାଇଥିଲା ସ୍ତବ୍ଧ— ମୁଁ ନୀରବ ହୋଇ ଯାଇଥିଲି । ଆଜି ଦୀର୍ଘ ୩୦ ବର୍ଷ ପରେ ମୁଁ ଅନୁଭବ କରୁଛି ସତରେ ମୁଁ ସମଧର୍ମୀ ଲେଖକମାନଙ୍କ ମେଳରେ ବସିଛି— ପଲିତକେଶ, ଲୋଳଚର୍ମ ହେଲେ ମଧ୍ୟ ମୁଁ ଆତ୍ମବିଶ୍ୱାସର ସହ ଜନସାଧାରଣଙ୍କ ପାଇଁ କିଛି ଲେଖୁଛି । ଏ ଅନୁଷ୍ଠାନ ମୋର ଏକାନ୍ତ ଆପଣାର ପରି ମନେହେଉଛି । ଏ ଅଶ୍ରୁ ପରମ ଦୁଃଖ ଓ ଚରମ ବେଦନାର ଅଶ୍ରୁ, ଏ ଅଶ୍ରୁ ଚରମ ଆନନ୍ଦ ଓ ଚରମ ଆବେଗର ଅଶ୍ରୁ । ତାହା ମୁଁ ରୋକି ନଥିଲି— ରୋକିବାକୁ ଚାହିଁ ନଥିଲି— ଚାହିଁଥିଲେ ରୋକିପାରି ନଥାନ୍ତି ମଧ୍ୟ । ତୁମମାନଙ୍କୁ ଦେଖି ଆଜି ମୋତେ ବେଶ ଭଲ ଲାଗୁଛି ।"

୧୯୮୩ ମସିହା ଦୀପାବଳୀରେ ପ୍ରକାଶ ପାଇଲା ତାଙ୍କର ଦ୍ୱିତୀୟ କାବ୍ୟଗ୍ରନ୍ଥ— 'ପୁନଶ୍ଚ' । ତାଙ୍କ କନ୍ୟା ରଞ୍ଜିତା ଦାସ ସେ ଗ୍ରନ୍ଥର 'ଦୋଗବାଣୀ'ରେ ଯଥାର୍ଥରେ ଲେଖିଛନ୍ତି— 'ସ୍ୱାଧୀନତାର ପରବର୍ତ୍ତୀକାଳରେ, ଜନଜାଗୃତିର ମହାସମରରେ, ଧରଣୀକୁ ଅଙ୍କୋରିବା କରିବାକୁ ଦୃଢ଼ ପଣ କରି ଲଢ଼ୁଥିବା ଗ୍ରାମୁଆ ବାହିନୀର ସେ ଜଣେ ଟାଣୁଆ ଯୋଦ୍ଧା ଭାବେ ଗଣାଯାଉଥିଲେ । ତାଙ୍କର ଲେଖନୀରୁ 'ଅଗଷ୍ଟ ପନ୍ଦର', 'ଗଣପଥ', 'କୋରଆ' ପ୍ରଭୃତି କବିତା ଜନତାକୁ ସଂଗ୍ରାମର ବଳିଷ୍ଠ ଆହ୍ୱାନ ଶୁଣାଇଥିଲା । ସେଇ ମୁମୂର୍ଷୁ କବି ହଠାତ୍ ସମର-ପ୍ରାଙ୍ଗଣ ପରିତ୍ୟାଗ କରି କଚ୍ଛପ ବୃତ୍ତି ଆଚରଣ କଲେ ।' କନ୍ୟାର କଠୋର ଭାଷାରେ ଏହି ସମାଲୋଚନାକୁ କବି ଆପଣା ଗ୍ରନ୍ଥରେହିଁ ଲିପିବଦ୍ଧ କରି ଯାଇଛନ୍ତି । ଯଥେଷ୍ଟ ହିମ୍ମତ, ଉଦାରତା, ସାଥୀସୁଲଭ ମନୋଭାବ ଓ ଆପଣାର ଚ୍ୟୁତି-ବିଚ୍ୟୁତି ପ୍ରତି ସଚେତନତା ସହ ଶାଣିତ ବୈପ୍ଳବିକ ଦୃଷ୍ଟିଭଙ୍ଗୀ ନଥିଲେ କେହି କେବେ ଏ ସତ୍ୟ ମାନିନିଏ ନାହିଁ । ଓଡ଼ିଆ ସାହିତ୍ୟରେ ଏହା ବେ-ନଜିର ।

ସାହିତ୍ୟକର ସଂଗ୍ରାମୀ ଭୂମିକା ପାଳନ କଲାବେଳେ ରଘୁନାଥ ଦାସ ସବୁବେଳେ ଥିଲେ ବେସାଲିସ । ୧୯୭୩ ମସିହାରେ ମୋ ପାଖକୁ ଲେଖିଥିବା ଚିଠିର ଦୃଷ୍ଟିକୋଣ ସହ, ୧୯୮୩ ମସିହାରେ ତାଙ୍କର ଅନ୍ତିମ ଚିନ୍ତନ, ସୁଧୀ ପାଠକେ ଥରେ ମିଳାଇନେବା ଉଚିତ । ସେତେବେଳକୁ ସେ ଆହୁରି ତୀକ୍ଷ୍ଣ ଖଣ୍ଡାଧାର, ଅଧିକ ବେସାଲିସ ଓ ସମସ୍ତ ସଚେତନ ହୋଇ ଉଠିଥିଲେ ଗୃହଶତ୍ରୁର ଭୂମିକା ପ୍ରତି । ସେଥିପାଇଁ ସେ 'ପୁନଶ୍ଚ'ରେ ଦଳକଥା 'ସ୍ୱେ ଚଣ୍ଡ ଚନ୍ଦ୍ରଇ ଯାତ୍ରା'ରେ ଦୃଢ଼ତାର ସହ ଘୋଷଣା କରିଥିଲେ— "ବିପ୍ଳବୀ ଆଡ଼୍ଡାରେ ପ୍ରବେଶ ସୁଗମ କରିବା ପାଇଁ ଓ ବିପ୍ଳବୀ ସଂଗଠନ ବିଷୟରେ ସମସ୍ତ ତଥ୍ୟ ସଂଗ୍ରହ ଲାଗି ଗୋଇନ୍ଦା ପୁଲିସ କପଟ ମୟୂରପୁଚ୍ଛଧାରୀ 'ବିପ୍ଳବୀ କବି' ପ୍ରୟୋଗ କରେ, ତାହା ମୋର ଅନେକଥର ଅନୁଭୂତ ।

× × × ×

ବିପ୍ଳବୀ ସାହିତ୍ୟ ଏକ ଶାଣିତ ହାତହତିଆର । ଏହା ଜନଗଣଙ୍କୁ ମହତ୍ ଉଦ୍ଦେଶ୍ୟ ସ୍ଥିତାବସ୍ଥାର ଗ୍ରନ୍ଥିଗ୍ରଭୂମି ଉପରେ ଚଢ଼ାଉ କରିବାକୁ, ଶତ୍ରୁର ସେନାମାନଙ୍କୁ ସାମନା କରିବାକୁ, ସ୍ଥଳ ଓ ଆକାଶକୁ ବେଖାତିର କରିବାକୁ, ମୃତ୍ୟୁକୁ ଉପହାସ କରିବାକୁ । ବ୍ୟକ୍ତିଗତ କାମନାର ସିଦ୍ଧି ଲାଗି ଯେଉଁମାନେ ଏହାର ପାଞ୍ଚଜନ୍ୟ ଫୁଙ୍କି ଜନଗଣଙ୍କୁ ପ୍ରତାରିତ କରନ୍ତି, ସେହି ନରାଧମମାନେ ଇତିହାସର ଅକ୍ଷମଣୀୟ ଅପରାଧୀ ।"

ସନ୍ଦେହବାଦୀ ଶତ୍ରୁଙ୍କୁ ଏଠାରେ ରଘୁନାଥ ଦାସ ଏହାଠାରୁ ସ୍ପଷ୍ଟତର କରିଦେଇ ପାରନ୍ତି କି ???

ତାଙ୍କ ଲେଖା ପ୍ରକାଶ ପାଉଥିବା କୌଣସି ଏକ ପ୍ରତିଷ୍ଠିତ ମାସିକରେ କିନ୍ତୁ 'ପୁନଶ୍ଚ' ଗ୍ରନ୍ଥର ସମୀକ୍ଷା ହୋଇପାରି ନଥିଲା । ସମୀକ୍ଷା ପାଇଁ ସେଥି କପି ମୋ ଉପସ୍ଥିତିରେ ଦିଆଯାଇଥିଲା, ତାହା ଛପା ପଡ଼ି ଯାଇଥିଲା କେଉଁ ତଳେ ।

କିନ୍ତୁ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର ମୁଖପତ୍ର 'କୋଣାର୍କ'ରେ 'ପୁନଶ୍ଚ'ର ଗ୍ରନ୍ଥ-ସମୀକ୍ଷା ପ୍ରକାଶ ପାଇଥିଲା । ହେଲେ ତାହା ଏପରି ଉଦ୍ଦେଶ୍ୟମୂଳକ ଓ ଅପମାନ ଜନକ ଥିଲା ଯେ ସାଧନାର ସ୍ୱୀକୃତିକୁ ପ୍ରତ୍ୟାଖ୍ୟାନ କରି କବିଙ୍କୁ ଆପଣାର ସ୍ୱାଭିମାନ ଓ ଆତ୍ମସମ୍ମାନ ରକ୍ଷାକରିବାକୁ ପଡ଼ିଥିଲା । 'ପୁନଶ୍ଚ'ର ସମୀକ୍ଷାରେ କବିଙ୍କୁ ଅଭିଯୁକ୍ତ କରାଯାଇ କୁହାଯାଇଛି — ସେ କୁଆଡ଼େ ପୂର୍ବସୂରୀମାନଙ୍କର ଭାଷା ଓ ଛନ୍ଦ ଆହରଣ, ସ୍ଥଳ ବିଶେଷରେ ଅପହରଣ କରି କବିତା ରଚନା କରିଛନ୍ତି । କିନ୍ତୁ ପ୍ରଶ୍ନଉଠେ ସଚ୍ଚିଦାନନ୍ଦ ରାଉତରାୟ କଣ ପୂର୍ବସୂରୀ ? ✻ ପ୍ରତ୍ୟେକ କବି ସାହିତ୍ୟିକର ଭାଷା କଣ ସ୍ୱତନ୍ତ୍ର ?? ଭାଷା କଣ ଅପହୃତ ହୋଇପାରେ ??? ଭିନ୍ନ ଅର୍ଥରେ, ଯଦି କେହି କବିଙ୍କର କୌଣସି କବିତାର ଶବ୍ଦ କେତୋଟି ଅନ୍ୟ କେଉଁଠି ଆସିଗଲା ସେଥିପାଇଁ କଣ ଅଭିଯୁକ୍ତ ହେବାକୁ ପଡ଼ିଥାଏ ? ଗଡ଼ନାୟକଙ୍କ ଠାରୁ ସେ କେଉଁଠି ଆହରଣ ବା ଅପହରଣ କରିଛନ୍ତି ? ଅନୁରୂପ ବିଗ୍ରହରେ ତାହେଲେତ ଓଡ଼ିଆ ସାହିତ୍ୟର କାବ୍ୟ-ଜଗତକୁ ଅନେକ କ୍ଷେତ୍ରରେ ମହାକାଳର ବିଗ୍ରହଣାର ସାମ୍ନା କରିବାକୁ ପଡ଼ିବ ; କେବଳ ରଘୁନାଥ ଦାସ ଏକୁଟିଆ କାହିଁକି ???

✻ ତାଙ୍କର ଏହି ସମାଜଦର୍ଶନକୁ ସେହି ସମୟରେ ବୃନ୍ଦାବନ ପଟ୍ଟନାୟକ, ରାମପ୍ରସାଦ ସିଂହ, ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀ, ମନମୋହନ ମିଶ୍ର, ରଘୁନାଥ ଦାସ ପ୍ରମୁଖ ସାହିତ୍ୟରେ ପ୍ରକାଶ କଲେ । ('ଭଗବତୀ ପରିକ୍ରମା : ଓଡ଼ିଆ ସମାଜବାଦୀ ସାହିତ୍ୟରେ ବିପ୍ଳବୀ ଭଗବତୀ ଚରଣ : ଏକ ପରିଧ୍ୱନି । ଲେ:— ବୈଷ୍ଣବ ଚରଣ ସାମଲ, ପୃ: ୬୧ )

ରଘୁନାଥ ଦାସ ସଙ୍ଗେ ସଙ୍ଗେ ସେ ସମୀକ୍ଷାର ପ୍ରତିବାଦ ପଠାଇଥିଲେ । କିନ୍ତୁ 'କୋଣାର୍କ'ରେ ତାହା ପ୍ରକାଶ ପାଇ ନଥିଲା । ଯେଉଁଠି କାବ୍ୟଗ୍ରନ୍ଥର ସମୀକ୍ଷା ପ୍ରକାଶ ପାଇପାରେ, ସେଠାରେ ପ୍ରତିବାଦଟି ପ୍ରକାଶ ପାଇବାରେ ଅସୁବିଧା କେଉଁଠି ? ଅବଶ୍ୟ ଏହାର ସମୁଚିତ ଉତ୍ତର କେବଳ 'କୋଣାର୍କ'ର ସମ୍ପାଦକହିଁ ଦେଇପାରିବେ ।

୧୯୮୪ ମସିହାରେ 'ଓଡ଼ିଶା ସାହିତ୍ୟ ଏକାଡେମୀ' ତରଫରୁ ତାଙ୍କୁ ସମ୍ମାନ-ସୂଚକ ମାନପତ୍ର ଦିଆଯିବାର ସିଦ୍ଧାନ୍ତ ନିଆଯାଇ ନିମନ୍ତ୍ରିତ କରାଗଲା । ନିମନ୍ତ୍ରଣର ପ୍ରତ୍ୟୁତ୍ତରରେ କବି ରଘୁନାଥ ଦାସ ଲେଖିଲେ—

ସମ୍ପାଦକ, ଓଡ଼ିଶା ସାହିତ୍ୟ ଏକାଡେମୀ ସମୀପେଷୁ ।

ମହାଶୟ,

ଆପଣଙ୍କ ତା ୩୦-୭-୮୪ ରିଖ ନିମନ୍ତ୍ରଣ ମୋର ହସ୍ତଗତ ହୋଇଛି ।

ଆଶାକରେ, ଆପଣଙ୍କ ଅନୁଷ୍ଠାନର ମୁଖପତ୍ର 'କୋଣାର୍କ'ରେ ପ୍ରକାଶିତ 'ପୁନଶ୍ଚ'ର ସମୀକ୍ଷା ଉପରେ ମୋର ପ୍ରତିବାଦପତ୍ର ଆପଣଙ୍କ ହସ୍ତଗତ ହୋଇଥିବ ନିଶ୍ଚୟ । ଉପରୋକ୍ତ ସମୀକ୍ଷାରେ ମୋର ସାହିତ୍ୟ ସାଧନା ବିଷୟରେ ଯେ ମନ୍ତବ୍ୟ ପ୍ରକଟିତ ହୋଇ, ତଦନୁଯାୟୀ ମୋର ପୂର୍ବସୂରି(?)ଙ୍କର ଭାଷା ଓ ଛନ୍ଦ ଆହରଣ, ସ୍ଥଳ ବିଶେଷରେ ଅପହରଣ କରି ମୁଁ ମୋର କବିତା ରଚନା କରିଛି । ଆପଣଙ୍କ ବିବୃରଣା ଯଦି ଠିକ୍ ହୋଇଥାଏ, ତେବେ ମୋର ସାଧନା କଦାପି 'ମହନୀୟ' ନୁହେଁ, ତାହା ଗର୍ହିତ ଓ ନିନ୍ଦନୀୟ । ଏଣୁ 'ମହନୀୟ ସାଧନା' ଲାଗି ଆପଣଙ୍କ ଅନୁଷ୍ଠାନ ତରଫରୁ ଯେଉଁ ସମ୍ବର୍ଦ୍ଧନାର ଆୟୋଜନ କରାଯାଇଛି, ତାହା ଗ୍ରହଣ କରିବାକୁ ମୋର ଯୋଗ୍ୟତା ନାହିଁ । କ୍ଷମା କରିବେ, ଆପଣଙ୍କ ଅନୁଷ୍ଠାନର ନିମନ୍ତ୍ରଣ ମୋର ଗ୍ରହଣଯୋଗ୍ୟ ନୁହେଁ ।

କଳୁଷିତ ମସୀର କାଞ୍ଚନ-ପଞ୍ଜିକାରେ କି ଦରକାର ?

ଏଷା ଯଦି ବିବୃରଣୀ
ଦେଶାୟ ତସ୍ମୈ ନମଃ । ଇତି ।

ଭବଦୀୟ
ରଘୁନାଥ ଦାସ

ଏଇଠାରେ ହିଁ କବି ରଘୁନାଥ ଦାସ ଆପଣାର ଜ୍ୟୋତିଷ୍ମାନ ଚରିତ୍ରରେ ଭାସ୍ୱର ହୋଇ ଉଠନ୍ତି । ନିଜସ୍ୱ ସ୍ୱାଭିମାନ, ଆତ୍ମସମ୍ମାନ ଓ ଶ୍ରେଣୀ ସଚେତନତାରେ ସେ ଦରବାରୀ ପାଟକୁଣ୍ଡଳର ମୋହ ପରିତ୍ୟାଗ କରି, ଚିରାଚରିତ କରୁଣା-ଗ୍ରହଣ ପରିହାର ପୂର୍ବକ ଆପଣାର ଶକ୍ତ କାବ୍ୟ ଭୂମିରେ ଦୃଢତାର ସହ ଛିଡ଼ା ହୁଅନ୍ତି । ଏଇଠାରେହିଁ ସେ ଆମ ପାଇଁ ହୋଇଯାଆନ୍ତି ନିଜର, ଜୀବିତାବସ୍ଥାରୁ ହୋଇଯାଆନ୍ତି ପ୍ରେରଣାର କିମ୍ବଦନ୍ତୀ ।

ଏତିକରେ ଯେ ତାଙ୍କୁ ସ୍ଥାନ ପ୍ରତିପାଦିତ କରିବାର ଉଦ୍ୟମରେ ଛେଦ ପଡ଼ିଥିଲା ତାହା ନୁହେଁ — 'ଇସ୍ତାହାର' ଭଳି ପତ୍ରିକାରେ ମଧ୍ୟ ତାଙ୍କୁ କଟୁ ସମାଲୋଚନା କରାଯାଇଥିଲା ଅନ୍ତିମ ଜୀବନରେ ।

ମେ ତା ୨୧।୨୨ ତାରିଖ, ୧୯୮୩ ମସିହାରେ ରାଜମହେନ୍ଦ୍ରୀରେ ଅନୁଷ୍ଠିତ ହେଲା P. L. C. F. ( People's Literary and Cultural Federation, Andhra )ର ଚତୁର୍ଥ ରାଜ୍ୟ ସମ୍ମିଳନୀ । ସାହିତ୍ୟିକ ରଘୁନାଥ ଦାସ ସେଠାକୁ ନିମନ୍ତ୍ରିତ ହୋଇ ଯାଇଥିଲେ ଉଦ୍‌ଘାଟକ ଭାବେ । ପ୍ରଗତିଶୀଳ ଶିଳ୍ପୀ, ସାହିତ୍ୟିକମାନଙ୍କ ପାଇଁ ତାହା ଥିଲା ସର୍ବଭାରତୀୟ ସମ୍ମାନର ସମତୁଲ ।

ତା ୧୫-୭-୮୪ ତାରିଖରେ ରାଜଧାନୀ ଭୁବନେଶ୍ୱରକୁ ଆହ୍ୱାନ କରାଗଲା 'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ'ର ରାଜ୍ୟ କନ୍‌ଭେନ୍‌ସନ । ସେଠାରେ O. P. D. R. (Organisation for Protection of Democratic Rights)ର ଯେଉଁ ସାଂଗଠନିକ ରୂପ ଦିଆଗଲା, ସେଥିରେ ରଘୁନାଥ ଦାସ ସର୍ବସମ୍ମତି କ୍ରମେ ନିର୍ବାଚିତ ହେଲେ ସଭାପତି ଭାବେ । ସେ ହିଁ ହେଉଛନ୍ତି OPDRର ପ୍ରତିଷ୍ଠାତା ସଭାପତି । OPDR ପ୍ରତି ତାଙ୍କର ଅକୃତ୍ରିମ ମମତା, ସ୍ୱଳ୍ପ କେତେମାସର ସଭାପତିତ୍ୱ କଥା ଭାବିଲେ ଆଜି ବି ଶୋକସାଗରରେ ଭାସିଯାଉ ଆମ୍ଭେମାନେ ।

୧୯୮୪ ମସିହା ନଭେମ୍ବର ୯ ତାରିଖରେ କବି ଲଭିଲେ ମହାପ୍ରସ୍ଥାନ । ଓଡ଼ିଆ ସାହିତ୍ୟର ସେହି ଅମ୍ଳାନ ଲଲ୍‌ତାରା ଚିରତରେ ବିଦାୟ ଗ୍ରହଣ କଲେ ଆମ ମେଳରୁ । କିନ୍ତୁ ତ୍ୟାଗନିଷ୍ଠ-ସାଧନାର ପ୍ରତିବଦଳରେ ସେ ଏ ଜାତିଠାରୁ ପାଇଲେ କଣ ? ଏକଥା ଭାବିଲେ ଚରମ ଦୁଃଖ, ଗ୍ଳାନି ଓ ଲଜ୍ଜାରେ ମସ୍ତକ ଅବନତ ହୋଇପଡ଼େ । ମନେପଡ଼େ, ପଡ଼ୋଶୀ ରାଜ୍ୟର କବି ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ କଥା — ମାତ୍ର ୨୧ ବର୍ଷ ବୟସରେ ତାଙ୍କର ଘଟିଥିଲା ଜୀବନାବସାନ ! ଅଥଚ ମତାଦର୍ଶ ନିର୍ବିଶେଷରେ ତାଙ୍କର ସମ୍ମାନଜନକ ଆସନ, ଆଜି କେବଳ ବଙ୍ଗଳାରେ ନୁହେଁ; ସମଗ୍ର ଭାରତ ଖଣ୍ଡରେ ସର୍ବଜନସ୍ୱୀକୃତ ।

କିନ୍ତୁ ଅନ୍ୟ ଏକ ଦୃଷ୍ଟିରୁ ନିଶ୍ଚିନ୍ତ ହେବାକୁ ହୁଏ ଏଇଥିପାଇଁ ଯେ— ଶତ୍ରୁ ତାଙ୍କୁ ଯେତିକି ଘୃଣା କରୁଥିଲା, ତାଠାରୁ ସେ ଅଧିକ ଘୃଣା କରୁଥିଲେ ଶତ୍ରୁକୁ । ତାଙ୍କର ଶେଷ ସଂଗ୍ରାମ ଯେ ଠିକ ପଥରେ ଚାଲିଥିଲା ଏହା ହିଁ ତାର ଜ୍ୱଳନ୍ତ ପ୍ରମାଣ ।

ମୁଁ ତାଙ୍କ କାବ୍ୟ-ପ୍ରତିଭାର ପ୍ରଚଣ୍ଡ ମଧ୍ୟାହ୍ନକୁ ଭେଟିନାହିଁ । ତାଙ୍କର ସେଦିନର ସେହି ଶୌର୍ଯ୍ୟମିସ୍ତ୍ର, ଧର୍ମ୍ମିମନ୍ତ୍ର ଗଳ୍ପ, ନାଟକ, ଏକାଙ୍କିକା ଅଥବା ପ୍ରବନ୍ଧ, ଇତିମଧ୍ୟ ହୁଏତ ଅନେକ କବିତା ପଢ଼ିବାରୁ ମଧ୍ୟ ମୁଁ ବଞ୍ଚିତ । କିନ୍ତୁ ଭେଟିଛି ଜୀବନ-ସାୟାହ୍ନରେ ସେହି ଦରଦୀପ୍ରାଣ 'ଜଟାୟୁ'ଙ୍କୁ । ପ୍ରତିବୋଧ ଯେତେବେଳେ ପ୍ରବୁଦ୍ଧ— ସେ ଛିନ୍ନପକ୍ଷ ଓ ଏକାକୀ ହେଲେବି ଝଡ଼ର ସଂଗୀତରେ ଗୁଞ୍ଜରି ଉଠିଚନ୍ତି—

ଡେନାପକ୍ଷ ଛିଡ଼ିଗଲା ;
ଛିଡ଼ିଯାଉ ;
ନାହିଁ ମୋ ଶୋଚନା ;
ମୁଁ ରହିବି ଯୁଗେ ଯୁଗେ
ଯୁଯୁତ୍ସୁର
ଜ୍ୱଳନ୍ତ ପ୍ରେରଣା ।

ଲେଖିବ ବାଲ୍ମୀକି :
ସଂସ୍ଥା ଲାଗି ପକ୍ଷୀ ଏକ
ରାମ ଆଗୁଁ ଯୁଝିଥିଲା ବୀରଣବାହୁ ପ୍ରତିପକ୍ଷେ ;
ଯୁଝିଛୁ ଏକାକୀ ।
ଏକକ ସେ ସେନା ;
ପକ୍ଷେ ସତ୍ୟ, ପକ୍ଷେ ନ୍ୟାୟ
ଅବିନୀତ ଜଟାୟୁର ଡେଣା ।

□ □ □

"ଭାରତର ସିଂହାସନେ ଲାଞ୍ଛିତ କଂସର ଦାୟାଦ
ଛଦ୍ମବେଶୀ ଲକ୍ଷଭାର ପଦ୍ମଲାଗି କରୁଛି ବିବାଦ ;
ଆନେକର ସଦ୍ୟଜାତ ଶିଶୁଟିର ରୋଧିବାକୁ ଶ୍ୱାସ
ଗ୍ଲାଳିଛି ଚକ୍ରାନ୍ତ ଗୂଢ଼ ରୋଧିବାକୁ ଜୀବନ-ଆକାଶ ।
ତେଣୁ ଯାତ୍ରୀ, ଆଗୁଁ ହୁସିଆର !
ଜାଗ୍ରତ ଜନତା ମେଳେ ଗ୍ଲାଲ୍ ବନ୍ଧୁ, ହୁଅ ଆଗୁସାର !!"

( ଅଗଷ୍ଟ ପନ୍ଦର )

# ଏକାକୀ ଜଟାୟୁ

## ସୁଶୀଲ ରାୟ

ହଠାତ୍ ଖବରଟିଏ— ରଘୁବାବୁ ଚାଲିଗଲେ । ନଭେମ୍ବର ୯ ତାରିଖ ୧୯୮୪ ମସିହା । ସ୍ୱନାମଧନ୍ୟ କବି, ଲେଖକ, ଆଇନଜ୍ଞ ରଘୁନାଥ ଦାସ । ସିଏ ଓଡ଼ିଶାର ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନର ପ୍ରଥମ ସଭାପତି ଥିଲେ । ଶେଷଯାଏଁ ସଂଗଠନକୁ ଉଚିତ ମାର୍ଗରେ ଆଗେଇ ନେବା ପାଇଁ ପ୍ରେରଣା ଦେଇ ଚାଲିଥିଲେ ।

ନୀରବ ମନୀଷୀ ରଘୁବାବୁ । ଅପ୍ରତ୍ୟାଶିତ ତାଙ୍କର ଏଇ ବାହୁଡ଼ା ପର୍ବ । ତାଙ୍କର ଏଇ ଅନନ୍ତ ନୀରବତାକୁ କୋଳାହଳମୟ ନକରି ଆମେ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ସବୁକୁ ଆଗେଇ ନେଲୁ । ଏଇ କାର୍ଯ୍ୟକ୍ରମମାନଙ୍କୁ ସଫଳ କରିବା ହିଁ ତାଙ୍କ ପ୍ରତି ଆମର ନୀରବ, ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ।

ଦ୍ୱିତୀୟ ବାର୍ଷିକ ପୁଣ୍ୟତିଥିରେ ଶୁଣିଲି ତାଙ୍କର ଅମର ସ୍ମୃତି ଉଦ୍ଦେଶ୍ୟରେ ସ୍ମରଣିକାଟିଏ ପ୍ରକାଶ ପାଇବ ବାଲେଶ୍ୱରରୁ, 'ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ'ର ଆନୁକୂଲ୍ୟରେ । ସେଥିପାଇଁ ଆମ ସଂଗଠନ ତରଫରୁ ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଏଇ ଲେଖାଟି ନିବେଦିତ ।

ଲେଖିବସିଲା ସମୟରେ ତାଙ୍କର ଜୀବନ ଓ ଆମ ସହ ତାଙ୍କର ସମ୍ପର୍କ କଥା ମନେ ପଡ଼ୁଛି । ଆମ ମେଳରେ ତାଙ୍କର କାର୍ଯ୍ୟକ୍ଷମ ଦିନଗୁଡ଼ିକୁ କଳ୍ପନା କଲାବେଳେ ତାଙ୍କର କବି ଜୀବନହିଁ ଦୃଷ୍ଟି ପଥାରୂଢ଼ ହେଉଛି । ସେଇ କବି-ମନୀଷୀଟିର ସମଗ୍ର କାର୍ଯ୍ୟକଳାପ ମଧ୍ୟରେ ଯେତେବେଳେ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ପରି ଏକ ରାଜନୈତିକ କାର୍ଯ୍ୟକ୍ରମର ପ୍ରବାହ ଖୋଜିବା ଦରକାର ପଡ଼େ, ସେତେବେଳେ ସମସ୍ତଙ୍କ ଅଲକ୍ଷ୍ୟରେ ତାଙ୍କ ବୁକୁ ଭିତରେ ମୁକ୍ତିମୁଖର ସାହିତ୍ୟ ସାଧନାର ଯେଉଁ ଘୂର୍ଣ୍ଣିଝଡ଼ ସଦାବେଳେ ତାଙ୍କୁ ଅସ୍ଥିର କରି ପକାଉଥିଲା, ତାହା କଳନ କରିବା ସମ୍ଭବ ନୁହେଁ । ତାହା କଳନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ମାତ୍ର ଏକ ସଂଗଠିତ ରାଜନୈତିକ କାର୍ଯ୍ୟକ୍ରମକୁ ସିଏ ଯେପରି ଭାବରେ ସାବଲୀଳ ଓ ଗତିଶୀଳ କରି ପାରିଥିଲେ, ତାହା ଏବେ କଳ୍ପନା କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ।

## ମୂର୍ଚ୍ଛାର ଜଟାୟୁ ପକ୍ଷୀ

ତାଙ୍କୁ ମୁଁ ଜାଣିଲି ୧୯୭୩ ମସିହାରେ । ଥାକ ଥାକ ଅଂଗନ ବନ୍ଧର କଙ୍କାଳ, ଅଥଚ ପରିଚ୍ଛନ୍ନ ପରିବେଶ ମଧ୍ୟରେ ବସିଥିବା ସେଇ କ୍ଷୁଦ୍ରକାୟ ଜଟାୟୁ ପକ୍ଷୀଟି ଯେ ଚେତନାର ଏକ ଉତ୍ତୁଙ୍ଗ ଶିଖର, ସେତେବେଳେ ହୁଏତ ମୁଁ ଭାବିପାରି ନଥିଲି । ମୁଁ ଯାହାଙ୍କ ସହ ଯାଇଥିଲି, ତାଙ୍କ ପାଟିରୁ ରଘୁବାବୁଙ୍କ ପରିଚୟ ଠିକ୍ ଠିକ୍ ଶୁଣିଥିଲି । କିନ୍ତୁ ତାଙ୍କ ଜୀବନର ଶେଷ ୧୦ ବର୍ଷ ମଧ୍ୟରେ ତାଙ୍କୁ ଯେତେ ଅଧିକ ଜାଣିଲି, ସେତେ ଅଭିଭୂତ ହୋଇ ପଡ଼ିଲି । ମୋର ତାରୁଣ୍ୟ ଓ ଯୌବନର ଚଞ୍ଚଳ ବର୍ଷମାନଙ୍କରେ ସେଇ ଉଡ଼ନ୍ତ ଜଟାୟୁ ପକ୍ଷୀଟିର ଅସ୍ପଷ୍ଟ ଛାୟା ଯେ ଏପରି ସ୍ପଷ୍ଟ ଭାବରେ ବାରିହୋଇ ପଡ଼ିବ ସେ କଥା ମଧ୍ୟ ଚିନ୍ତା କରିପାରି ନଥିଲି ।

ତାଙ୍କ ପାଖରୁ ପ୍ରଥମ ଶୁଣିଥିଲି କେଉଁ ଆଦିମ ରାମାୟଣ କାଳର ରାବଣ-ଜଟାୟୁ ଯୁଦ୍ଧର ଅବତାରଣା କଥା ବ୍ରିଟିଶ ମାଗ୍ନାକାର୍ଟାରେ । ଆଦ୍ୟ ତ୍ରୟୋଦଶ ଶତାବ୍ଦୀରେ ଲଣ୍ଡନର କେଉଁ ଏକ ଅଖ୍ୟାତ ରାସ୍ତାରେ ସେଇ ଉଜ୍ଜ୍ୱଳ ଦୀପ୍ତିମନ୍ତ ମଣିଷଟି ଅତ୍ୟାଚାରୀ ରାଜପୁରୁଷର ଘୋଡ଼ାର ଲଗାମ ଧରି ଅଟକାଇଥିଲା । ପ୍ରତିବାଦ ଜଣାଇଥିଲା । ଦାବି କରିଥିଲା ରାଜପୁରୁଷମାନଙ୍କର ଏକ ଆଚରଣବିଧି ତିଆରି କରିବା ଲାଗି, ମାନବ ଜାତିର ସକଳ ପ୍ରକାର ଅଧିକାରକୁ ସ୍ୱୀକୃତି ଦେବାଲାଗି । ସେଇ ପ୍ରତିବାଦ କ୍ରମଶଃ ଜମାଟ ବାନ୍ଧିଲା ଓ ଅତ୍ୟାଚାରୀ ରାଜତନ୍ତ୍ରକୁ ଉତ୍ଖାତ କରିବା ପାଇଁ ଏକ ତୀବ୍ରତର ଆନ୍ଦୋଳନରେ ରୂପାନ୍ତରିତ ହେଲା । ପରିଶେଷରେ ବ୍ରିଟିଶ ବ୍ୟାରନମାନଙ୍କ ଚାପରେ ରାଜା ଜନ୍ ଲିପିବଦ୍ଧ କଲେ ମାନବଜାତିର ଅଧିକାର । ସେଦିନ ଥିଲା ଜୁନ ୧୫, ୧୨୧୫ ମସିହା ।

ସେଠି ପ୍ରତିପକ୍ଷର ବଳ, ନିଜର କ୍ଷମତା, ରଣକୌଶଳ ଆଦି ଜଟିଳ ପ୍ରଶ୍ନମାନ ଗୁରୁତ୍ୱ ପାଇ ନଥିଲା । ତାହାଥିଲା ଏକ ନିର୍ଭୀକ ପ୍ରତିବାଦ । ଯେ କୌଣସି ଅବିଚାରର ପ୍ରତିବାଦ କର । ବିନା ପ୍ରତିବାଦରେ ଅନ୍ୟାୟକୁ ଆଗେଇ ଯିବାକୁ ଦିଅନା । ଏଇ ସବୁ ପ୍ରତିବାଦ କ୍ରମେ ସଂଗଠିତ ପ୍ରତିରୋଧର ରୂପନେବ । ଏଇଟା ଥିଲା ଅନାଗତ ମହାକାଳ ପାଇଁ ନିର୍ଦ୍ଦେଶ । ରଘୁବାବୁ ଥିଲେ ସେହିଭଳି ଏକ ପ୍ରତିବାଦର ଭାଷା ଓ ଗଣତାନ୍ତ୍ରିକ ଚେତନାର ଆତ୍ମା । ଏଇ ପ୍ରତିବାଦୀ ଚେତନାରୁହିଁ ସେଇ କ୍ଷୁଦ୍ର ଜଟାୟୁ ପକ୍ଷୀଟିର ଜନ୍ମ, ଯିଏ ପ୍ରବଳ ପ୍ରତିପକ୍ଷ ରାବଣ ବିରୋଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲା । ଏଇ ଛୋଟ ପକ୍ଷୀଟିର 'ଶହୀଦ'ର ଗୌରବ ନେବାକୁ ଇଚ୍ଛା ନଥିଲା । ପୂର୍ବତନ ସଂଗ୍ରାମୀର ତାମ୍ରଫଳକ ବାହୁରେ ଟାଙ୍ଗି ଭତ୍ତା ପାଇବାର ଆକାଂକ୍ଷା ନଥିଲା । ପ୍ରମତ୍ତ ରଣାଙ୍ଗନରେ ପରାକ୍ରମୀ ଦଶଶିର ରାବଣକୁ ପରାସ୍ତ କରିବାର ଧୃଷ୍ଟତା ମଧ୍ୟ ନଥିଲା । କେବଳ ଥିଲା

ପ୍ରତିବାଦ । ଅନ୍ୟାୟର ପ୍ରତିବାଦ । ବୁକୁ ଭିତରେ ସ୍ଥିର ବିଶ୍ୱାସ ଥିଲା, ଆଗାମୀ ଦିନମାନଙ୍କରେ ଏଇ ପ୍ରତିବାଦ କ୍ରମଶଃ ସଂଗଠିତ ପ୍ରତିରୋଧର ରୂପ ନେବ । ଧର୍ମର ବିଜୟ ହେବ । ରଘୁବାବୁ ନିଜେ ଏଇ ଭିତ୍ତି ସ୍ଥାପନ ପାଇଁ ଜୀବନର ଶେଷ ମୁହୂର୍ତ୍ତ ଯାଏ ଅବିରତ ଚେଷ୍ଟାକରିଛନ୍ତି ।

ରଘୁବାବୁଙ୍କ ପ୍ରେରଣାରେ ଓଡ଼ିଶା ତଥା ଓଡ଼ିଶା ବାହାରର କେଇ ଜଣ ଓଡ଼ିଆ ବନ୍ଧୁଙ୍କ ସହଯୋଗରେ ୧୯୭୭ ମସିହାରେ ଗଠିତ ହେଲା 'ମାନବିକ ଅଧିକାର ପରିଷଦ ।' ପରେ କିନ୍ତୁ 'ମାନବିକ ଅଧିକାର' ନାଁରେ ସାରା ବିଶ୍ୱରେ ଚାଲିଥିବା ଧପ୍‌ପାବାଜି ସଂପର୍କରେ ଜାଣିବା ପରେ ଆମେ ସବୁ ବିବ୍ରତ ହୋଇ ପଡ଼ିଥିଲୁ । ପୂର୍ବରୁ ଥିବା 'ନାଗରିକ ସ୍ୱାଧୀନତା ଓ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସମିତି'ରେ ଏକ ବିପର୍ଯ୍ୟୟ ଘଟିଲା । ଜନତାପାର୍ଟିର ସରକାର ସେତେବେଳେ ଦେଶ ଶାସନ କରୁଥିଲା । ନାଗରିକ ସ୍ୱାଧୀନତା ଓ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ପାଇଁ ଦାବି କରୁଥିବା ବହୁ ଲୋକ କେନ୍ଦ୍ର ଓ ପ୍ରାଦେଶିକ ଶାସନରେ ମନ୍ତ୍ରୀ ଓ ବିଧାୟକ ଥିଲେ । ସେମାନଙ୍କ ପାଇଁ ଆଉ ନାଗରିକ ସ୍ୱାଧୀନତା ରକ୍ଷା ଆନ୍ଦୋଳନ ଆବଶ୍ୟକ ନଥିଲା । ପୂର୍ବ ସଂଗଠନକୁ ଆମ ଭିତରୁ କେତେକ ପୁନର୍ଗଠନ କରିବାକୁ ପ୍ରସ୍ତାବ ଦେଇଥିଲେ, କିନ୍ତୁ ତାହା ହେଲାନାହିଁ ।

ଏ ଭିତରେ ବାଲେଶ୍ୱରରୁ କବି ବ୍ରଜନାଥ ରଥ ପ୍ରମୁଖଙ୍କ ସଂପାଦନାରେ 'ମାନବିକ ଅଧିକାର' ନାମରେ ଏକ ବୁଲେଟିନ ମଧ୍ୟ ପ୍ରକାଶିତ ହେଲା । କିନ୍ତୁ ପରେ ଏଇ ନାଁରେ ଆଉ ସଂଗଠନ ନ ରଖିବାକୁ ଆମେ ନିଷ୍ପତ୍ତି ନେଲୁ ।

### ସତ୍ୟ ଲାଗି ଯୁଝିବି ମୁଁ

ଏଇ ପର୍ଯ୍ୟାୟରେ ରଘୁବାବୁଙ୍କର ଅସଲ କାର୍ଯ୍ୟ ଆରମ୍ଭ ହେଲା । ଓଡ଼ିଶାର ବିଭିନ୍ନ ମହଲରେ ନାଗରିକ ସ୍ୱାଧୀନତା, ମାନବିକ ଅଧିକାର ଓ ଗଣତାନ୍ତ୍ରିକ ଅଧିକାର ଆଦି ଦୃଷ୍ଟିଭଙ୍ଗୀର ତାତ୍ତ୍ୱିକ ଭିତ୍ତି, ସାଂଗଠନିକ ରୂପରେଖ ଓ କାର୍ଯ୍ୟକ୍ରମର ବ୍ୟାପ୍ତି ସମ୍ପର୍କରେ ଆଲୋଚନାର ବେଶ୍ ଝଡ଼ ଉଠିଲା । ଆମ ପାଇଁ ରଘୁବାବୁ ଥିଲେ ଦିଗ୍‌ଦର୍ଶକ । ଏଇ ୩-୪ ବର୍ଷ ଭିତରେ ଆମେ କଟକରେ 'ଅନୁଶୀଳନ' ନାଁରେ ଏକ ଆଲୋଚନାଚକ୍ର ସ୍ଥାପନା କରିଥିଲୁ । ରଘୁବାବୁ ଏହାର ପ୍ରାଣକେନ୍ଦ୍ର ଥିଲେ । ଡ଼ଃ ନୀଳମାଧବ ଦାସ ଥିଲେ ଏହାର ସଂଗଠକ । ବିଭିନ୍ନ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସ୍ୱାସ୍ଥ୍ୟଗତ ସମସ୍ୟା ସମ୍ପର୍କରେ ବେଶ୍ ପ୍ରାଣବନ୍ତ ଆଲୋଚନା ହେଉଥିଲା । ଯେତେ ଅସୁବିଧା ଥିଲେ ବି ରଘୁବାବୁ ପ୍ରତ୍ୟେକ ବୈଠକରେ ଯୋଗ ଦେଉଥିଲେ । ପ୍ରତ୍ୟେକ ସମସ୍ୟା, ପ୍ରତ୍ୟେକ ବିଷୟବସ୍ତୁ ଉପରେ ତାଙ୍କର ଅଗାଧ ଜ୍ଞାନ ଆମ ସମସ୍ତଙ୍କର ଚିନ୍ତାଧାରାକୁ ଶାଣିତ କରିବାରେ ସାହାଯ୍ୟ କରିଛି । ପ୍ରତି ଚକ୍ରରେ ରଘୁବାବୁ ଆଗ ଆଲୋଚନା ଆରମ୍ଭ କରୁଥିଲେ ।

ଏଇ ଆଲୋଚନାଚକ୍ର ଆମକୁ ଭାରତ ବର୍ଷରେ ଗଣତାନ୍ତ୍ରିକ ଅଧିକାରର ସୀମାପରିବନ୍ଧ ବିଷୟରେ ଜାଣିବାକୁ ଯଥେଷ୍ଟ ସାହାଯ୍ୟ କରିଛି । ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ପାଇଁ ଏକ ସଙ୍ଗଠିତ ରାଜନୈତିକ କାର୍ଯ୍ୟକ୍ରମକୁ ରୂପାୟିତ କରିବାର ପ୍ରେରଣା ଯୋଗାଇଛି । ରଘୁବାବୁ ଓ ଶୈଳଜାରବିଙ୍କୁ ଛାଡ଼ିଦେଲେ ଆମେ ସମସ୍ତେ ଥିଲୁ ବୟସରେ ତରୁଣ, ଏବଂ ରଘୁବାବୁଙ୍କ ପରି ବୟସ୍କ ବ୍ୟକ୍ତିମାନଙ୍କର ବୈଚିତ୍ର୍ୟମୟ ଅଭିଜ୍ଞତା ଆମକୁ ଯଥେଷ୍ଟ ସମୃଦ୍ଧ କରିଛି । ତାଙ୍କର ପ୍ରେରଣାରେ ସତ୍ୟ ଲାଗି ଯୁଝିବାର କେଉଁ ଅଗ୍ନିସ୍ପୃହା ଆମମାନଙ୍କ ମନରେ ସୃଷ୍ଟି ହୋଇଥିଲା, ତାହା ଆମକୁ ଅଧିକରୁ ଅଧିକ ସଙ୍ଗଠିତ ରାଜନୈତିକ କାର୍ଯ୍ୟକ୍ରମକୁ ରୂପାୟନ ଦିଗରେ ଆଗେଇ ନେଇଛି ।

ଓଡ଼ିଶାର ବିଭିନ୍ନ ଜାଗାରେ ପରିଚିତ ବନ୍ଧୁମାନଙ୍କ ସହ ବିଭିନ୍ନ କାର୍ଯ୍ୟକ୍ରମରେ ଏକାଠି ହେବାବେଳେ ଗଣତାନ୍ତ୍ରିକ ଅଧିକାରର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରି ଚାଲିଥାଉଁ । ରଘୁବାବୁ ଯୁବସୁଲଭ ଉତ୍ସାହରେ ଆମକୁ ସହଯୋଗ କରୁଥାନ୍ତି । ଆମେ ଯଥାସାଧ୍ୟ ଚେଷ୍ଟା କରି ଚାଲିଥାଉ ଏକ ସଂଗଠନ ଗଢ଼ିବା ଲାଗି । ଲଗାତାର ୩/୪ ବର୍ଷର ଚେଷ୍ଟା ଭିତରେ ବିଭିନ୍ନ ସ୍ଥାନରେ ଛୋଟ ଛୋଟ ୟୁନିଟ ସବୁ ଦାନା ବାନ୍ଧି ଆସୁଥାଏ । କେତେକ ଜିଲ୍ଲା ସ୍ତରୀୟ ସଂଗଠନ ମଧ୍ୟ ଗଢ଼ିଉଠିଲା । କ୍ରମଶଃ ସାଂଗଠନିକ ଦାୟିତ୍ୱ ବଢ଼ିଲା । ସଂଗଠନର ବିଭିନ୍ନ ସ୍ଥାନରେ ୟୁନିଟମାନ ଗଢାହେଲା । ଏଇ ପରିପ୍ରେକ୍ଷୀରେ ଏକ ରାଜ୍ୟସ୍ତରୀୟ ସଂଗଠନ ଗଢ଼ିବା ଜରୁରୀ ହୋଇ ପଡ଼ିଲା ।

ଏ ଭିତରେ ସାରା ଭାରତବର୍ଷର କେତେକ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ ଏକ ସର୍ବଭାରତୀୟ ସଂଗଠନ ଗଢ଼ିବା ଚେଷ୍ଟା କରୁଥାଆନ୍ତି । ବିଭିନ୍ନ ରାଜ୍ୟ ସଂଗଠନମାନଙ୍କର ପ୍ରୋଗ୍ରାମ ବେଳେ ଏ ନେଇ ଆଲୋଚନା ଚାଲିଥାଏ । ଶେଷରେ ୧୯୮୨ ମସିହାରେ ଲୁଧିଆନା ବୈଠକରେ ସାରାଭାରତ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ଫେଡେରେଶନ ଗଠିତ ହେଲା । ଏହାର କାର୍ଯ୍ୟକାରୀ କମିଟିରେ ମୁଁ ଓଡ଼ିଶାର ପ୍ରତିନିଧି ରହିଲି ।

"କୋଇ ତୁଫାନ ସେ କହଦେ ମୁଝେ ମିଲଗୟା ମେରା ସାହିଲ୍"

୧୯୮୪ ମସିହା ଜୁଲାଇ ୧୫ ତାରିଖ । ସେଦିନ ଭୁବନେଶ୍ୱରଠାରେ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନର ପ୍ରଥମ ରାଜ୍ୟସ୍ତରୀୟ କନ୍‌ଭେନ୍‌ସନ ଅନୁଷ୍ଠିତ ହେଉଛି । ଧୀର, ନୀରବ ପ୍ରସ୍ତୁତି । ରଘୁବାବୁଙ୍କ ପରାମର୍ଶ— ପ୍ରଚାର ପଛରେ ଧାଇଁଲେ ଚଳିବନି ; ସମ୍ପର୍କ ସୃଷ୍ଟି କରି ଯାଅ ; ପ୍ରଚାର ତୁମ ପଛରେ ଚାଲିବ । ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ପ୍ରତିନିଧିମାନେ ପୂର୍ବ ରାତିରୁ ପହଞ୍ଚିବାରେ ଲାଗିଥାନ୍ତି । ସକାଳ ୯ରୁ କନ୍‌ଭେନ୍‌ସନ ଆରମ୍ଭ ।

୮୫ ଜଣ ପ୍ରତିନିଧି । ସାବ୍ଦାନ କରିଛନ୍ତି ବିଭିନ୍ନ ସାଂଗଠନିକ ସମସ୍ୟା, ଇସ୍ତାହାର ପ୍ରସ୍ତୁତି ଓ କାର୍ଯ୍ୟକ୍ରମ ନିର୍ଦ୍ଧାରଣରେ । ପ୍ରଥମ ରାଜ୍ୟ କମିଟିର ସଭାପତି ହେଲେ ରଘୁନାଥ ଦାସ । ସ୍ୱାଭାବିକ । ଗଣତାନ୍ତ୍ରିକ ଚେତନାର ଏକ ନୀରବ ରୂପକାରଙ୍କୁ ରାସ୍ତାକୁ ଓହ୍ଲାଇବାକୁ ପଡ଼ିବ । ରଘୁବାବୁ ଦୃଢ଼ଚିତ୍ତରେ ଏହି କାର୍ଯ୍ୟଭାର ଗ୍ରହଣ କରିଥିଲେ । ଶାନ୍ତ ସମାହିତ ଭାଷାରେ ଉପସ୍ଥିତ ପ୍ରତିନିଧିମାନଙ୍କୁ ସତ୍ୟର ପ୍ରତିଷ୍ଠା ପାଇଁ ଲଗାତାର ସଂଗ୍ରାମ ଚଳାଇଯିବାକୁ ଆହ୍ୱାନ କରିଥିଲେ । ଏହି କ୍ଷୁଦ୍ର ଜଟାୟୁ ପକ୍ଷୀଟିର ଅସମ-ରଣାଙ୍ଗନରେ ଏକାକୀ ଯୁଝିବାର ପ୍ରକ୍ରିୟା ଶେଷହେଲା । ଏକାକୀ ଜଟାୟୁମାନେ ସଂଗଠନ ଭିତରେ ଏକୀଭୂତ ହୋଇଗଲେ । ଆଉ ଏକାକୀ ଜଟାୟୁର ପ୍ରତିବାଦ ନୁହେଁ । ସତ୍ୟ ଲାଗି ଯୁଝିବାର ଅଭିପ୍ସାକୁ ରୂପାୟିତ କରିବାକୁ ଆମେମାନେ ସୃଷ୍ଟି କଲୁ ଆମର ମଙ୍ଗୁଆଳ । ଓଡ଼ିଶାର ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ ଆମର ସାହିଲ୍ —ମଙ୍ଗୁଆଳ ।

ଜୁଲାଇ ୧୫ ତାରିଖ, ୧୯୮୪ ମସିହା । ସମଗ୍ର ମାନବଜାତିର ଏକ କଳଙ୍କିତ ପ୍ରଭାତ । ଓଡ଼ିଶାର ଆକାଶରେ ମଣିଷପଣିଆର ଦୀନତା ଦେଖି ସୂର୍ଯ୍ୟ ବି ଗୁମୁରି ଗୁମୁରି କାନ୍ଦୁଥିଲା । ଆମେ ସ୍ୱପ୍ନରେ ବି ଭାବିନଥିଲୁ, ଏପରି ଏକ ଚରମ ଦୁର୍ଯ୍ୟୋଗରେ ଆମେ ଘରି ଟାଣପଣ କରି ଡଂଗାରେ ପାଲ ଭିଡ଼ୁଛୁ । ପୂର୍ବରାତିର ବିଳମ୍ବିତ ପ୍ରହରରେ ଯେତେବେଳେ ସାରା ଓଡ଼ିଶାର ମଣିଷ ଗଭୀର ନିଦ୍ରାରେ ସୁପ୍ତ, ଆମେ ନିମଗ୍ନ ଥିଲୁ ଆମର ମଞ୍ଚ ସଜାଡ଼ିବାରେ । ଠିକ୍ ସେତିକିବେଳେ ବୁର୍ଲାଠାରେ ଚାଲିଥାଏ ଗୁପ୍ତମେଧ ଯଜ୍ଞର ନାରକୀୟ ତାଣ୍ଡବଲୀଳା । ମଞ୍ଚ ଠିକ୍ କରକରି, ସଂଧ୍ୟାବେଳକୁ ଘଟଣାଟି ଜାଣିଗଲୁ । ଆଉ ପାଲ ଭିଡ଼ିବାକୁ ବେଳ ନାହିଁ । ଅଣ୍ଟାରେ କପଟା ଖଣ୍ଡିଏ ଲେଖାଏଁ ଘେରାଇ ଦେଇ ରାସ୍ତାକୁ ଓହ୍ଲାଇବାକୁ ପଡ଼ିଲା । ଏହି ବ୍ୟସ୍ତ କାର୍ଯ୍ୟକ୍ରମର ପ୍ରତ୍ୟେକ ପର୍ଯ୍ୟାୟରେ ରଘୁବାବୁ ନିଜକୁ ଅତି ସହଜ ଓ ସାବଲୀଳ ଢଙ୍ଗରେ ମିଶାଇ ନେଇଥିଲେ ।

ତାଙ୍କସହ ଆମର ଶେଷଦେଖା, ନଭେମ୍ବର ୭ ତାରିଖ ଦିନ, କୋରାପୁଟ ଜିଲ୍ଲା ଶାଖାର କାର୍ଯ୍ୟକ୍ରମ ସ୍ଥିର କରିବାକୁ । କିନ୍ତୁ ୯ ତାରିଖରେ ରଘୁବାବୁ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ପାଇଁ ଢୋଲ-ଡମ୍ବରୁ ବଜାଇ ‘ସିଏ ଜଣେ ଭଲ ମଣିଷ ଥିଲେ’ ବୋଲି କହିବାର ଶୋକସଭା/ସ୍ମରଣସଭା ଆଦି ଆୟୋଜନ ନକରି ଆମେ କୋରାପୁଟ କାର୍ଯ୍ୟକ୍ରମକୁ ଅଧିକ ଯତ୍ନର ସହିତ ସମ୍ପନ୍ନ କରିବାକୁ ସ୍ଥିର କରିଥିଲୁ । ତାଙ୍କ ଘରେ ମୁହଁମାରି ଆମର ଦୁଇଜଣ ବନ୍ଧୁ ବାହାରିଗଲେ କୋରାପୁଟ ଜିଲ୍ଲା ଶାଖାର କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ । ଆମର ବିଶ୍ୱାସ ଥିଲା, ଏହି କାର୍ଯ୍ୟକ୍ରମକୁ ଠିକ ଭାବରେ ସଂପନ୍ନ କରିପାରିବାଟା ହିଁ ରଘୁବାବୁଙ୍କ ଅମ୍ଳାନ ସ୍ମୃତି ପ୍ରତି ଆମର ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ହଁ, ଏବେ ମନେହେଉଛି ଆମର ନିଷ୍ପତ୍ତି ଠିକ ଥିଲା । ଏଇ ଦୁଇବର୍ଷ କାଳ ଆମେ ରଘୁବାବୁଙ୍କୁ ଆମର ଅନ୍ତର ଭିତରେ ସାଇତି ରଖିଛୁଁ । ଏହି କ୍ଷୁଦ୍ରକାୟ ଜଟାୟୁ ପକ୍ଷୀଟିର ଦୀର୍ଘ ୪୦ ବର୍ଷର ଶାନ୍ତ, ନୀରବ ସାଧନାର ଉତ୍ତରାଧିକାର ଆମ ଭିତରେ । ତାଙ୍କର ନୀରବ ସାଧନାକୁ ଆଖିଝଲସା ପ୍ରଚାରର କୋଳାହଳ ମଧ୍ୟରେ ସମାଧି ଦେବାକୁ ଆମେ ସାମାନ୍ୟ ଚେଷ୍ଟା ମଧ୍ୟ କରିନାହୁଁ । ନିରବଚ୍ଛିନ୍ନ ଭାବରେ ଗୋଟାଏ ପରେ ଗୋଟିଏ କାର୍ଯ୍ୟକ୍ରମ ସମ୍ପନ୍ନ କରିବାକୁ ଆପ୍ରାଣ ଚେଷ୍ଟା କରିଛୁଁ । ଆମର ଏଇ ନୀରବ ପ୍ରଚେଷ୍ଟା ହିଁ ରଘୁବାବୁଙ୍କ ଅମର ସ୍ମୃତି ପ୍ରତି ଆମର ଶ୍ରେଷ୍ଠତମ ଶ୍ରଦ୍ଧାଞ୍ଜଳି । ରଘୁବାବୁ ଆମ ମେଳରେ ଥିଲେ ଠିକ ଯେମିତି କାର୍ଯ୍ୟ କରୁଥାନ୍ତୁ, ସେଇମିତି ଆଗେଇ ଚାଲିଛୁଁ । କିନ୍ତୁ ପ୍ରତ୍ୟେକ କାର୍ଯ୍ୟକ୍ରମର ଉତ୍ତୀର୍ଣ୍ଣ ମୁହୂର୍ତ୍ତରେ ମନେହେଉଛି "ରଘୁବାବୁ ଥାଆନ୍ତେ କି !"



ଉଚ୍ଚାର ଉଚ୍ଚାର

ଆମେ ବୁଦ୍ଧିଜୀବୀ          ଶ୍ରମିକ, କୃଷାଣ
ଆମେରେ ଅନ୍ୟାୟ-          ବିରୋଧୀ ନିଶାଣ,
ଆମେ ଏକତାରେ-          ପକା ଇସିପାତ
ସବୁ ଶୋଷଣକୁ          କରିବୁ ନିପାତ ॥

ଉଚ୍ଚାର ଉଚ୍ଚାର

ଆମେ ସଂଗଠିତ          ନଗର ଓ ଗ୍ରାମ
ଆମେ ସମବେତ          ଜୀବନ ସଂଗ୍ରାମ,
ଶୋଷଣ ବିରୋଧୀ          ସବୁଜ ଆହ୍ୱାନ
ଆମେରେ ମଣିଷ          ନର-ନାରାୟଣ ॥

( ନର-ନାରାୟଣ )

# ଆକାଶଠୁଁ ବଡ଼ ପିତା

## ଶ୍ରୀମତୀ ମମତା ଦାସ

ପୂର୍ବଜନ୍ମର ବହୁ ତପସ୍ୟାର ସଞ୍ଚିତ ପୁଣ୍ୟଫଳ ଭାବେ ଆମେ ତାଙ୍କୁ 'ବାପା' ଭାବରେ ପାଇଥିଲୁ । ତାଙ୍କର ସ୍ନେହସିକ୍ତ ଅଭୟ ବାହୁଛାୟା ତଳେ, ତାଙ୍କ ବାତ୍ସଲ୍ୟ ପ୍ରେମର ଅବାରିତ କିରଣ ସ୍ପର୍ଶରେ ଆମମାନଙ୍କ ଜୀବନ-ପୁଷ୍ପ ପ୍ରସ୍ଫୁଟିତ ହୋଇଥିଲା । ବିଧାତା ବୋଧହୁଏ ଏତେ ସୁଖ ସହିଲେନି । ଅକାଳରେ ଆକସ୍ମିକ ଭାବରେ ଆମମାନଙ୍କ ଆଶ୍ରୟସ୍ଥଳୀ, ଐଶ୍ୱର୍ଯ୍ୟର ଗନ୍ତାଘର ଲୁଟିନେଲେ । ବାପାଙ୍କ ସଦ୍‌ଗତି ପାଇଁ ଆଜି ପ୍ରାର୍ଥନାର ଅବକାଶ ନାହିଁ । ନିଜର କର୍ମରେ ନିଜ ସତ୍ୟନିଷ୍ଠାରେ ସେ ଊର୍ଦ୍ଧ୍ୱଗତି ଲାଭ କରି ସାରିଛନ୍ତି । ଆଜି ଖାଲି ଅତୀତର ପେଡ଼ି ଖୋଲି ପିତୃସ୍ମୃତିଚିହ୍ନକୁ ଖଙ୍ଗାଳି କରି ଆତ୍ମତୃପ୍ତି ଲାଭ କରିବା କଥା !

ବାପା ପ୍ରତିଷ୍ଠିତ ପରିବାରରେ ଜନ୍ମ ନେଇଥିଲେ ବି ବାଲ୍ୟତ ବୟସରେ ବାପା-ମା ଉଭୟଙ୍କୁ ହରାଇଥିଲେ । ଜୀବନର ପ୍ରତ୍ୟୁଷରେ ବହୁ ଘାତ ପ୍ରତିଘାତ ସହି ତାଙ୍କୁ ମଣିଷ ହେବାକୁ ପଡ଼ିଥିଲା । ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ଅପରାଧରେ ଏଇ କୃତୀଛାତ୍ରଙ୍କ ପାଇଁ ସରକାରୀ ଚାକିରୀର ପ୍ରବେଶ ଦ୍ୱାର ସବୁଦିନ ପାଇଁ ରୁଦ୍ଧ କରି ଦିଆଯାଇଥିଲା । ତଥାପି ସେ କେଉଁଠି ହାରିଯାଇ ନାହାନ୍ତି, ଡରିଯାଇ ନାହାନ୍ତି । ବରଂ ଦୃଢ଼ ମନୋବଳ ନେଇ ଜୀବନ-ଯୁଦ୍ଧରେ ଅବତୀର୍ଣ୍ଣ ହୋଇଛନ୍ତି । ଚନ୍ଦନକୁ ଘଷିଲେ ଯେମିତି ତା'ର ସୁବାସ ମହକି ଉଠେ, ସୁନା ଯେମିତି ଅଗ୍ନି ସଂସ୍ପର୍ଶରେ ତେଜୀୟାନ ହୁଏ, ସେହିଭଳି ଜୀବନର ଆଘାତ ଛନ୍ଦାୟିତ ହୋଇଥିଲା ତାଙ୍କ କବିତାରେ । ଅନ୍ତଃସଲିଳା ଫଲ୍‌ଗୁ ଭଳି ତାହା ସବୁବେଳେ ତାଙ୍କୁ ପୋଷିତ କରି ରଖିଥିଲା । ସେଥିପାଇଁ ବିଷମ ପରିସ୍ଥିତିରେ ମଧ୍ୟ ନିଜେ ହସି ଅନ୍ୟମାନଙ୍କୁ ହସାଇବାକୁ ସେ ଖୁବ୍ ଭଲ ପାଉଥିଲେ । ରେଭେନସା କଲେଜର ଛାତ୍ର ଥିଲାବେଳେ ଥରେ ସୂର୍ଯ୍ୟ ଛାତ୍ରାବାସରେ "ହସେଇବା ପ୍ରତିଯୋଗିତା" ହେଉଥିଲା । ନାନା ପ୍ରସ୍ତୁତି ସହ ବହୁ ଛାତ୍ର ହାସ୍ୟ ଅଭିନୟ କରି ହାସ ସୃଷ୍ଟି କରିବାକୁ ଉଦ୍ୟମ କରିଥିଲେ । ତା'ପରେ ଥିଲା ବାପାଙ୍କ ପାଳି । ହଠାତ୍ ସେ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କଠାରୁ ତାଙ୍କ ଚଦରିଟି ମାଗିଆଣି ଓଢ଼ଣୀ ଟାଣି ତାଙ୍କର ପାଦକୁ ଧରି ବାହୁନିବା ଆରମ୍ଭ କଲେ— "ହଁ · ... ମୋ ବୋଉଲୋ ... ·· ।" କହିବା ବାହୁଲ୍ୟ, ସେ ଥରକ ସେ ପୁରସ୍କାରର ଅଧିକାରୀ ହୋଇଥିଲେ । କଥା ପ୍ରସଙ୍ଗରେ ଏଭଳି ବହୁ ଘଟଣା ତାଙ୍କ ସମ୍ପର୍କରେ ଆମେ ବଡ଼ବାପା ଓ ପିଉସୀମାନଙ୍କଠାରୁ ଶୁଣିଛୁ ।

ମୋର ସବା ସାନଭଉଣୀ ଜନ୍ମ ପରର କଥା । ଆମେ ଦୁଇ ବଡ଼ଭଉଣୀଙ୍କ ନାଁ ମମତା ଓ ରଞ୍ଜିତା । ତେଣୁ ସେହିଭଳି ଶେଷରେ 'ତା' ଥାଇ ନାଁଟିଏ ଦରକାର । ବାପାଙ୍କୁ କହିଲୁ ଏଇମିତି ନାଁଟିଏ ବାଛିବା ପାଇଁ । ସେ ସାଙ୍ଗେ ସାଙ୍ଗେ କହିପକାଇଲେ ଛତା, ଫିତା ନ ହେଲେ ଯୋତା ! ଆମେ ପ୍ରତିବାଦ କଲୁ— ନା ବାପା, ସେମିତି ନୁହେଁ । ପଛକୁ 'ତା' ଥାଇ ତିନି ଅକ୍ଷରିଆ ନାଁଟିଏ କୁହ । ତତ୍‌କ୍ଷଣାତ୍ ବାପାଙ୍କ ଉତ୍ତର ହେଲା— ତାହେଲେ 'ପଇତା' । ପରେ ଅବଶ୍ୟ ତା ନାଁ ସୁଜାତା ରଖାଗଲା । ଇତିହାସର ଅଧ୍ୟାପିକା ବୋଉଙ୍କୁ ତ ବେଳେ ବେଳେ ତାଙ୍କ ପରିହାସର ସମ୍ମୁଖୀନ ହେବାକୁ ହେଉଥିଲା । ଥରେ ବୋଉଙ୍କୁ ପରିହାସ ଛଳରେ ସେ କହିଥିଲେ – "ତୁମ ସ୍ୱକଶ ଜୀବନଟା ସେଇ ପୁରୁଣା କଥା ଶୁଣେଇ ଶୁଣେଇ ଗଲାଗଲା । ବାବରଙ୍କ ପୁଅ ହୁମାୟୁନ୍ ଆଉ ତାଙ୍କ ପୁଅ ଆକବର । ନୂଆ କଥା ଆଉ କଣ ? ଆମ ପାଠରେ କିନ୍ତୁ ଆଜି ବାବରଙ୍କ ପୁଅ ହୁମାୟୁନ ହେଲେ, କାଲି ହୁମାୟୁନଙ୍କ ପୁଅ ବାବର ହେବେ ।"

ବାପା ହୁଏତ ବୃତ୍ତିରେ ଓକିଲ ଥିଲେ । କିନ୍ତୁ ଆମମାନଙ୍କ ପାଖରେ ସେ ଥିଲେ ଆମର ପ୍ରଥମ ଓ ସର୍ବୋତ୍ତମ ଶିକ୍ଷକ । ବାପାଙ୍କ ପାଖରେ ପାଠ ପଢ଼ିବାରେ ଖୁବ୍ ଆନନ୍ଦ ଥିଲା, କାରଣ ସେ ପାଠକୁ ପାଠଭଳି ନ ପଢ଼ାଇ ଖେଳ ଭଳି ପଢ଼ାଉ ଥିଲେ ଏବଂ ସେଇ ଖେଳ ଭିତରେ ଆମେ ବହୁତ କିଛି ଶିଖି ଯାଉଥିଲୁ । ବାପା ମୋତେ ପ୍ରଥମ ଅକ୍ଷର ଶିକ୍ଷା ଦେଇଥିଲେ ଗତାନୁଗତିକ "ଅ ଆ" ପଦ୍ଧତିରେ ନୁହେଁ । ଅକ୍ଷର ଗଠନ ଅନୁସାରେ ଠ, ଚ, ଟ, ଗ, ର, ଦ, ବ, କ, ଜ ଆଦି କ୍ରମରେ ସେ ମାତ୍ର ୩ ଦିନରେ ମୋତେ ଓଡ଼ିଆ ବର୍ଣ୍ଣମାଳା ଶିଖାଇ ପାରିଥିଲେ । କୌଣସି ବିଷୟରେ ଦୁର୍ବଳ ଥିଲେ କେବେବି ହେଲେ ବିରକ୍ତ ନ ହୋଇ ସାହାଯ୍ୟ କରୁଥିଲେ । ତାଙ୍କର ସମଗ୍ର ଜୀବନ ଥିଲା ଜ୍ଞାନ ପାଇଁ ଏକ ତପସ୍ୟା ଏବଂ ସେ ଏ ଦିଗରେ ଆମକୁ ସବୁବେଳେ ଉତ୍ସାହିତ କରୁଥିଲେ । କିନ୍ତୁ ତାଙ୍କର ପାଠ ପଢ଼ିବା ଓ ପଢ଼େଇବାର ଶୈଳୀ ଥିଲା ଅନନ୍ୟ । ମାଟ୍ରିକ ପଢ଼ିବା ସମୟରେ ମୁଁ ସଂସ୍କୃତରେ ଦୁର୍ବଳ ଥିଲି । ତେଣୁ ଟ୍ୟୁସନ୍ ଆବଶ୍ୟକ ହେଲା । ଯେଉଁ ଶିକ୍ଷକ ନିଯୁକ୍ତ ହେଲେ ତାଙ୍କୁ ବାପା ପୂର୍ବରୁ କହିଥିଲେ— "ଯଦି ସେ ବ୍ୟାକରଣ ପଢ଼ିବାକୁ ଆଗ୍ରହୀ ନୁହେଁ, ତେବେ ଆପଣ ତାକୁ ବାଧ କରିବେ ନାହିଁ । ବର୍ତ୍ତମାନ କେବଳ ସଂସ୍କୃତର ସୁନ୍ଦର ଶ୍ଳୋକମାନ ତାକୁ ଗାଇ ଶୁଣାନ୍ତୁ । ସେ ସଂସ୍କୃତକୁ ଭଲ ପାଇବାକୁ ଶିଖୁ । ଥରେ ଭାଷାକୁ ଭଲ ପାଇଲେ ଭାଷା ଶିଖିବାରେ କଷ୍ଟ ହେବ ନାହିଁ ।" ପରେ ସଂସ୍କୃତ-ସାହିତ୍ୟରେ ଗବେଷଣା କଲାବେଳେ ବାପା ହିଁ ମୋତେ ପ୍ରକୃତ ଦିଗ୍ ଦର୍ଶନ ଦେଇଥିଲେ । ଅନେକେ ଶୁଣି ଆଶ୍ଚର୍ଯ୍ୟ ହୁଅନ୍ତି ଯେ "ତୁମ ବାପା ତ ଓକିଲ । ସେ ଗବେଷଣା ସନ୍ଦର୍ଭ ସଂଶୋଧନ କରୁଛନ୍ତି କିପରି ?" ମୁଁ ନିଜେ ବି ଆଶ୍ଚର୍ଯ୍ୟ ହୁଏ, ଅଧ୍ୟୟନ ପ୍ରତି ବାପାଙ୍କର ଆନ୍ତରିକତା ଓ ଏକାଗ୍ରତା ଦେଖି । ସତେ ଯେମିତି ସେ ଜିଜ୍ଞାସାର ଅନ୍ତ ନାହିଁ, ସାଧନାର ସୀମା ନାହିଁ । ଆଇନ ଗ୍ରନ୍ଥ ଭିତରେ

ସେ ଯେମିତ ବୃତ୍ତି ରଖିଥିଲେ, ସଂସ୍କୃତ ସାହିତ୍ୟରେ ତାଙ୍କର ମନୋନିବେଶ ତା ଠାରୁ କୌଣସି ଗୁଣରେ କମ୍ ନୁହେଁ । ଥରେ ପ୍ରଶ୍ନ କଲି—"ବାପା, ତୁମେ ଯିନା କୋର୍ଟରେ କେସ୍ ଲଢ, କିନ୍ତୁ ଭାରତୀୟ ଧର୍ମ, ସମାଜତତ୍ତ୍ୱ ସମ୍ବନ୍ଧୀୟ ଏସବୁ ମୌଳିକ ଚିନ୍ତାଧାରା ତୁମ ମନକୁ ଆସୁଛି କେମିତି ?" ବାପା କହିଥିଲେ—"ଯେ କୌଣସି ବିଷୟର ମୂଳ ପର୍ଯ୍ୟନ୍ତ ପହଞ୍ଚି ସତ୍ୟର ଉଦ୍‌ଘାଟନ କରିବା ତ ଓକିଲର କାମ ।" ମୋର ଗବେଷଣା ସମ୍ବନ୍ଧୀୟ ବହୁ ଯୁକ୍ତିତର୍କ, ବାଦାନୁବାଦ ଆମ ଭିତରେ ହୁଏ । କିନ୍ତୁ ମୋତେ ଠିକ୍ ଭାବରେ ନ ବୁଝାଇବା ପର୍ଯ୍ୟନ୍ତ ସେ କଦାପି ବିରତ ହେଉ ନଥିଲେ । କେବଳ ପାଠପଢ଼ା କ୍ଷେତ୍ରରେ ନୁହେଁ, କବିତା ଲେଖିବା, ଚିତ୍ର ପକାଇବା, ଗୀତ ଗାଇବା, ଛବି ଆଙ୍କିବା, ଫଟୋ ଉଠାଇବା, ଇତ୍ୟାଦି ଯେ କୌଣସିଥିରେ ଆମର ଆଗ୍ରହ ଦେଖିଲେ ବାପା ସବୁରକମ ସୁଯୋଗ ଦେଇ ଉତ୍ସାହିତ କରିବାକୁ ଟିକେ ମାତ୍ର କୁଣ୍ଠିତ ହେଉ ନଥିଲେ । ସମସ୍ତ ପ୍ରକାର ବିଦ୍ୟାଶିକ୍ଷା ଦିଗରେ ସେ ଥିଲେ ଆମ ପାଇଁ ପ୍ରେରଣାର ଅବିରତ ଉତ୍ସ ।

ବାପା ପଢ଼ାଲେଖାରେ ପ୍ରାୟ ସମସ୍ତ ସମୟ କାଟୁଥିଲେ । କିନ୍ତୁ ଛୁଟିଗୁଡ଼ିକରେ ସେ ଆମମାନଙ୍କୁ ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇ ଆଣିବାକୁ ଭୁଲୁ ନ ଥିଲେ । ମୋର ମନେ ଅଛି, ସାନଭାଇ ନୂଆ ନୂଆ 'ମୋ ଛବି ବହି' ପଢ଼ୁଥାଏ । "ହଂସ ଖେଳେ ଚିଲିକା ଜଳେ, ନୀଳ ଆକାଶେ ବଉଦ ଚଳେ" ପଢ଼ି ସେ ପ୍ରଶ୍ନକଲା— 'ବାପା, ଚିଲିକା କେଉଁଠି ଜଳୁଛି ?' ତା' ପରଛୁଟିରେ ହେଲା ଚିଲିକା ଦର୍ଶନ । ଖାଲି ଦର୍ଶନ ବା ଭ୍ରମଣ ନୁହେଁ, ବରଂ ଆମ ମନରେ ପ୍ରକୃତିର ଅନନ୍ତ ସୌନ୍ଦର୍ଯ୍ୟ ପ୍ରତି ଏକ ଆତ୍ମିକ ଆକର୍ଷଣ ଜନ୍ମେଇବା ବାପାଙ୍କର ଉଦ୍ଦେଶ୍ୟ ଥିଲା । ସେ ଭାବୁଥିଲେ ଦେଶକୁ ଭଲ ପାଇବାକୁ ହେଲେ ତାକୁ ସମଗ୍ର ଭାବରେ ଦେଖିବାକୁ ହେବ । ୧୯୭୦ରେ ଆମେ ଦକ୍ଷିଣଭାରତ ବୁଲିବାକୁ ଗଲବେଳେ ମଦୁରାରେ ବାପା ଶ୍ୱାସରୋଗରେ ଆକ୍ରାନ୍ତ ହେଲେ । ଆମେ ଫେରି ଆସିବାକୁ ବ୍ୟସ୍ତ ହେଲୁ । ହେଲେ ଶ୍ୱାସ-କଷ୍ଟକୁ ଦୃଢ଼ତାରେ ଧରି ସେ ଆମକୁ ଯୋଜନାନୁଯାୟୀ ସମସ୍ତ ଦର୍ଶନୀୟ ସ୍ଥାନ ଦେଖେଇ ଶୁଣେଇ ତା'ପରେ ଯାଇ ଫେରିଲେ ।

ଶୁଣିଛି, ସେ ହାଇକୋର୍ଟରେ କେଶ୍ ଲଢିଲାବେଳେ କୁଆଡ଼େ ଓକିଲ ମହଲରେ ଚାଞ୍ଚଲ୍ୟ ଖେଳିଯାଏ । ପ୍ରତିପକ୍ଷର ପୁରୁଣା ପୁରୁଣା ଓକିଲ କାଳେ ଗୁଳିଆଁ ହୋଇଯା'ନ୍ତି,

ଠିକ୍ ଯେମିତି ଅତୀତରେ ରାଜନୈତିକ ସଭାମାନଙ୍କରେ ସେ ଭାଷଣ ଦେଲାବେଳେ ବିପକ୍ଷୀ ଦଳ ଶଙ୍କି ଯାଉଥିଲେ । ହେଲେ, ଘର ଭିତରେ ସେ ଥିଲେ ଆମ ସାଙ୍ଗ, ପଥପ୍ରଦର୍ଶକ ଓ ଶିକ୍ଷକ । ଆମେ ତାଙ୍କୁ ଭଲ ପାଉ, ହେଲେ ଭୟ କରୁନା । ଭଲ ପାଇବା ସେ ଆମକୁ ଶିଖାଇଥିଲେ, ଭୟ କରିବା ନୁହଁ । ଏପରିକି, ପାଠପଢ଼ା ସାଙ୍ଗରେ ମାଡ଼କୁ ମିଶାଇ ଯେଉଁ ଶିକ୍ଷକମାନେ ନିଜ କଡ଼ା ମିଜାଜର ଦ୍ୱାହି ଦିଅନ୍ତି, ସେମାନଙ୍କ ପ୍ରତି ଆକ୍ରୋଶକୁ ବ୍ୟକ୍ତ କରି ସେ ସେମାନଙ୍କୁ 'ଟିଚର' ନ କହି 'ବୁଚର୍' ବୋଲି କହୁଥିଲେ ।

ଏଇମିତି ଥିଲେ ଆମ ବାପା । ବାହାରକୁ ଦେଖିବାକୁ ହୁଏତ ପାହାଡ଼ ଭଳି ଗୁରୁଗମ୍ଭୀର । କିନ୍ତୁ ତା'ର ଭିତରେ ସେ ଥିଲେ ଅନେକ ଛୋଟ ଛୋଟ ହାସ୍ୟ'ଝରଣା, ଯାହା ଆମର ପାରିବାରିକ ଜୀବନକୁ ଆନନ୍ଦମୁଖର, ପ୍ରାଣୋଚ୍ଛଳ ଓ ରସବନ୍ତ କରିଥିଲା । ବାପାଙ୍କ ଠାରୁ ଆମେ କଣ ଶିଖିଛୁ ବା କେତେ ତାଙ୍କ ଭଳି ହୋଇଛୁ ତାହା ହୁଏତ କହିବା ସମ୍ଭବ ନୁହେଁ, କିନ୍ତୁ ତାଙ୍କର ସ୍ମୃତି, ତାଙ୍କ ଜୀବନାଦର୍ଶ ଚିରଦିନ ଆମ ଜୀବନଯାତ୍ରାରେ ଧ୍ରୁବତାରା ହୋଇ ରହିବ ।



# ସ୍ମୃତି ତର୍ପଣ

## ପୁରଂଜନ ରାୟ

ସେକସପିଅରଙ୍କ ନାଟକ "ଜୁଲିୟସ ସିଜର୍"ରେ ଚରିତ୍ର ମାର୍କ ଏଣ୍ଟୋନି ବ୍ୟଙ୍ଗ କରି କହିଛନ୍ତି – "for the good that men do are oft interred with their bones." ବହୁ କ୍ଷେତ୍ରରେ ଏହି ସତ୍ୟଟି ଯନ୍ତ୍ରଣାଦାୟକ, କାରଣ ମୃତ୍ୟୁ ପରେ ମୃତ ବ୍ୟକ୍ତିଟି କାହାର ମନେ ପଡ଼େନା । ସେ ସ୍ମୃତିପଟରୁ ଲିଭିଯାଆନ୍ତି— ସେମାନଙ୍କ ସୁକର୍ମ ନିମନ୍ତେ କେହି ତାଙ୍କୁ ମନେ ପକାନ୍ତି ନାହିଁ । କିନ୍ତୁ କେତେକ କ୍ଷଣଜନ୍ମା ସମୟର ବାଲୁଚର ଉପରେ ନିଜର ଦୋଙ୍କ ଛାଡ଼ିଦେଇ ଯାଇଥାନ୍ତି, ଓ ନୂତନ ପଥର ସନ୍ଧାନ ଦେଇଥାନ୍ତି । ତେଣୁ ସେମାନେ ବୋଧହୁଏ ଜନସାଧାରଣଙ୍କ ସ୍ମୃତିରୁ ବିସ୍ମୃତ ହୋଇ ନଥାନ୍ତି ।

ବହୁ କ୍ଷେତ୍ରରେ ଆମର ପ୍ରିୟ ରଘୁଦାଦା ଏହିପରି ଜଣେ ଅନନ୍ୟ ବ୍ୟକ୍ତି ଥିଲେ । କେତେ ଓକିଲ ଆସିବେ— କେତେ ବି ଯିବେ— କିନ୍ତୁ ଆମ ହୃଦୟରେ ସଂଗୋପନରେ ସାଇତା ହୋଇ ରହିଥିବ ସେଇ ରଘୁଦାଦାଙ୍କ ଅମଳିନ ସ୍ମୃତି । ସେ ଯଦିଚ ଏତେ ନାମକରା ଓକିଲ ନଥିଲେ, କିନ୍ତୁ ସେ ଥିଲେ ଜଣେ ପ୍ରସିଦ୍ଧ କବି ଏବଂ ଚାରୁକଳାର ପୃଷ୍ଠପୋଷକ । ଅନ୍ଧକାରରେ ଘୂରି ବୁଲି ଯାଉଥିବା ଜନଗଣ ତଥା ଶୋଷିତ ଜନଗଣଙ୍କ ନିମନ୍ତେ ତାଙ୍କ ହୃଦୟରେ ପ୍ରେମ ଓ ସହାନୁଭୂତିର ଗଙ୍ଗା ପ୍ଲାବିତ ହେଉଥିଲା ।

୧୯୭୫ରେ ଅଲକା ଆଉ ମୁଁ ନାଟକରେ ଅଭିନୟ ଆରମ୍ଭ କରୁ ଏବଂ ଏଥିଯୋଗୁଁ ରଘୁଦାଦାଙ୍କ ସଂସ୍ପର୍ଶରେ ଆସୁଁ । ଆମେ ଗର୍ବର ସହିତ କହିପାରୁ ଯେ, ପ୍ରାୟ ସବୁଥର ରଘୁଦାଦା ଆମ ନାଟ୍ୟାଭିନୟ ଦେଖିବାକୁ ଆସୁଥାନ୍ତି, ଆମ ନାଟକ ହେବାକଥା ଶୁଣିଲେ ସାରା ପରିବାର ପାଇଁ ସେ ପହିଲେ ଟିକଟ ମଧ୍ୟ କାଟି ନେଉଥିଲେ । ସେ ମୋତେ ତାଙ୍କ ସାନଭାଇ ପରି ଦେଖୁଥିଲେ । ସେ ନାଟକଗୁଡ଼ିକ ଉପରେ ନିଜର ଗଠନମୂଳକ ମତାମତ ଓ ସମାଲୋଚନା କରିବାକୁ ମଧ୍ୟ ପଛଘୁଞ୍ଚା ନଥିଲେ । ପ୍ରତ୍ୟେକ ନାଟକ ପ୍ରଦର୍ଶନ ପରେ ସେ ମୋତେ ଡାକି ନାଟକଟିର ଭଲ ଓ ମନ୍ଦ ଦିଗ ଉପରେ ତନ୍ନ ତନ୍ନ ଆଲୋଚନା କରୁଥିଲେ । ଏତେ ବଡ଼ ମହାନ ବ୍ୟକ୍ତିତ୍ୱର ଏହିପରି ସାନ୍ନିଧ୍ୟ ପାଇ ମୁଁ ମଧ୍ୟ ଗର୍ବ ଅନୁଭବ କରୁଥିଲି । ଗତ ଦଶନ୍ଧି ତମାମ ଆମର ନାଟ୍ୟ ସଂସ୍ଥା— "ଦି ଥିଏଟର" ବହୁ ନାଟକ ମଞ୍ଚସ୍ଥ କରିଛି । ରଘୁଦାଦା ଯେତେବେଳେ ଯାହା ଆମର ଭୁଲ ତ୍ରୁଟି ଦର୍ଶାଇ ଅଛନ୍ତି, ତଦନୁସାରେ ଆମ୍ଭେ ନିଜକୁ ସଂଶୋଧନ କରିଅଛୁଁ ।

ଆମ ଦେଶରେ ଅଧିକାଂଶ ଲୋକ ଭୋଜନ, ଶୟନ ଓ ଟଙ୍କା ମହଜୁଦ କରି ରଖିବାରେ ବ୍ୟସ୍ତ । ସେମାନେ ହୀନ କୀଟପତଙ୍ଗର ଜୀବନ ଅତିବାହିତ କରୁଛନ୍ତି । ତାଙ୍କୁ ଆତ୍ମିକ ଉନ୍ନତି ବିଷୟରେ କହିବା କାଳ ଆଗରେ ମୂଳା ଝୁଲେଇବା ପରି । କିନ୍ତୁ ଗୋଟାଏ ଭଲ କାମ କରିବାକୁ ସେମାନେ ଉଚିତ ମଣନ୍ତି ନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ଏହିପରି ଗଡ଼ଡାଲିକା ସ୍ରୋତରେ ସେମାନଙ୍କ ଜୀବନ ଗଡ଼ି ଚାଲିଥାଏ ।

କିନ୍ତୁ ଟେନିସନ୍‌ଙ୍କ 'ୟୁଲିସିସ୍' ପରି ରଘୁଦାଦା ଜୀବନର ନୂତନ ମୂଲ୍ୟବୋଧ ପ୍ରତିଷ୍ଠା ନିମନ୍ତେ ଅହରହ ସଂଗ୍ରାମ କରି ଯାଇଛନ୍ତି । ସେ ବିଶ୍ୱାସ କରୁଥିଲେ ଯେ, ପ୍ରତି ଅନୁଭୂତିର ତୋରଣ ଦେହରେ ଅନାବିଷ୍କୃତ ପୃଥିବୀ ମୁକ୍ତା ବିନ୍ଦୁ ପରି ଝିକିମିକି କରୁଥାଏ । ତେଣୁ ତାଙ୍କ ଜୀବନର ଆଦର୍ଶ ଥିଲା— 'ଖୋଜିଚାଲ— ଆଗେଇ ଚାଲ – ଚେଷ୍ଟାକର – କେବେହେଲେ ପରାଜୟ ଆଗରେ ମଥାନତ କରନା ।'

ଯେତେବେଳେ ଅଧ୍ୟାପିକା ମନୋରମା ଦାଶ ରଘୁଦାଦାଙ୍କ ସ୍ମରଣିକା ନିମନ୍ତେ ଆମକୁ ଏକ 'ସ୍ମୃତିଲେଖା' ଲେଖିଦେବା ପାଇଁ କହିଲେ, ଆମ୍ଭେ ହତଚକିତ ହୋଇଗଲୁଁ । କାରଣ ତାଙ୍କ ବିଷୟରେ ମୋ ପରି ଜଣେ ଅକିଞ୍ଚନ କଣ ଅବା ଲେଖିପାରିବ ! ଏହା ଅତି ଯନ୍ତ୍ରଣାଦାୟକ । ପୁଣି ରଘୁଦାଦାଙ୍କ ସହିତ ଆମର ସମ୍ପର୍କ ବହୁଦିନର ପୁରୁଣା । ତାଙ୍କ ଜୀବନରେ ଦୁଇଟି ଆଶା ଅପୂର୍ଣ୍ଣ ହୋଇ ରହିଯାଇଛି । ସେ ଆମକୁ ପିଲାଙ୍କ ନିମନ୍ତେ ନାଟକ ରଚନା କରି ମଞ୍ଚସ୍ଥ କରିବା ପାଇଁ କହୁଥିଲେ । ପୁଣି ଓକିଲମାନଙ୍କ ପାଇଁ ଏକ ନୂଆ ଧରଣର ପତ୍ରିକା ଆମକୁ ସେ ବାହାର କରିବାକୁ କହୁଥିଲେ । କିନ୍ତୁ ଏଦିଗରେ ଆମର କିଛି ଉଦ୍ୟମ ଆରମ୍ଭ ହେବା ଆଗରୁ ଦାରୁଣ ମୃତ୍ୟୁ ତାଙ୍କୁ ଆମ ପାଖରୁ ଦୂରେଇ ନେଇଗଲା ।

ଆମ୍ଭେମାନେ ପିଲାଙ୍କ ପାଇଁ ନାଟକ ଲେଖି ତାକୁ ମଞ୍ଚସ୍ଥ କରି ପାରିଲେ ତାଙ୍କ ପ୍ରତି ତାହା ହେବ ଆମର ମହାର୍ଘ ତର୍ପଣ । ଓକିଲଙ୍କ ପାଇଁ ପତ୍ରିକା ସମ୍ପାଦନ କ୍ଷେତ୍ରରେ ଅବଶ୍ୟ ମୁଁ ଏତେ ଧୁରୀଣ ନୁହେଁ । ମୁଁ କେବଳ ତାଙ୍କ ନିକଟତମ ବନ୍ଧୁ ଓ ସହକର୍ମୀ ଓକିଲମାନଙ୍କୁ ଏ କାମ କରିବା ପାଇଁ ଯଥାଶକ୍ତି ପ୍ରବର୍ତ୍ତାଇ ପାରିବି । ତା'ହେଲେ ତାଙ୍କ ଆତ୍ମା ଶାନ୍ତି ପାଇପାରିବ ।

"ଅମା ଅନ୍ଧାର ବିରୋଧରେ ଯୁଦ୍ଧ ଘୋଷଣା କର – ବନ୍ଦୀ ଓ କ୍ଷଣଭଂଗୁର ଅସ୍ତିତ୍ୱକୁ ଅସ୍ୱୀକାର କର – ଏପରି କାମ କର ତୁମେ ଗଲାପରେ ଯେପରି ସମୟର ସିକତା ଉପରେ ତୁମ ପଦଚିହ୍ନ ଭବିଷ୍ୟତ ବଂଶଧରଙ୍କୁ ଦେଖାଯାଉଥିବ— ଯାହା ହେବ ସେମାନଙ୍କର ଅନୁକରଣୀୟ ।" ରଘୁଦାଦାଙ୍କ ଠାରୁ ମୁଁ ଏହି ମହାର୍ଘ କଥା କେତୋଟି ଶିଖିଛି ।

ଆମେ ମହାକବି ସେକ୍ସପିଅରଙ୍କ ସହିତ ସମସ୍ୱରରେ କହିପାରୁ –

"Men must endure
their going hence,
as their coming hence.
Ripenese is all."

( ମୂଳ ଇଂରାଜୀରୁ ଶ୍ରୀ ବାଞ୍ଛାନିଧି ଦାସଙ୍କ ଦ୍ୱାରା ଅନୁଦିତ )

□□

# ପ୍ରିୟ ରଘୁନାଥବାବୁ ସ୍ମରଣେ

**ସଦାନନ୍ଦ ଦାସ**

୧୯୫୯ ମସିହାରେ ଆମେ କେତେଜଣ ସାହିତ୍ୟପ୍ରେମୀ ଉଦ୍‌ଯୋଗୀ ଯୁବକ ସପ୍ତାହ ବ୍ୟାପୀ ଓଡ଼ିଆ ସାହିତ୍ୟ ଓ ସଙ୍ଗୀତର ଏକ ସମ୍ମିଳନୀ "ଫକୀରମୋହନ ସାହିତ୍ୟ ପରିଷଦ" ଆନୁକୂଲ୍ୟରେ ବାଲେଶ୍ୱରରେ ଆୟୋଜନ କରିଥିଲୁଁ । ଉଦ୍ଦେଶ୍ୟ ଥିଲା— ଏଠାରେ ବ୍ୟାସକବିଙ୍କ ପୁଣ୍ୟ ପୀଠରେ ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନର ସୂତ୍ରପାତ କରିବା । ସେ ସମୟରେ ଓଡ଼ିଶାରେ ଯେଉଁ ଲେଖକମାନେ ବାସ୍ତବବାଦୀ ଓଡ଼ିଆ-ସାହିତ୍ୟ ଲେଖୁଥିଲେ – ସମସ୍ତଙ୍କୁ ଆମେ ବାଲେଶ୍ୱର ସାହିତ୍ୟ ସମ୍ମିଳନୀକୁ ନିମନ୍ତ୍ରଣ କରିଥିଲୁଁ । ପଡ଼ୋଶୀ ବଙ୍ଗ ଦେଶରୁ ମଧ୍ୟ ସାହିତ୍ୟରଥୀମାନେ ଯୋଗ ଦେଇଥିଲେ । ପ୍ରଗତିବାଦୀ କବି ଶ୍ରୀଯୁକ୍ତ ରଘୁନାଥ ଦାସଙ୍କୁ ଏଠାକାର ସାହିତ୍ୟ ସମ୍ମିଳନୀକୁ ନିମନ୍ତ୍ରଣ କରାଯାଇଥିଲା । ସେ ସାଦର ନିମନ୍ତ୍ରଣ ଗ୍ରହଣ କରି ବାଲେଶ୍ୱର ସାହିତ୍ୟ ସମ୍ମିଳନୀରେ ଯୋଗ ଦେଇଥିଲେ । ତାଙ୍କର ପ୍ରଗତିଶୀଳ ସାହିତ୍ୟ ସମ୍ପର୍କୀୟ ବକ୍ତବ୍ୟରେ ଉଦ୍‌ବୁଦ୍ଧ ହୋଇ ମୁଁ ସେ ସମୟରେ କେତୋଟି ଗଳ୍ପ ଲେଖିଥିଲି । ସେ ଗୁଡ଼ିକ ମୋର "ଫସଲ" ଗଳ୍ପ ପୁସ୍ତକରେ ପ୍ରକାଶିତ ହୋଇଛି । ସବୁପରେ କମ୍ୟୁନିଷ୍ଟ ନେତା ୰ ଶୈଳେନବାବୁ (ମହାପାତ୍ର) ମୋତେ ତାଙ୍କ ସହିତ ପରିଚୟ କରାଇ ଦେଇଥିଲେ । ପରେ ପରେ ସେ ମୋତେ "ଓଡ଼ିଆ ଲେଖକ ସହଯୋଗ ସମିତି"ର ସଭ୍ୟ କରାଇଥିଲେ । ଲେଖକ ସହଯୋଗ ସମିତିର ମୁଖପତ୍ର "ଉଦୟ" ପତ୍ରିକା ସେତେବେଳେ କଟକରୁ ପ୍ରକାଶ ପାଉଥିଲା । ସେ ସମୟରେ ମୁଁ ନିୟମିତ ଭାବରେ ବିଭିନ୍ନ ଓଡ଼ିଆ ପତ୍ରପତ୍ରିକାରେ ଗଳ୍ପ ଲେଖୁଥିଲି । ବାଲେଶ୍ୱର ସାହିତ୍ୟ ସମ୍ମିଳନୀରେ ପରିଚୟ ହେବାପରେ ମୋଠାରୁ ଗଳ୍ପନେଇ 'ଉଦୟ' ପତ୍ରିକାରେ ରଘୁବାବୁ ପ୍ରକାଶର ବ୍ୟବସ୍ଥା କରାଇଥିଲେ । ପ୍ରଥମ ଗଳ୍ପଟି, ମୋର ଯାହା ମନେ ପଡୁଛି— 'ପୃଥ୍ୱୀରାଜ' ୧୯୫୨ରେ ପ୍ରକାଶ ପାଇଥିଲା । ଏହାପରେ ମୁଁ କଟକ ଗଲେ ତାଙ୍କ ଝୋଲସାହି ବାସଭବନରେ ପ୍ରାୟ ସାକ୍ଷାତ ହୁଏ । ସେ ଅତ୍ୟନ୍ତ ଅମାୟିକ ଓ ବନ୍ଧୁବତ୍ସଳ ଥିଲେ । ଓଡ଼ିଆ ଲେଖକ ସହଯୋଗ ସମିତିର ଅଭିବୃଦ୍ଧି ବିଷୟରେ ତାଙ୍କ ସହ କେତେ ବିଷୟ ଆଲୋଚନା ହୁଏ । ତାଙ୍କର ମାନବମୁଖୀ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ଥିଲା ଖୁବ ପରିଷ୍କାର । ସାହିତ୍ୟରେ ସମାଜର ସତ୍ୟ ଚେହେରା ପ୍ରକାଶ ପାଉ, ଏହାହିଁ ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ବହୁଦିନର ନୀରବତା ପରେ ସେ ପୁଣି ଲେଖାଲେଖି ଆରମ୍ଭ କରି ବହୁ ସଫଳ କବିତା ଶେଷଜୀବନରେ ଲେଖିଯାଇଛନ୍ତି । ତାଙ୍କର ଦୀର୍ଘ ଜୀବନକାଳ ନିଃସନ୍ଦେହରେ ପ୍ରଗତିଶୀଳ ଓ ବାସ୍ତବଧର୍ମୀ ଓଡ଼ିଆ ସାହିତ୍ୟ ଆନ୍ଦୋଳନକୁ ଜୋରଦାର କରିଥାନ୍ତା ।



# ରଘୁବାବୁଙ୍କୁ ମୁଁ ଯେମିତି ଦେଖିଚି

## ବ୍ରଜନାଥ ରଥ

ଆଜକୁ ପ୍ରାୟ ୩୬ ବର୍ଷ ତଳର କଥା । ମୁଁ ରଘୁବାବୁଙ୍କୁ ପ୍ରଥମେ ଦେଖିଲି ବୋଧହୁଏ ୧୯୫୧ ମସିହାରେ । ବାଲେଶ୍ୱରର ପ୍ରମୁଖ ସାହିତ୍ୟାନୁଷ୍ଠାନ "ଫକୀର ମୋହନ ସାହିତ୍ୟ ପରିଷଦ" ପକ୍ଷରୁ ସେତେବେଳେ ସପ୍ତାହବ୍ୟାପୀ ସାହିତ୍ୟ-ସଙ୍ଗୀତ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ ଫକୀରମୋହନ କଲେଜ ହଲରେ । ସେତେବେଳର ବହୁ ପ୍ରତିଷ୍ଠିତ କବି-ଲେଖକ-ସାହିତ୍ୟିକ ଓ ସଙ୍ଗୀତଜ୍ଞ ଏହି ସମ୍ମିଳନୀରେ ଯୋଗ ଦେଇଥାନ୍ତି । ମୋର ମନେ ପଡ଼ୁଛି ଗୋଟିଏ ଦିନ ସନ୍ଧ୍ୟାରେ 'ଗଣ ସାହିତ୍ୟ' ସମ୍ପର୍କରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହେଉଥାଏ । ସେଥିରେ ନିତ୍ୟାନନ୍ଦ ମହାପାତ୍ର ଓ ଅନ୍ୟ କେତେଜଣ ବିଶିଷ୍ଟ ସାହିତ୍ୟିକଙ୍କ ସହ ଅନ୍ୟତମ ଆଲୋଚକ ଥାନ୍ତି ରଘୁବାବୁ । ସେଦିନ ନିତ୍ୟାନନ୍ଦବାବୁଙ୍କ ଆଲୋଚନା ଥିଲା ଖୁବ ସରସ, କିନ୍ତୁ ରଘୁବାବୁଙ୍କ ଆଲୋଚନା ଥିଲା ଏକାନ୍ତ ତାତ୍ତ୍ୱିକ ଓ ବିଶ୍ଳେଷଣାତ୍ମକ । ସେ ମାର୍କସ୍‌ବାଦୀ ଦୃଷ୍ଟିକୋଣରୁ ଗଣସାହିତ୍ୟର ବ୍ୟାଖ୍ୟା କରି ଯେଉଁ ସାହିତ୍ୟ 'ଗଣ'ଙ୍କର ଜୀବନ ଓ ସଂଗ୍ରାମକୁ ସେମାନଙ୍କ ଭାଷାରେ ରୂପାୟିତ କରେ ଏବଂ ସେମାନଙ୍କୁ ଏକ ଶୋଷଣମୁକ୍ତ, ସୁଖୀ, ସମାଜବାଦୀ ରାଷ୍ଟ୍ର ଗଠନରେ ଉଦ୍‌ବୁଦ୍ଧ କରି ଆଗେଇ ନିଏ ତାହାହିଁ ପ୍ରକୃତ ଗଣସାହିତ୍ୟ ବୋଲି ସେ ମତ ଦେଇଥିଲେ । ସେତେବେଳେ ସେ ଥିଲେ ଓଡ଼ିଶାରେ ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର । ବାଲେଶ୍ୱରରେ ବନ୍ଧୁ ମନୋଜବାବୁ (ଦାସ) ଓ ମୁଁ ସେତେବେଳେ ଏହି ସାହିତ୍ୟିକ ଆନ୍ଦୋଳନ ଓ ଅଭିମୁଖ୍ୟ ପ୍ରତି ଆଗ୍ରହୀ ଥାଉଁ ଏବଂ ସେହି ଧାରାରେ କିଛି କିଛି ଲେଖାଲେଖି କରୁଥାଉଁ । ତେଣୁ ବାଲେଶ୍ୱରରେ ରଘୁବାବୁଙ୍କ ଉପସ୍ଥିତି ତଥା ଗଣସାହିତ୍ୟ ସମ୍ପର୍କରେ ତାଙ୍କର ସୁଚିନ୍ତିତ ମତାମତ ମୋତେ ଖୁବ୍ ଉଦ୍‌ବୁଦ୍ଧ କରିଥିଲା । ତାଙ୍କର ପ୍ରତ୍ୟେକ ଲେଖାକୁ ମୁଁ ଖୁବ୍ ମନୋଯୋଗ ସହକାରେ ପଢ଼ୁଥିଲି ଓ ତାହା ମୋତେ ଖୁବ୍ ଅନୁପ୍ରାଣିତ କରୁଥିଲା ।

ତାଙ୍କୁ ବାଲେଶ୍ୱରରେ ଦେଖିବା ପୂର୍ବରୁ ମୁଁ ତାଙ୍କ କବିତାର ଏକ ପ୍ରକାର ଗ୍ରାହକ ଓ ଭକ୍ତ ପାଲଟି ଯାଇଥିଲି । ୧୯୫୧ ମସିହା ମାର୍ଚ୍ଚ ସଂଖ୍ୟା 'ସହକାର'ରେ 'ମୃତ୍ୟୁହୀନ' ନାମରେ ପ୍ରକାଶିତ ତାଙ୍କର ଏକ କବିତା ପଢ଼ି ମୁଁ ଏତେ ମୁଗ୍ଧ ଓ ବିହ୍ୱଳିତ ହୋଇ ଯାଇଥିଲି ଯେ ଆଜି ପର୍ଯ୍ୟନ୍ତ ତାହା ମୋ ହୃଦୟରେ ଲିପିବଦ୍ଧ ହୋଇ ରହିଛି ।

ଯେତେବେଳେ 'କୋରିଆ' ଯୁଦ୍ଧ ଚାଲୁଥାଏ। ପ୍ରବଳ ପ୍ରତାପୀ ମାର୍କିନ ସେନାପତି ମ୍ୟାକ ଆର୍ଥର ତାଙ୍କର ବିଜୟ ଘୋଷଣା କରିଥାନ୍ତି କୋରିଆର ଗୋଟିଏ ଶ୍ରେଷ୍ଠ ସହରର ଉପରେ ପାଞ୍ଚଶହ ଟନ ବୋମା ପକାଇ ଏବଂ ତାକୁ ଧ୍ୱଂସସ୍ତୂପରେ ପରିଣତ କରି। ଏହି ଧ୍ୱଂସସ୍ତୂପ ଭିତରେ ମା'ଟିଏ ଉନ୍ମାଦିନୀ ପରି ଖୋଜୁଛି ତାର ଆଦରର ଧନ ଅଲିଅଳ ଶିଶୁକୁ। ଆଶା, ସେ ତାକୁ ଫେରି ପାଇବ ସେହିପରି ଜୀବନ୍ତ, ଅକ୍ଷତ ଓ ହସହସ···। କିନ୍ତୁ ତାର ସେ ଆଶା, ଆଶାରେହିଁ ରହିଯାଇଛି। ସବୁ ଚେଷ୍ଟା ବ୍ୟର୍ଥ ହୋଇଛି। ବାସ୍ତବ ଜଗତରେ ନହେଲେ ବି ସ୍ୱପ୍ନରେ ଯେମିତି ସେହି ଶିଶୁଟି ଆସି ତାର ମା'କୁ କହୁଛି। ଏହି ପୃଷ୍ଠଭୂମିରେ କବିତାଟିର ଜନ୍ମ। ଏହା ଏପରି ହୃଦୟସ୍ପର୍ଶୀ ଓ ଆବେଗସଞ୍ଚାରୀ ଯେ, ଯେ କୌଣସି ଦରଦୀ ପାଠକକୁ ମୁଗ୍ଧ କରିବ। ଆଜି ସୁଦ୍ଧା ସେହି କବିତାର ନିମ୍ନ କେତୋଟି ଧାଡ଼ି ମୋର ଚିର ଅଭୁଲା ହୋଇ ରହିଛି—

"ମା' ତୁମେ କାନ୍ଦନା·· ।
ଭଙ୍ଗା ଇଟାର ପାହାଡ଼···
ଯାର ଭିତରେ କାହିଁତ ହଜିଗଲା ମୋ କୁନି ଖେଳନା।

× × ×

ମୋ ଖେଳନା ମୋତେ ଖୋଜିଦିଅ,
ମା' ତୁମେତ ଜାଣ,
ଥିଲା ସେ ଖେଳନା ମୋର କେତେ ପ୍ରିୟ !

× × ×

ଉଡ଼ନ୍ତା ଅସୁର ଭଳି ଝଡ଼ବେଗେ ଆସିଥିଲା ଛୁଟି
ଫନ୍ଝା ପନ୍ଝା ବ୍ୟୋମଯାନ, ଚକ୍ରବେଗେ ବୋମା ଉଠେ ଫୁଟି,
ଆଗେ ପଛେ ସାଇଁ ସାଇଁ ଶାଣଦିଆ ତତଲା ଛୁରିକା
ମୁଁ କିନ୍ତୁ ମା' ଡରିନାହିଁ, ମୋ ହାତେ ଯେ ଜାତୀୟ ପତାକା।

× × ×

ମା' ତୁମେ କାନ୍ଦନା
ମୁଁ ମରିନି, ମୁଁ ବଞ୍ଚିଛି, ମିଛ ନୁହେଁ, ଏ ନୁହେଁ ଛଳନା।

ମୁକ୍ତବକ୍ଷା ହେ ଜନନୀ ! ମୁଁ ବଞ୍ଚିଛି ତୁମରି ଗର୍ଭରେ
ମୁଁ ବଞ୍ଚିଛି ମୋ ଦେଶର କୋଟି ପ୍ରାଣେ, ଘରେ ଘରେ ଘରେ।

ମୋତେ ତ ଭେଟିବ ତୁମେ ଗ୍ରାମେ ଗ୍ରାମେ ପ୍ରତି ପଥପ୍ରାନ୍ତେ
ଶ୍ୟାମ ଉପତ୍ୟକା ମଧ୍ୟେ, ଗିରିଶୃଙ୍ଗେ, ଅତଳ ପ୍ରଶାନ୍ତେ ।

ମୁଁ ବଞ୍ଚିଛି ମା' କୋଳେ, ମାଟି ତଳେ ପାହାଡ଼ କନ୍ଦରେ
ମୁଁ ବଞ୍ଚିଛି ଖେତ ଖେତେ, ଖଣିଗର୍ଭେ ଦକ୍ଷିଣେ ଉତ୍ତରେ ।

କ୍ଷୁଦ୍ର ମୋ ପ୍ରାଣରେ ଆଜି ଖେଳିଯାଏ ଅନନ୍ତ ପ୍ରେରଣା
ସମଗ୍ର କୋଣଆ ଭୂଇଁ ଖୋଜିବ ମୁଁ ହଜିଲ ଖେଳନା ।

ଜାଣେ ଜାଣେ ଦିନେ ତାର ଏ ମାଟିରେ କରିବି ମୁଁ ଠାବ
ଶାନ୍ତିର କପୋତ ଛୁଟେ ଚଞ୍ଚୁ ପୁଟେ ଘେନିଣ ପ୍ରସ୍ତାବ—
ପରିପୂର୍ଣ୍ଣ ନୂତନ ଦିନର ।
ନୂତନ ଦିନର ; ନିଶ୍ଚିତ ସୂଚନା ଏଯେ
ଘନାଇଛି ନିଶାନ୍ତ କଜ୍ଜ୍ୱଳ ।
ଏ ନୁହେଁ ସପନ,
ରକ୍ତାକ୍ତ ଉଷାର କୋଳେ ନବଦିନର ଶୁଭ ଉଦୟନ ।"

ଅଳ୍ପ କେତେବର୍ଷ ଆଗରୁ ଦ୍ୱିତୀୟ ବିଶ୍ୱମହାସମର ଶେଷ ହୋଇଥାଏ । ଜାପାନର ହିରୋସିମା-ନାଗାସାକି ଉପରେ ଆମେରିକା ପକ୍ଷରୁ ପୃଥିବୀର ପ୍ରଥମ ପରମାଣୁ ବୋମା ନିକ୍ଷେପ କରାଯାଇ ଲକ୍ଷ ଲକ୍ଷ ନିରୀହ ଲୋକଙ୍କୁ ନିର୍ମମ ଭାବରେ ହତ୍ୟା କରାଯାଇଥାଏ । ଏହି ପ୍ରଳୟଙ୍କରୀ, ଧ୍ୱଂସଲୀଳାରେ ବ୍ୟଥିତ ମାନବାତ୍ମା ଶାନ୍ତିର ସପକ୍ଷରେ ଦୃଢ଼ ସ୍ୱର ଉତ୍ତୋଳନ କରୁଥାଏ । ସାରା ବିଶ୍ୱରେ ମୁଣ୍ଡ ଟେକି ଉଠୁଥାଏ ଶାନ୍ତି ଆନ୍ଦୋଳନ । ପ୍ରତ୍ୟେକ ଦେଶର ବହୁ ପ୍ରତିଷ୍ଠିତ କବି, ଲେଖକ, ବୈଜ୍ଞାନିକ, ସାମ୍ବାଦିକ, ବୁଦ୍ଧିଜୀବୀ ଓ ସାଧାରଣ ଜନତା ଏହି ଆନ୍ଦୋଳନରେ ନିଜକୁ ସାମିଲ କରୁଥାନ୍ତି । ଓଡ଼ିଶାରେ ମଧ୍ୟ ଏହି ଆନ୍ଦୋଳନ ଦାନା ବାନ୍ଧୁଥାଏ । ୧୯୫୧ରେ କଟକରେ ଅନୁଷ୍ଠିତ ହେଲା ଶାନ୍ତି ସମ୍ମିଳନୀ । ସେଥିରେ ଉଦ୍‌ବୁଦ୍ଧ ହୋଇ କବି ଅନନ୍ତ ପଟ୍ଟନାୟକ ଲେଖିଲେ 'ଶାନ୍ତିଶିଖା', ୬ ଶଶୀ ପଟ୍ଟନାୟକ ଲେଖିଲେ 'ଆମେ ଶାନ୍ତି ଚାହୁଁ', କବି ମନମୋହନ ମିଶ୍ର ଓ ମନୋଜ ଦାସ ଲେଖିଲେ ବହୁଜନ ଚିତ୍ତହାରୀ ଶାନ୍ତି ସଂଗୀତମାନ । ରଘୁବାବୁ ସେତେବେଳେ ଏହି ଶାନ୍ତି ଆନ୍ଦୋଳନର ଥିଲେ ଜଣେ ଅନ୍ୟତମ ମୁଖ୍ୟ ପୁରୋଧା ଓ ପ୍ରବକ୍ତା । ଏହି ସମୟରେ

ରଚିତ ତାଙ୍କର 'ହିରୋସିମା', 'ଆମେ ଶାନ୍ତି ଚାହୁଁ', 'ଏ ମୋର ସନ୍ତକ', 'କୋଣାର୍କ' ଇତ୍ୟାଦି କବିତାମାନ ଆମକୁ ଖୁବ୍ ପ୍ରଭାବିତ କରିଥିଲା । ସେ କବିତାଗୁଡ଼ିକର ଶକ୍ତିଶାଳୀ ଆବେଦନ ଆଜିବି ଅକ୍ଷୁଣ୍ଣ । ଯେମିତି—

''ମିଳାଇ ନାହିଁତ ଧୂଆଁ… ଅଗ୍ନି ଦେଇଛି ଶୁଖିଲା ଘାଉତ
ଏବେବିତ । ରକ୍ତଧାରେ ଜମିରହେ ହାଡ଼ କୁଚି କୁଚି
ମଣିଷର । ବାରୁଦର ଝିଲ୍ଲିଗନ୍ଧ ହୋଇନି ହାଲୁକା · ।
ବହିଲା ଯେ ରକ୍ତଧାର ସମୁଦାୟ ଭେଦନ ମୃତ୍ତିକା ।

× × ×

ବୋମା ଗାଡ ପୂରିନାହିଁ । ଯନ୍ତ୍ରନାହିଁ ଦୁର୍ଦ୍ଦିନର ଗ୍ଲାନି
ମୁକ୍ତିଲାଗି ଡାକିଲୁ ଯେ ଲୁହ ଲହୁ କହ ସୃଷ୍ଟି କାହିଁ ?
ମୃତ୍ୟୁର ଡାକରା ପୁଣି ? ଆଜିଥରେ ମୃତ୍ୟୁଚା ଚହାଉ ?
ନା - ନା, ଆମେ ଶାନ୍ତି ଚାହୁଁ !!''

( ଆମେ ଶାନ୍ତି ଚାହୁଁ )

କିମ୍ବା

''କପୋତର ପକ୍ଷ ତଳେ ବାନ୍ଧିଦେଲି ଏ ମୋର ସନ୍ତକ
ବ୍ୟର୍ଥ ଏହା ହେବ ନାହିଁ, ନୁହେଁ ଏହା କେବେ ନିରର୍ଥକ ।
ନିରର୍ଥକ ନୁହେଁ କେବେ ଜନଗଣ ସମ୍ମିଳିତ ସ୍ୱର
ଦାବିର ଅଦମ୍ୟ ମୁଷ୍ଟି, ଲକ୍ଷକୋଟି ନୟନର ଜଳ ।

× × ×

ଏ ଆବାଜ ଛୁଟିଯିବ ଝଡ଼ ପରି ଗ୍ରାମୁଁ ଗ୍ରାମାନ୍ତରେ
ଏ ଧ୍ୱନି ତୋଳିବ ନିଷ୍ଠେ ପ୍ରତିଧ୍ୱନି ପ୍ରତ୍ୟେକ ଅନ୍ତରେ ।
ରଣାଙ୍ଗନେ ଘାତୁକର ଝୁରିହସ୍ତ କରିବ ଶିଥିଳ
ମାନବର ରୋଷାନଳେ ଧସିଦେବ ମୃତ୍ୟୁର ଶିବିର ।

× × ×

କପୋତର ପକ୍ଷତଳେ ବାନ୍ଧିଦେଲି ତେଣୁ ଏ ସନ୍ତକ
ଜନତାର ମସିଧାରେ ଲିଭିଯାଉ ଅସିର କଳଙ୍କ ।।''

( ଏ ମୋର ସନ୍ତକ )

'ଅଗଷ୍ଟ ପନ୍ଦର' କବିତାରେ ଯେଉଁ କବି 'ଛଦ୍ମବେଶୀ ଭଣ୍ଡ ପ୍ରତାରକ' ମାନଙ୍କ ଦ୍ୱାରା ମାଗିଆଣା ତଥାକଥିତ ସ୍ୱାଧୀନତାକୁ ସମାଲୋଚନା ଓ ବିଦ୍ରୁପ କରିବାରେ ମୁଖର ହୋଇ ଉଠିଥିଲେ ସିଏ ପୁଣି ୧୯୬୧ ମସିହା ବେଳକୁ ସମର ବିକ୍ଷୁବ୍ଧ ପୃଥିବୀର କୋଟି କୋଟି ମଣିଷର ଶାନ୍ତି ପାଇଁ ଏହିଭଳି ବ୍ୟାକୁଳ ହୋଇ ଉଠିଲେ । ରଘୁବାବୁ ଏକାଧାରରେ ଥିଲେ ସଂଗ୍ରାମ ଓ ଶାନ୍ତିର କବି ।

ମୋର କାବ୍ୟ ସାଧନାର ପ୍ରଥମ ପର୍ବରେ ଯେଉଁ କେତେଜଣ କବିଙ୍କ କବିତା ମୋତେ ବିଶେଷ ଭାବେ ମୁଗ୍ଧ ଓ ଅନୁପ୍ରାଣିତ କରିଥିଲା ସେମାନଙ୍କ ମଧ୍ୟରେ ରଘୁବାବୁ ଥିଲେ ଅନ୍ୟତମ । କିନ୍ତୁ ସେତେବେଳେ ତାଙ୍କ ସହିତ ବ୍ୟକ୍ତିଗତ ପରିଚୟ ହେବାର ସୌଭାଗ୍ୟ ମୋର ହୋଇ ନଥିଲା । କେଉଁଠି କେତେବେଳେ କେଉଁ ସଭାସମିତିରେ ଯାହା ତାଙ୍କୁ ଦେଖିଥିଲି । ୧୯୬୩ ପରେ ପରେ ପ୍ରାୟ ଦୁଇ ଦଶକ ଧରି ସେ ସାହିତ୍ୟ ରାଜ୍ୟରୁ ବିଦାୟ ନେଇ ଏକ ପ୍ରକାର ନୀରବ ହୋଇଗଲେ । ଆଉ ତାଙ୍କ ସହିତ ମିଶିବାର ସୁଯୋଗ ନଥିଲା, ଆବଶ୍ୟକତା ମଧ୍ୟ ନଥିଲା । ଏହି ଦୀର୍ଘକାଳ ଧରି ସେ ରହିଗଲେ ବିସ୍ମୃତିର ଫସିଲ ଭିତରେ ଆବଦ୍ଧ ହୋଇ । ଅଙ୍କ ଠିକ ମନେପଡୁନି । ବୋଧହୁଏ '୭୨ ମସିହା ହେବ । କୌଣସି ଏକ ଅଳସ ଅପରାହ୍ନରେ କବିବନ୍ଧୁ ରବି ସିଂ, ତରୁଣ କବି ସମରେନ୍ଦ୍ର ନାୟକ ଓ ମୁଁ ରାଜାବଗିଚା ଲେବର କଲୋନୀରୁ ଝୋଲସାହି ଗଲୁଁ ରଘୁବାବୁଙ୍କୁ ଦେଖା କରିବାକୁ । ସେତେବେଳେ ରଘୁନାଥବାବୁଙ୍କର ସହ ରବିବାବୁଙ୍କର ଖୁବ୍ ଘନିଷ୍ଠତା ଥିଲା ଏବଂ ସେ ରଘୁବାବୁଙ୍କର ସେଯାବତ୍ ସମସ୍ତ ପ୍ରକାଶିତ ଓ ଅପ୍ରକାଶିତ କବିତାକୁ ସଂଗ୍ରହ କରି ଏକ ସଂକଳନ ପ୍ରକାଶର ଉଦ୍ୟମ କରୁଥାନ୍ତି । ପ୍ରଥମ ସାକ୍ଷାତ୍‌ରେ ରଘୁବାବୁଙ୍କର ଏକାନ୍ତ ଆତ୍ମୀୟ ଭାବ ଓ ସ୍ନେହ ମୋତେ ମୁଗ୍ଧ କରିଥିଲା । ସେତେବେଳେ ସେ ଶ୍ୱାସରୋଗରେ ଖୁବ୍ କଷ୍ଟ ପାଉଥାନ୍ତି । ତଥାପି ବହୁ ସମୟ ଧରି ସାହିତ୍ୟ, ରାଜନୀତି, ଦେଶର ତତ୍କାଳୀନ ପରିସ୍ଥିତି ସଂପର୍କରେ ଆଲୋଚନା ହେଲା । କିନ୍ତୁ ଲକ୍ଷ୍ୟ କଲି, ସେ ଯେମିତି କେବଳ ଅସାଧ୍ୟ ଶ୍ୱାସରୋଗରେ ପୀଡ଼ିତ ନୁହଁନ୍ତି, ସାହିତ୍ୟ-ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ କ୍ରମଶଃ ଜମାଟ ବାନ୍ଧୁଥିବା ଅବକ୍ଷୟୀ ମୂଲ୍ୟବୋଧର ଦୁଃସହ ବେଦନାରେ ବ୍ୟଥିତ ଓ ମ୍ରିୟମାଣ । ଏକ ପ୍ରକାର ହତାଶା ଓ କିଛି ନକରିପାରିବାର ଅସମ୍ଭବ ଆତ୍ମଗ୍ଲାନିରେ ସେ ଯେମିତି ସଂକୁଳ ହେଉଛନ୍ତି । କିନ୍ତୁ ମନେହେଲା ଅତି କ୍ଷୀଣ ହେଲେବି ହୃଦୟର କେଉଁ ନିର୍ଜନ ଗୋପନ କୋଣରେ ଏବେ ମଧ୍ୟ ଧିକ ଧିକ ହୋଇ ଜଳୁଛି ତାଙ୍କ ବିପ୍ଳବୀ ଚେତନାର ଜ୍ୱଳନ୍ତ ମଶାଲ ଏବଂ ସର୍ଜନଶୀଳ ପ୍ରଚଣ୍ଡ ପ୍ରତିଭାର ଦୀପ୍ତ ଦୀପଶିଖା । ସେ ଯେମିତି ଅପେକ୍ଷା କରୁଛନ୍ତି ସେହି ଦୀପଦାନୀରେ ସମ୍ବେଦନଶୀଳ ସମଧର୍ମୀ । ଉତ୍ତରସୂରୀଙ୍କ ସାହଚର୍ଯ୍ୟ ଓ ସହଯୋଗର ତୈଳଦାନକୁ । ସେଦିନ ଆମେ ଫେରି ଆସିଥିଲୁଁ ତାଙ୍କ ସହ ଦୀର୍ଘ ସମୟ କଥାବାର୍ତ୍ତା ପରେ । କିନ୍ତୁ ଶୁଭ ଶୁକ୍ରବାରରେ କବର ମଧ୍ୟରୁ କ୍ରୁଶବିଦ୍ଧ ଯୀଶୁଙ୍କର ପୁନରୁତ୍ଥାନ ଭଳି ଅତୀତର ସମାଧି ଭିତରୁ ସମସ୍ତ

ସ୍ଥୈର୍ଯ୍ୟ ଓ ଜଡ଼ତାର ପାଷାଣ ଫଟାଇ ଅଦୂର ଭବିଷ୍ୟତରେ ରଘୁବାବୁଙ୍କ ବିପ୍ଳବୀ କାବ୍ୟ-ଚେତନାର ଯେ ପୁନଃ ସ୍ଫୁରଣ ହେବ ଏ ବିଶ୍ୱାସ ଆମେ ହରାଇ ନଥିଲୁଁ । ୧୯୭୩ରେ ବନ୍ଧୁ ରବି ସିଂଙ୍କ ଉଦ୍ୟମ ଓ ପ୍ରଚେଷ୍ଟାରେ ଜେ: ମହାପାତ୍ର ଏଣ୍ଡ କୋ: ଙ୍କ ଦ୍ୱାରା ପ୍ରକାଶିତ ହେଲା "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" । ଯେଉଁ ତରୁଣ କବିଦଳ ରଘୁବାବୁଙ୍କ କାବ୍ୟକୃତି ସମ୍ପର୍କରେ ସଚେତନ ନଥିଲେ ସେମାନେ ଏହି ସଂକଳନ ପ୍ରକାଶ ଫଳରେ ସେଥିସହ ପରିଚିତ ହେଲେ । କବି ମଧ୍ୟ ପାଇଲେ ନୂତନ ପ୍ରେରଣା । ତାଙ୍କର ବହୁ ଦିନର ସ୍ଥବିର ଲେଖନୀ ପୁଣି ଗତିଶୀଳ ହୋଇଉଠିଲା । "ଜଟାୟୁ" ଛଦ୍ମ ନାମରେ ରଚିତ କବିତାମାନ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହେଲା ଏବଂ ୧୯୮୩ରେ ସେଗୁଡ଼ିକର ସମ୍ମିଳିତ ରୂପ 'ପୁନଶ୍ଚ' ଆତ୍ମପ୍ରକାଶ କଲା ।

ପ୍ରଗତିଶୀଳ ସାହିତ୍ୟର ଧାରାକୁ ଅବ୍ୟାହତ ରଖି ତାହାକୁ ଅଧିକ ସକ୍ରିୟ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟରେ ତଥାକଥିତ ଆଧୁନିକତା ନାମରେ ଆସନ ଜମାଉଥିବା ଅବୋଧ, ବ୍ୟକ୍ତିବାଦୀ ଓ ପ୍ରତିକ୍ରିୟାଶୀଳ ଅପସାହିତ୍ୟର ଗତିରୋଧ କରିବା ଉଦ୍ଦେଶ୍ୟରେ ଆମେ ଯେଉଁ "ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ" ଗଠନ କଲୁଁ ସେଥିପ୍ରତି ତାଙ୍କର ଥିଲା ଅକୁଣ୍ଠ ଆଶୀର୍ବାଦ ଓ ପରିପୂର୍ଣ୍ଣ ସହଯୋଗ । ଆମ ମୁଖପତ୍ର 'ଅଭିଯାତ୍ରୀ' ର ସେ ଥିଲେ ନିୟମିତ ଲେଖକ । ଜନସାଧାରଣଙ୍କୁ ସେମାନଙ୍କ ଗଣତାନ୍ତ୍ରିକ ଅଧିକାର ସମ୍ପର୍କରେ ସଚେତନ କରାଇ ଶାସକ ଶ୍ରେଣୀ ଦ୍ୱାରା ହେଉଥିବା ସମସ୍ତ ପ୍ରକାର ଅଗଣତାନ୍ତ୍ରିକ, ଜନବିରୋଧୀ କାର୍ଯ୍ୟର ପ୍ରତିରୋଧ ପାଇଁ ଯେତେବେଳେ ଓଡ଼ିଶାରେ 'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଙ୍ଗଠନ' ଗଠନ କରାଗଲା ସେତେବେଳେ ସେ ହେଲେ ତାର ପ୍ରତିଷ୍ଠାତା ସଭାପତି ଏବଂ ମୃତ୍ୟୁ ପର୍ଯ୍ୟନ୍ତ ସେହି ଦାୟିତ୍ୱରେ ମଧ୍ୟ ଥିଲେ । ଆଜି ଯେତେବେଳେ ଦେଶରକ୍ଷା ନାମରେ ଉନ୍ନୟନ ଯୋଜନାରୁ ହଜାର ହଜାର କୋଟି ଟଙ୍କା କାଟି, ସାଧାରଣ ଲୋକଙ୍କୁ ନିରନ୍ନ ବିବସ୍ତ୍ର ଓ ଗୃହହୀନ ରଖି ଦେଶର ଅର୍ଥନୀତିକୁ ଶାସକ ଓ ଶୋଷକ ଶ୍ରେଣୀର ସ୍ୱାର୍ଥ ପାଇଁ ସାମରିକୀକରଣ କରାଯାଉଛି ଏବଂ ଏକଦିଗରେ ନିରସ୍ତ୍ରୀକରଣ ଓ ବିଶ୍ୱଶାନ୍ତି ସପକ୍ଷରେ କୁମ୍ଭୀର କାନ୍ଦଣା କାନ୍ଦି ଅପର ପକ୍ଷରେ କେତେକ ବୃହତ୍ ଶକ୍ତିଙ୍କ ହାତର ଖେଳଣା ହୋଇ ବାଲିଆପାଳ ଭଳି ଏକ ସମୃଦ୍ଧ, ଶସ୍ୟଶ୍ୟାମଳା ଅଞ୍ଚଳକୁ ଧ୍ୱଂସ କରି କ୍ଷେପଣାସ୍ତ୍ର ଘାଟୀ ସ୍ଥାପନ କରିବାର ହୀନ ଓ ଜଘନ୍ୟ ଉଦ୍ୟମ ଚାଲିଛି ଯେତେବେଳେ ଏହା ବିରୋଧରେ ଗଢ଼ି ଉଠୁଥିବା ଗଣ ଆନ୍ଦୋଳନକୁ ମଦତ ଦେବା ପାଇଁ ଏବଂ ଏହା ସପକ୍ଷରେ ନିଜର ନିର୍ଭୀକ ଓ ଦୁର୍ବାର ଲେଖନୀ ଚାଳନା ପାଇଁ ରଘୁବାବୁଙ୍କ ଭଳି ବ୍ୟକ୍ତିଙ୍କର ଅଭାବ ଆମେ ମର୍ମେ ମର୍ମେ ଅନୁଭବ କରୁଛୁଁ । ସେ ଥିଲେ ଆଜନ୍ମ ସଂଗ୍ରାମୀ— ଚିନ୍ତାରେ ଓ କାର୍ଯ୍ୟରେ । ଆଜି ସମାଜରେ ତଥା ବିଭିନ୍ନ ରାଜନୈତିକ ଦଳ ଭିତରେ ସୁବିଧାବାଦର ଦୁର୍ଗ-ପ୍ରାଚୀର କ୍ରମଶଃ ଶକ୍ତ ଓ ଦୃଢ଼ ହେଉଛି । ନିଃସ୍ୱାର୍ଥପରତା ଓ ସ୍ୱାଧୀନ-ନିର୍ଭୀକ ଚିନ୍ତା-ଚେତନାର

ବିଷବଳୟ ଘଟୁଛି । ଦୃଷ୍ଟିକୋଣ ବ୍ୟକ୍ତିସର୍ବସ୍ୱ ବା ଗୋଷ୍ଠି ସର୍ବସ୍ୱ ହୋଇ ଯାଉଛି । ଉଦାର ମାନବିକ ଦୃଷ୍ଟିଭଙ୍ଗୀ ହୋଇ ଯାଉଛି ସଙ୍କୀର୍ଣ୍ଣ ଓ କ୍ଷୀଣ । ସେଥିପାଇଁ ରଘୁବାବୁଙ୍କ ଭଳି ପ୍ରକୃତ ମଣିଷଟିଏ ହରାଇ ଆମେ ହୋଇ ଯାଉଛୁଁ ନିଃସ୍ୱ ଓ ଅସହାୟ । ସେ ସବୁଦିନ ପାଇଁ ଚାଲିଗଲା ପରେ ବି ମନେ ହେଉଛି ଯେମିତି ଜୀଇଁ ରହିଛନ୍ତି ଆମ ଭିତରେ, ଆମ ସ୍ମୃତିରେ, ଆମ କୃତିରେ, ଆମ ସ୍ୱପ୍ନରେ, ଆମ ସାଧନାରେ । କବିତାର ମୂର୍ତ୍ତିମାନ ରୂପ ନେଇ, ମହାକାଳକୁ ଅଟ୍ଟହାସ କରି ଏକ ଚିରନ୍ତନ ଆଶାବାଦରେ ଧ୍ୱନିତ ଉଦାତ୍ତ କଣ୍ଠରେ ସେ ଯେମିତି କହୁଛନ୍ତି—

"ମୃତ୍ୟୁ ! ତୁମକୁ ମୁଁ କରେ ଉପହାସ ।

ଏ ଜୀବନ ··· ତାହାକୁ ମୁଁ ଭଲପାଏ,
ତା' ଲଗି ଭରିଛି ପ୍ରାଣେ ଅଟଳ ବିଶ୍ୱାସ ।

ତା' ଲଗି ମୁଁ ଆସ୍ଫାଳନେ ଉର୍ଦ୍ଧ୍ୱେ ମୁଠା ହାଣେ,
କାରଣ, ମୁଁ ଜାଣେ ଜାଣେ—
ଶ୍ରମ ମୋର, କ୍ଳେଶ ମୋର ନୁହେଁ ଅକାରଣ ।

ବୃଥା କେବେ ହେବନାହିଁ ଲକ୍ଷ କୋଟି ସଂଗ୍ରାମୀର ପଣ ।

ନିଷ୍ଫଳ ହେବନି କେବେ ଜନତାର ବିପୁଳ ସାଧନା,
କୋରଡ଼ା ଓ କାରାଗାର ; ଫାଶିଖୁଣ୍ଟ, କଳା ନିର୍ଯାତନା ।

× × × ×

ପାଦେ ମୋର ପଡ଼ିରହେ ପଙ୍ଗୁ ପୁଞ୍ଜିବାଦ
ଦିଗ୍‌ବଳୟେ ଫୁଟେ ଅନିବାର୍ଯ୍ୟ ସେହି ଯେ ପ୍ରଭାତ—
ତାହାର ମୁଁ ଅଗ୍ରଦୂତ ।

ଆଲୋକର ଏକାନ୍ତ ସନ୍ତାନ,
କଣ୍ଠେ ମୋର ବାଜି ଉଠେ ଜୀବନର ବାଣୀ ।।

☐☐

# ବିପ୍ଳବୀ ସାହିତ୍ୟ କଣ ?

"ଯେଉଁ ସାହିତ୍ୟ ଅଭାବଚେତନାରେ ବିଦଗ୍ଧ ସେ ପ୍ରଚଳିତ ସମାଜ ବ୍ୟବସ୍ଥାକୁ ପ୍ରଚଣ୍ଡ ଆଘାତ କରେ ତାହାର ସଂହାର ଲାଗି, ତାକୁ ଧୂଳିସାତ୍ କରିବାକୁ । ଯେ ସାହିତ୍ୟ ସ୍ଥିତାବସ୍ଥାକୁ ଭାଙ୍ଗି ଚୂରି ଚୁରମାର କରିବାକୁ ଆହ୍ୱାନ ଦିଏ, ସେ ସମସ୍ତ କିନ୍ତୁ ବିପ୍ଳବୀ ସାହିତ୍ୟ ନୁହେଁ । କାରଣ ଏହା କେବଳ ଧ୍ୱଂସାତ୍ମକ, ନାସ୍ତିବାଚକ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ଭାବର ପ୍ରଖରତା ବା ଭାଷାର ତେଜସ୍ୱିତା ବିପ୍ଳବୀ ସାହିତ୍ୟର ବହିରାବରଣ ମାତ୍ର । ଧ୍ୱଂସାତ୍ମକ ସାହିତ୍ୟ ବିପ୍ଳବୀ ସାହିତ୍ୟ ନୁହେଁ । ଜନତାର ଅସନ୍ତୋଷକୁ ପୁଞ୍ଜି କରି ବ୍ୟକ୍ତିଗତ ସୁବିଧା ସୁଯୋଗ ହାସଲ କରିବା ସେ ପ୍ରକାର ସାହିତ୍ୟର ଚରମ ଧ୍ୟେୟ । ବ୍ୟକ୍ତିଗତ ଦୁରବସ୍ଥା ଲାଗି ରୋଷାଗ୍ନି ଜଳିଉଠେ; ତାହାର ପରିପୂରଣରେ ଅଗ୍ନି ନିର୍ବାପିତ ହୁଏ । ଏ ପ୍ରକାର ସାହିତ୍ୟରେ ଗଣଦାବି ଗୌଣ ଓ ବ୍ୟକ୍ତିର ଭାବମୂର୍ତ୍ତି ଗଠନ ମୁଖ୍ୟସ୍ଥାନ ଅଧିକାର କରିଥାଏ ।"

× × × ×

"ବିପ୍ଳବୀ ସାହିତ୍ୟ ଏକ ନୈବେଦ୍ୟ । ଅଭାବ ଚେତନାର ମହାଯଜ୍ଞରେ ତାହା ଜୀବନର କାମନା କରିଥାଏ । କାବ୍ୟ ରଚୟିତାର ଚତୁର୍ବର୍ଗ କାମନାରୁ ତାହା ସୃଷ୍ଟି ହୁଏନାହିଁ । ମୁକ୍ତିକାମୀ ଜନଗଣଙ୍କୁ ଉଦ୍‌ବୁଦ୍ଧ କରିବା, ସେମାନଙ୍କୁ ସଙ୍ଗଠିତ କରିବା ଓ ଦିଗ୍‌ଦର୍ଶନ କରିବାରେ ସହାୟକ ହେବାଲାଗି ତାହା ଉଦ୍ଦିଷ୍ଟ । ଯେଉଁମାନଙ୍କ ଲାଗି ଏହା ଉଦ୍ଦିଷ୍ଟ, ସେମାନେ ଯେଉଁ ଭାବ ଓ ଭାଷାରେ ଉଦ୍‌ବୁଦ୍ଧ ହେବେ, ସଂଗଠିତ ହେବେ ଓ ସଂଗ୍ରାମ କରିବେ, ତାହାହିଁ ଏହାର ଭାଷା ଓ ଶୈଳୀ ନିର୍ଦ୍ଧାରଣ କରିଥାଏ; ବ୍ୟାକରଣର ନିୟମ ବା ଅଳଙ୍କାର ଶାସ୍ତ୍ରର ଗତାନୁଗତି ଏହାକୁ ନିର୍ଦ୍ଦିଷ୍ଟ ରୂପରେଖ ମଧ୍ୟରେ ବାନ୍ଧି ରଖିପାରିବ ନାହିଁ । ଆବେଦନର ସଫଳତାରେ ଏହାର ମହତ୍ତ୍ୱ ନିହିତ ।

ବିପ୍ଳବୀ ସାହିତ୍ୟ ଏକ ଶାଣିତ ହତିଆର । ଏହା ଜନଗଣଙ୍କୁ ମଦତ ଦିଏ ସ୍ଥିତାବସ୍ଥାର ଗ୍ରୀବା ଉପରେ ଚଢ଼ାଉ କରିବାକୁ, ଶତ୍ରୁର ସେନାନୀକୁ ସାମନା କରିବାକୁ, ଗୁଳି ଓ ଆଇନକୁ ବେଖାତିର କରିବାକୁ, ମୃତ୍ୟୁକୁ ଉପହାସ କରିବାକୁ । ବ୍ୟକ୍ତିଗତ କାମନାର ସିଦ୍ଧି ଲାଗି ଯେଉଁମାନେ ଏହାର ପାଞ୍ଚଜନ୍ୟ ଫୁଙ୍କି ଜନଗଣଙ୍କୁ ପ୍ରତାରିତ କରନ୍ତି, ସେହି ନରାଧମମାନେ ଇତିହାସର ଅକ୍ଷମଣୀୟ ଅପରାଧୀ ।"

("ସ୍ୱେ ଚଉ ଚନ୍ତ୍ରଇ ଯାହା" — ରଘୁନାଥ ଦାସଙ୍କ "ପୁନଶ୍ଚ" କାବ୍ୟଗ୍ରନ୍ଥର ମୁଖବନ୍ଧରୁ ଗୃହୀତ )

# ମହାନାଟକ : ଏକ ଦୃଷ୍ଟିପାତ

## ଚିତ୍ତରଞ୍ଜନ ଦାସ

ଜୀବନକୁ, ସଂସାରକୁ, ଏପରିକି ଅନ୍ୟ ପୃଥିବୀକୁ ମଧ୍ୟ ଅନେକ ମଣିଷ ସମ୍ପୂର୍ଣ୍ଣ ଓ ସମଗ୍ର ଭାବରେ ଦେଖି ପାରନ୍ତି ନାହିଁ । ତେଣୁ ସେମାନେ ଯେତିକି ଦେଖନ୍ତି, ସେତିକିକୁ ସଂସାର, ପୃଥିବୀ ଓ ଜୀବନ ବୋଲି କହନ୍ତି । ହୁଏତ, ଯେଉଁବେଳେ ଯେତିକି ଦେଖନ୍ତି, ସେତେବେଳେ ତାହାକୁହିଁ ସବୁଯାକ ଓ ସବୁକିଛି ବୋଲି କହିବାରେ ଅଭ୍ୟସ୍ତ ହୋଇ ଯାଇଥାନ୍ତି । ଦୁଃଖବେଳେ ସଂସାରକୁ ଦୁଃଖପୂର୍ଣ୍ଣ ବୋଲି କହନ୍ତି, ଦୁଃଖ ଦୂର ହୋଇଗଲେ ଆଉ ତାହାକୁ ଠିକ୍ ବିପରୀତ ବୋଲି କହିବାକୁ ରାଜି ହୁଅନ୍ତି ନାହିଁ । ଏହି ଲୋକମାନେ ନିଜକୁ ସବା ମଝିରେ ରଖି ସଂସାରକୁ ଦେଖନ୍ତି, ନିଜର ଦର୍ପଣଟା ଉପରେ ହିଁ ଯାହା କିଛି ଦେଖନ୍ତି । ମାତ୍ର, ସଂସାରର ଦର୍ପଣ ଉପରେ ସଂସାରକୁ ଦେଖିବା— ତାହା ହେଉଛି ଏକାବେଳକେ ଏକ ଭିନ୍ନ କଥା ।

କେତେ ବିଜ୍ଞ ଓ ପଣ୍ଡିତ ମନୁଷ୍ୟ ଆମର ଏହି ସଂସାର ବା ପୃଥିବୀକୁ ଏକ ନାଟକ ବୋଲି ଦେଖିଛନ୍ତି । ପୃଥିବୀ ହେଉଛି କୁଆଡେ ଏକ ରଙ୍ଗମଞ୍ଚ, ଯେଉଁଠାକୁ ଆମେ ମଣିଷମାନେ ନିଜନିଜର ନିର୍ଦ୍ଧାରିତ ଅଭିନୟଟିକୁ ସାରିଦେବାକୁ ଆସୁ, ସାରିଦେଇ ଆଉ କୁଆଡେ ବାହାରିଯାଉ । ମାୟାବାଦୀମାନେ ମଧ୍ୟ ଆମର ଏହି ସଂସାରକୁ ନାଟକ ବୋଲି କହିଛନ୍ତି । ପ୍ରାଚୀନ ଗ୍ରୀସର ନାଟ୍ୟକାରମାନେ ବି ମନୁଷ୍ୟର ଏହି ଜାଗତିକ ଜୀବନ-ଲୀଳାକୁ ଏପରି ନାନା ଆକସ୍ମିକ ପୂର୍ବନିର୍ଦ୍ଧାରଣର ପରିଣାମ ରୂପେ ବର୍ଣ୍ଣନା କରିଛନ୍ତି, ଯେଉଁଥିରେ କି ନିଜକୁ ନିମିତ୍ତ କରି ଯଥାସମ୍ଭବ ଅଧିକ ତ୍ରିଘାର ସହିତ ଜୀବନକୁ, ସଂସାରକୁ ଆଉ ପୃଥିବୀକୁ ହୁଏତ ଏକ ଅବିଚ୍ଛିନ୍ନ ଓ ବିବର୍ତ୍ତିମାନ ଧାରା ବୋଲି ଅନୁଭବ କରିବା ଲାଗି ଆଉ କେଉଁ ଅକାଟ୍ୟ ବିଧାନର ଚକ୍ରରେ ମୃଗୀ ହୋଇ ନାଚୁଥିବା ମଣିଷକୁ ସତେ ଅବା ଆଦୌ କୌଣସି ବଳ କିମ୍ବା ସାମର୍ଥ୍ୟ ଦିଆ ଯାଇନାହିଁ ।

ନାଟକ ଆଉ ମହାନାଟକ ଭିତରେ ଅନେକ ଫରକ ରହିଛି । ନାଟକ ଆରମ୍ଭ ହୁଏ, ସରିଯାଏ । ମହାନାଟକର ଆରମ୍ଭ ନଥାଏ, ଶେଷ ମଧ୍ୟ ନଥାଏ ; କେବଳ ଏହି ପ୍ରବାହ ରହିଥାଏ, ଏକ ଅବିରତ ପ୍ରକ୍ରିୟା ରହିଥାଏ । ସେହି ପ୍ରକ୍ରିୟାଟିକୁ ଅଧିକ ସ୍ପଷ୍ଟ ଭାବରେ ବୁଝିବାକୁ ଚେଷ୍ଟା କରି, ତାହା ଭିତରେ ଏକ ବୈଜ୍ଞାନିକ ସମୀଚୀନତାର ପ୍ରବେଶ ଘଟାଇ ଏବେ ଆଧୁନିକ ଯୁଗରେ ତାହାକୁ ବିବର୍ତ୍ତନ ବୋଲି ବୁଝାଯାଉଛି ।

ତାହା ଏକ ସମଗ୍ର ତଥା ମୀମାଂସକ ସତ୍ୟରୂପେ ବୁଝିବାର ପଦ୍ଧତିଟିକୁ ବିବର୍ତ୍ତନବାଦ ବୋଲି କୁହାଯାଉଛି । ସେହି ବିବର୍ତ୍ତନବାଦକୁ ମଧ୍ୟ ନାନା ମୁନି ନାନା ଭଳି ଦେଖିଛନ୍ତି, ତେଣୁ ତାହାର ନାନାଭଳି ବ୍ୟାଖ୍ୟା କରିଛନ୍ତି । ସଂସାର ଗୁଳୁଛି, ପୃଥିବୀ ଗୁଳୁଛି, ତାହାର ମଧ୍ୟରେ ଜୀବନର ନାନା ରୂପାୟନ ହେବାରେ ଲାଗିଛି ; ବ୍ୟକ୍ତିଗତ ଓ ସାମୂହିକ ଉଭୟ ଜୀବନ ମତେଅବା କେଉଁ ସମଗ୍ର ସୃଷ୍ଟିକର୍ତ୍ତାର ନିର୍ଦ୍ଦେଶ ଓ ଅଭିପ୍ରାୟ ଅନୁସାରେ ପର୍ବ ପର୍ବ ହୋଇ ଉକୁଟି ଉଠିବାରେ ଲାଗିଛି । ମତେଅବା କାହାର ଏକ ପ୍ରୟୋଗ ଗୁଳୁଛି । ମତେଅବା ଆଗକୁ, ଆହୁରି ଆଗକୁ ଥିବା କୌଣସି ନିୟତିରେ ଯାଇ ଉପନୀତ ହେବାଲାଗି ସେହି ପ୍ରୟୋଗ ଲାଗିରହିଛି । ଆଉ କେହି କେହି ଦାବିକରି କହୁଛନ୍ତି, ନାହିଁ, ଏହି ବିବର୍ତ୍ତନ ବା ମହାନାଟକ ପଛରେ ଆଦୌ କୌଣସି ନିର୍ଦ୍ଦେଶ ନାହିଁ କି ନିୟତି ନାହିଁ । ସେହି ପ୍ରୟୋଗ ଆପଣାଛୁଏଁ ଗୁଳୁଛି ।

ଏହି ପୃଥିବୀର ଏକ ଇତିହାସ ରହିଛି । ଆଗେ ପ୍ରାଚୀନ ପୃଥିବୀରେ ଏହି ଇତିହାସବୋଧ ଆଦୌ ସ୍ପଷ୍ଟ ଭାବରେ ନଥିଲା । ଅଧିକାଂଶ ମଣିଷ ଜଣେ ଈଶ୍ୱର ଅଥବା ଏକ ବହିଃସ୍ଥ ଈଶ୍ୱରଶକ୍ତି ହିଁ ପୃଥିବୀର ଇତିହାସକୁ ପରିଚାଳିତ କରୁଛି ବୋଲି ବିଶ୍ୱାସ କରୁଥିଲେ । ଜାତୀୟତାବାଦର ଯୁଗରେ ଇଉରୋପର ଯେତେ ବିଚାରକ ଇତିହାସ ବିଷୟରେ ଆଲୋଚନା କରିଥିଲେ, ସେମାନେ ପ୍ରାୟ ସମସ୍ତେ ଜଣେ ପରମେଶ୍ୱର ହିଁ ପୃଥିବୀରେ ବିଭିନ୍ନ ଜାତିକୁ ଏକ ବିଶେଷ ନିୟତି ସହିତ ପୃଥିବୀ ପୃଷ୍ଠକୁ ପ୍ରେରଣ କରିଛନ୍ତି ଓ ସେହି ଅନୁସାରେହିଁ ପୃଥିବୀର ନିୟତି ଆକାର ଗ୍ରହଣ କରିବାରେ ଲାଗିଛି ବୋଲି ଘୋଷଣା କରିଛନ୍ତି । ଡାର୍‌ୱଇନ୍‌ଙ୍କ ବିବର୍ତ୍ତନବାଦର ପ୍ରାୟ ଏକ ଦାର୍ଶନିକ ସମାନ୍ତର ଭାବରେ ହିଁ କାର୍ଲ୍ ମାର୍କସ ଇତିହାସର ଏକ ଗତିଶୀଳ ଦ୍ୱନ୍ଦ୍ୱମୂଳକ ବ୍ୟାଖ୍ୟା ପରିବେଷଣ କରିଥିଲେ । ପୃଥିବୀ ଗୁଳୁଛି, ସାମାଜିକ ତଥା ଗୋଷ୍ଠୀସମ୍ବନ୍ଧଗତ ଆହ୍ୱାନଗୁଡ଼ିକର ସମାଧାନ ଓ ତଜ୍ଜନିତ ଆପାତ ସମନ୍ୱୟଗୁଡ଼ିକୁ ଜନ୍ମ ଦେଇ ମନୁଷ୍ୟର ଇତିହାସ ଗୁଳୁଛି ବୋଲି ମାର୍କସ୍ ଘୋଷଣା କରିଥିଲେ । ପୃଥିବୀର ସେହି ମହାନାଟକ ଏକ ଆରୋହଣକ୍ରମର ପଦ୍ଧତିରେ ଗତି କରୁଛି ବୋଲି ସେ ପ୍ରତିପାଦନ କରାଇବାକୁ ଚେଷ୍ଟା କରିଥିଲେ । କୁହାଯାଇପାରେ, ଡାର୍‌ୱଇନ ବିବର୍ତ୍ତନବାଦର ସଦନଟିରେ ଯେଉଁ ଦ୍ୱାରଟିର ଉନ୍ମୋଚନ କରାଇଥିଲେ, ମାର୍କସ୍ ନିଜର ବିଚାରକୁ ବାଢ଼ିଦେଇ ସେହି ଧାରାରେ ଆମକୁ ଆଉ କେତୋଟି ସୋପାନର ସୂଚନା ଦେଇ ଯାଇଥିଲେ । ମାର୍କସଙ୍କଠାରୁ ବର୍ଗସଁଙ୍କର ବାଟ ଦେଇ ଶ୍ରୀ ଅରବିନ୍ଦ ଏବଂ ଦ ସାର୍ଦାଁଙ୍କ (De Chardin) ପର୍ଯ୍ୟନ୍ତ ବିବର୍ତ୍ତନ ବିଚାରର ବିଭିନ୍ନ ମୋଡ଼, ଭଙ୍ଗ ଏବଂ ସୋପାନ-ଅତିକ୍ରମଣ, ଜୀବନକୁ ଭୂମି କରି ଆମ ପୃଥିବୀ ଉପରେ ଅଭିନୀତ ହେବାରେ ଲାଗିଥିବା ମହାନାଟକଟିକୁ ଯଥାସମ୍ଭବ ଅଧିକ ସମଗ୍ର ଭାବରେ ଅନୁଭବ କରିବାକୁ ହେଲେ ଆମକୁ ସେହି ସବୁଗୁଡ଼ିକ ପଛରେ ରହିଥିବା ବ୍ୟାଖ୍ୟା ତଥା ଅନ୍ତର୍ଦୃଷ୍ଟିଗୁଡ଼ିକ ସହିତ ପରିଚିତ ହେବାକୁ ପଡ଼ିବ ।

ଆମେ ଏହିପରି ଏକ ଅବତରଣିକା ଉପରେ ହିଁ କବି ଶ୍ରୀ ରଘୁନାଥ ଦାସଙ୍କର 'ମହାନାଟକ' କବିତାକୁ ଅବଲୋକନ କରିବାକୁ ମନ କଲେ ଯାଇ ତାହାକୁ ହୁଏତ ଏକ ସମଗ୍ରତର ପ୍ରସ୍ଥ ଦେଇ ବୁଝିବା ଲାଗି ସମର୍ଥ ହେବା । ପୃଥିବୀରେ ମାନବ-ଇତିହାସର ଦୃଷ୍ଟିକୋଣକ୍ରମକୁ କବି ଆଠୋଟି ସୋପାନ ଦେଇ ବର୍ଣ୍ଣନା କରିଛନ୍ତି । ଆଉ ଏକ ସଂକ୍ଷିପ୍ତରେ କହିଲେ, ଇତିହାସରୂପୀ ମହାନାଟକକୁ ସେ ଆଠଗୋଟି ବିଭିନ୍ନ ଅଙ୍କରେ ବିଭକ୍ତ କରିଛନ୍ତି । ପ୍ରଥମ ସୋପାନରେ ମନୁଷ୍ୟ ଅଜ୍ଞ ଥିଲା, ତେଣୁ ସରଳ ଥିଲା । ତା' ଜୀବନର ବ୍ୟବସ୍ଥାଗୁଡ଼ିକ ଭିତରେ କୌଣସି ଜଟିଳତା ପ୍ରବେଶ କରି ନଥିଲା, ମଣିଷ ଅଳପ ଥିଲେ, ସେମାନେ ପରସ୍ପର ଠାରୁ ଅଲଗା ହୋଇ ନାନା ସାନ ସାନ ଗୋଷ୍ଠୀରେ ବାସ କରୁଥିଲେ । ତେଣୁ ବ୍ୟକ୍ତି-ବ୍ୟକ୍ତି କିମ୍ବା ଗୋଷ୍ଠୀ ଗୋଷ୍ଠୀ ସଂଘର୍ଷର ପ୍ରାୟ କୌଣସି ଅବକାଶ ନଥିଲା । ସାମ୍ପ୍ରଦାୟିକ ଜୀବନର ସେହି ପର୍ଯ୍ୟାୟଟିକୁ ମାର୍କସ୍ Primitive Communism ବା ଆଦିମ ସାମ୍ୟ ସମ୍ବନ୍ଧର ପର୍ଯ୍ୟାୟ ବୋଲି କହିଛନ୍ତି । ଧରଣୀ ସହିତ ଆଦିମ ମଣିଷର ପ୍ରାୟ ଏକ ସହଜାତ ପ୍ରବୃତ୍ତିଗତ ଏକାତ୍ମକତା ରହିଥିଲା । 'ମହାନାଟକ'ର କବି ସେହି ଏକାତ୍ମକତାକୁ ଭାରତବର୍ଷର ବୈଦିକ କାଳରେ କାବ୍ୟଲେଖକ ଋଷିମାନେ ମନ୍ତ୍ର ଆକାରରେ ଗାନ କରି ଯାଇଥିବା ଏକାତ୍ମକତା ଉପରେ ଆଣି ଆରୋପିତ କରି ଦେଇଛନ୍ତି । ବେଦର ଶୃଙ୍ଖିମନ୍ତ୍ର ଗୁଡ଼ିକ ଅତ୍ୟନ୍ତ ଜୀବନବାଦୀ, ସେଥିରେ ସର୍ବଜନର କଲ୍ୟାଣ କାମନା ଅନୁସିକ୍ତ ହୋଇ ରହିଛି । ମନୁଷ୍ୟ ଏବଂ ପ୍ରକୃତି ମଧ୍ୟରେ ରହିଥିବା ଏକ ସହଜ ଆତ୍ମୀୟତା ଧ୍ୱନିତ ହୋଇ ଉଠୁଛି । ସୃଷ୍ଟିର ସମଗ୍ର ଛନ୍ଦ ଏବଂ ମାନବଜୀବନର ବହୁବିଧ ଏକକ ଛନ୍ଦଗୁଡ଼ିକ ମଧ୍ୟରେ ସେତେବେଳେ ମନୁଷ୍ୟ ପ୍ରାୟ ଆଦୌ କୌଣସି ବିରୋଧ କିମ୍ବା ବିବାଦ ରହିଛି ବୋଲି ଅନୁଭବ କରି ପାରିନାହିଁ ।

ଦ୍ୱିତୀୟ ଅଙ୍କରେ ଏକ ବିଭ୍ରାଟ ଘଟିଛି । ସଂସାର ଭିତରେ ଅହଙ୍କାରିତା ପ୍ରବେଶ କରିଛି, ବଡ଼ ସାନ ଭେଦ ଆସି ପଶିଯାଇଛି । ମଣିଷ ଆଉ ପ୍ରକୃତି ଭିତରେ ଲାଗି ରହିଥିବା ନାଡ଼ଟି ଛିନ୍ନ ହୋଇ ଯାଇଛି । ଗୋଟିଏ ମାନବସମୂହ ନାନା ଜାତି ଓ ଶ୍ରେଣୀରେ ବିଭକ୍ତ ହୋଇଛି । ଜାତିଭେଦ ଆସି ପହଞ୍ଚି ଯାଇଛି । କିଏ ରାଜା ହୋଇଛି, ଅନ୍ୟ ବହୁଜନଙ୍କୁ ପ୍ରଜା ଜ୍ଞାନରେ, ତୁଚ୍ଛ ଜ୍ଞାନରେ ଦେଖିବାକୁ ଆରମ୍ଭ କରିଛି । ଅହମିକା କେତେକ ମନୁଷ୍ୟଙ୍କୁ ଅନ୍ୟମାନଙ୍କ ଉପରେ ବଳବନ୍ତ ହୋଇ ରହିବା ଲାଗି ପାଷଣ୍ଡ ପ୍ରେରଣା ଆଣି ଦେଇଛି । ବଳବନ୍ତମାନେ ହିଁ ସବୁଯାକ ସାମଗ୍ରୀକୁ ଆତ୍ମୋଦରସାତ୍ କରିବା ଲାଗି ଇଚ୍ଛା କରିଛନ୍ତି । କବିଙ୍କର କହିବା ଅନୁସାରେ ଏକ 'ମୁଁ କାର' ପ୍ରଣୋଦିତ ସମ୍ପତ୍ତି-ବୋଧ ମନୁଷ୍ୟର ଚେତନାକୁ ଆସି ଗ୍ରାସ କରିଛି ଏବଂ 'ସମାଜକୁ କାଳ ପରି ହୋଇଛି । ତାହାରି ଲାଗି ଦ୍ୱନ୍ଦ୍ୱ ଲାଗିଛି, ପୁରେ ପୁରେ ବିପତ୍ତି ଘଟିଛି ।'

ତୃତୀୟ ପର୍ବ ହେଉଛି ଗୌତମ ବୁଦ୍ଧଙ୍କର ପର୍ବ । ଅହଂଲିପ୍ତତା ହେତୁ ମନୁଷ୍ୟ ସହିତ ବିଶ୍ୱର ଅସଲ ନାଡ଼ଟି ଛିଡ଼ିଯିବାରୁ ଏକ ବହିଃଲିପ୍ତତା ପ୍ରବଳ ଭାବରେ ମଣିଷ-

ମାନଙ୍କୁ ଆସି ଗ୍ରାସ କଲା । ସେଇଥିରୁ ଶାସ୍ତ୍ରାନୁଗତା ଜନ୍ମଲାଭ କଲା, ପ୍ରାଣହୀନ କର୍ମକାଣ୍ଡ ମନୁଷ୍ୟର ଚେତନାକୁ ଆସି ମାଡ଼ି ବସିଲା । 'ଘଉତର ପ୍ରଭୁ ଭ୍ରାନ୍ତ ଧର୍ମନାମେ ନୃର ବ୍ୟଭିଚାର' ଗ୍ରାସିଲା । ଏକ ସମାଧାନ ଯୋଗାଇଦେଇ ଗୌତମ ବୁଦ୍ଧଙ୍କର ଆବିର୍ଭାବ ହେଲା । ସିଏ ମଣିଷମାନଙ୍କ ଭିତରେ ଠିଆ ହୋଇ ତଥାକଥିତ ଯୁଗାଗ୍ରବର୍ତ୍ତିଙ୍କ ବିରୋଧରେ ପ୍ରତିବାଦ-ଘୋଷଣା କଲେ, "ଆଚରଣେ ସଦାଗ୍ରହ, ଭକ୍ତି ପ୍ରୀତି କର ରୁ ପ୍ରତିଷ୍ଠା" ବୋଲି କହିଲେ, "ଲୋଡ଼ା ନାହିଁ ମନ୍ତ୍ରତନ୍ତ୍ର, ଲୋଡ଼ା ନାହିଁ ପୂଜାର ନୈବେଦ୍ୟ" ବୋଲି କହିଲେ । ତୃଷ୍ଣାର ନିର୍ବାଣ ଘଟାଇ କର୍ମଦ୍ୱାରା ଜୀବନର ପ୍ରତିଷ୍ଠା କରିବା ବାଣୀ ପ୍ରଚାର କଲେ । ତା'ପରେ ପ୍ରାୟ ପାଞ୍ଚଶହ ବର୍ଷ ପରେ ଯୀଶୁ ଆସିଲେ । କବି ତାହାଙ୍କୁ ଇତିହାସର ଚତୁର୍ଥ ଅଙ୍କ ବୋଲି କହିଛନ୍ତି । ଯୀଶୁ ପ୍ରେମ ସାମ୍ରାଜ୍ୟକୁ ସବାବଡ଼ ବୋଲି ସ୍ୱୀକାର କଲେନାହିଁ — ପୃଥିବୀର ଯାବତୀୟ ସାମ୍ରାଜ୍ୟ ଉପରେ ଭଗବାନଙ୍କର ସାମ୍ରାଜ୍ୟ ପ୍ରତିଷ୍ଠିତ ବୋଲି ଘୋଷଣା କଲେ । ସେ ପ୍ରେମର ବାଣୀ ଶୁଣାଇଲେ, ସମର୍ପଣର ବାଣୀ ଶୁଣାଇଲେ, ଆତ୍ମଦାନର ବାଣୀ ଶୁଣାଇଲେ— ସତ୍ୟାଗ୍ରହର ଦୃଷ୍ଟାନ୍ତ ହୋଇ ରହିଲେ । ସିଏ ମଣିଷକୁ ଉଦ୍ଦେଶ୍ୟ କରି 'ନିଜକୁ ନମଣ ସାନ' ବୋଲି କହିଲେ, 'ଶତ୍ରୁକୁ ସମ୍ବର୍ଦ୍ଧିତ କଲେ, ଜାରଜକୁ ଦେବଶିଶୁ ବୋଲି କହିଲେ, ଦଳିତଙ୍କୁ କୋଳରେ ତୋଳି ଧରିଲେ । ପତିତମାନଙ୍କୁ ଉଦ୍ଧାର କଲେ ।' ମନୁଷ୍ୟ ଲାଗି ପରମେଶ୍ୱରଙ୍କର କୃପାଭିକ୍ଷା କରି ସେ କ୍ଷମତାପନ୍ନ ମଣିଷ ତାଙ୍କୁ ଦେଇଥିବା ଦଣ୍ଡ ଓ କଷ୍ଟକୁ ହସି ହସି ବରଣ କଲେ । ସେ ଇତିହାସରେ 'ମାନବପୁତ୍ର' ହୋଇ ରହିଲେ । ପୃଥିବୀକୁ ଆପଣାର ସଦନରୂପେ ସ୍ୱୀକାର କରି ନେଇଥିବା ତୁମ ଆମ ପ୍ରତ୍ୟେକ ମନୁଷ୍ୟଙ୍କ ଲାଗି ସେ ଆହ୍ୱାନ ହୋଇ ରହିଲେ, ପ୍ରେରଣା ହୋଇ ରହିଲେ ।

ପଞ୍ଚମ ଅଙ୍କ ହେଉଛି ଫରାସୀ ବିପ୍ଳବର ପର୍ଯ୍ୟାୟ । ରାଜତନ୍ତ୍ର, ଆସନତନ୍ତ୍ର ଏବଂ ରାଷ୍ଟ୍ରବଳ ବିରୋଧରେ ସାଧାରଣ ମନୁଷ୍ୟର ବିଦ୍ରୋହ ଘୋଷଣା । ବିଶ୍ୱମାନବର ମୁକ୍ତି ଘୋଷଣା । ମଣିଷ ଯେତେବେଳେ ମୁକ୍ତ ଓ ସ୍ୱାଧୀନ ହେବାକୁ ସଂକଳ୍ପ ନେଇ ବାହାରେ, ସେତେବେଳେ ସିଏ କାଳକୁ ଜୟ କରେ; 'ଯୁଗାନ୍ତର କଳଙ୍କିତ ସାମନ୍ତବନ୍ଧନ ଛିଡ଼ିପଡ଼େ, ଭୂମିଦାସମାନେ ମୁକ୍ତ ହୁଅନ୍ତି', ସଚେତନ ହୁଅନ୍ତି— ସମ-ଅଧିକାର ଏବଂ ଭ୍ରାତୃତ୍ୱର ମହା-ଧ୍ୱନିରେ ଇତିହାସ ଆପଣାର ଆଉଗୋଟିଏ ସ୍ୱପ୍ନପାହାଚକୁ ସ୍ପର୍ଶ କରେ । ସେହି ପାହାଚ କାଳକାଳକୁ ପ୍ରେରଣା ହୋଇ ରହିଯାଏ । ଫରାସୀ ବିପ୍ଳବର ବାଣୀ ପୂର୍ଣ୍ଣତର ଏବଂ ଅଧିକ ଶକ୍ତିମନ୍ତ ହୁଏ କାର୍ଲ ମାର୍କସଙ୍କର ବିମୋଚନକାମୀ ବାଣୀ ଦ୍ୱାରା, ବିପ୍ଳବର ବିଜ୍ଞାନ ଦ୍ୱାରା । ମନୁଷ୍ୟକୁ ତାହା ମନୁଷ୍ୟପଣର ବିବେକ ଏବଂ ଶକ୍ତି ଦ୍ୱାରା ସଚେତନ ହୋଇ ଆଗକୁ ବାହାରିବାକୁ ଉଦ୍‌ବୋଧନ ଦିଏ । ପୃଥିବୀକୁ ଗଢ଼ିଥିବା ମନୁଷ୍ୟମାନେ ସତେଅବା ଆପଣା ଭିତରୁ ଏକ ଅଭିନବ ଉତ୍ତରଣ ଏବଂ ଆତ୍ମଆବିଷ୍କାରର ଆଘାତ ପାଇ କହନ୍ତି— 'ଆମ ରକ୍ତେ ଚଳେ କଳ, ବଳେ ଆମେ ଠେଲୁ ହଳ, ସବୁରି ଜନକ ଆମେ, ସବୁଥିରୁ ଆମେ ତ ବଞ୍ଚିତ ।' କବି ଏହି ଷଷ୍ଠ ପାହାଚଟିର ପ୍ରତିଷ୍ଠା ଘୋଷଣା କରି କହିଛନ୍ତି—

"ଅବତୀର୍ଣ୍ଣ କର୍ଣ୍ଣଧାର କାର୍ଲ ମାର୍କସ ବିପ୍ଳବ ବଂଶୀ, ବହ୍ନିତର ମନ୍ତ୍ରଦାତା ସଖା, କୃଷ୍ଣ ସୁଦର୍ଶନପାଣି" ବୋଲି କହିଛନ୍ତି । ଏହି ସୋପାନଟିରେ ପାଦ ଦେଇ ମଣିଷ ଭିତରେ ତାହାଠାରୁ ପାହାଚ ଚଢ଼ି ଅଗ୍ରସର ହୋଇ ଯାଉଥିବା ସଂକଳ୍ପପୁରୁଷ ଏକ ନୂତନ ଐକ୍ୟବଦ୍ଧ ମାନବ ଜାତିର ସ୍ୱପ୍ନ ଦେଖିଛି । କବିଙ୍କର ରୂପକଳ୍ପଗୁଡ଼ିକ ଅନୁସାରେ, ବିଶ୍ୱରୂପୀ ସେହି କୁରୁକ୍ଷେତ୍ରର ଯୁଦ୍ଧରେ, "ଲେନିନ୍ ଅଗ୍ରଜ ହୋଇ ବାହାରିଛନ୍ତି, ମହାତେଜା ମହାରଥୀ ଧନୁର୍ଦ୍ଧର ଅର୍ଜୁନ ହୋଇଛି, ହୋ-ଚି-ମିନ୍ ଭୀମର ଭୂମିକା ଗ୍ରହଣ କରିଛନ୍ତି, ଯୁଗୋସ୍ଲାଭିଆ ଓ କ୍ୟୁବା ଯଥାକ୍ରମେ ନକୁଳ ଓ ସହଦେବ ହୋଇଛନ୍ତି ।". ଏକ ଭବିଷ୍ୟ-ପ୍ରତିଶ୍ରୁତିର ଘୋଷଣା କରି କବି "ଅକୌରବା ହେବ ନିଶ୍ଚେ ଧରା, ସମାଜର ମୁକ୍ତିମାର୍ଗେ ନାୟକତ୍ୱ କରେ ସର୍ବହରା" ବୋଲି ଗାଇ ଉଠିଛନ୍ତି ।

'ମହାନାଟକ'ର ସପ୍ତମ ଉଦ୍‌ଘାଟନରେ ଭାରତବର୍ଷରେ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କର ଆବିର୍ଭାବ ଘଟିଛି । ଗାନ୍ଧୀ ବିଶ୍ୱ-ସାମ୍ରାଜ୍ୟବାଦ ବିରୁଦ୍ଧରେ ମାନବ-ପ୍ରତିବାଦର ଏକ ନିଃସ୍ୱାର୍ଥୀର ଶକ୍ତିଶାଳୀ ପ୍ରତୀକ । ମଣିଷ ଦ୍ୱାରା ମଣିଷ ଉପରେ ହେଉଥିବା ଯାବତୀୟ ଶୋଷଣକୁ ସବୁଦିନ ସକାଶେ ଅନ୍ତ କରିବାର ଆହ୍ୱାନ – ତାହାହିଁ ଗାନ୍ଧୀ । ଏହି ନୂତନ ଆହ୍ୱାନ ଫଳରେ, "ସାମ୍ରାଜ୍ୟର ଜତୁଗୃହ ଜଳିଯାଏ ସତ୍ୟ-ବହ୍ନି ତେଜେ । ବିପର୍ଯ୍ୟସ୍ତ ଅନ୍ଧକାର ଲୁଚେ ଯଥା ଉଦ୍‌ଭାସିତ ସୂର୍ଯ୍ୟେ ।" ଗାନ୍ଧୀ ମଣିଷକୁ "ଦୁର୍ବଳ ତୁ ନୋହୁ କେବେ" ବୋଲି କହି ବଳ ଦେଇଛନ୍ତି ; ସେ ଏକ ଅନ୍ୟ ବଳର କଥା କହିଛନ୍ତି । ନିର୍ଭୀକତାର ବାଣୀ ଶୁଣାଇ ଯୁଗ ଯୁଗର ନାନା କୋପ ଦ୍ୱାରା ପୀଡ଼ିତ ଓ ପେଷିତ ହୋଇ ରହିଥିବା ମଣିଷକୁ ବଳବାନ୍ କରିବାକୁ ମନ କରିଛନ୍ତି । ଗାନ୍ଧୀଙ୍କ ପରେ ଶ୍ରୀ ଅରବିନ୍ଦ ; କବିଙ୍କର ଅଙ୍କ କ୍ରମରେ ତାହା ଅଷ୍ଟମ ଅଙ୍କ । ଆମ ନିଜସ୍ୱ ନିର୍ମାଣର ଧାରାରେ ତାହା ହେଉଛି ଆମଲାଗି ସାମ୍ପ୍ରତିକତମ ଉଦ୍‌ବୋଧନ । ତାହା ଏକ ଉତ୍ତରଣ ଏବଂ ଅତିକ୍ରମଣର ଉଦ୍‌ବୋଧନ । ନିଜ ଭିତରେ ନିଜକୁ ଅତିକ୍ରମ କରିଯାଇ ପାରିଲେ, ଆପଣା ଅହଂର ଦୁଷ୍ଟ ବାଡ଼ଗୁଡ଼ିକୁ ଉଠାଇ ଦେଇ ପାରିଲେ ମନୁଷ୍ୟ ଏକ ଅନ୍ୟ ଭୂମିକୁ ଉନ୍ନୀତ ହୋଇଯିବ, ଯେଉଁଠାରେ କି ସିଏ ଏକ ଅନ୍ୟ ଆତ୍ମୀୟତା ମଧ୍ୟରେ ନିଜକୁ ତଥା ପରସ୍ପରକୁ ଦେଖିବା ଲାଗି ସମର୍ଥ ହେବ । ସେହି ନୂତନ ଚେତନାକୁ ଲାଭ କରି ସିଏ ଏକ ନୂତନ ପାରସ୍ପରିକତା, ସମାଜ, ସମ୍ବନ୍ଧ ଓ ଶାସନ ସମ୍ଭବ କରି ପାରିବ । ତାହାର ନୂତନ ମନ୍ତ୍ରଟି ହେଉଛି, "ନରଲୋକେ ଅମରତ୍ୱ, ନରଦେହେ ଦେବତ୍ୱ ସମ୍ଭବ ।" ସେହି ପ୍ରତିଶ୍ରୁତି ହେଉଛି ପୂର୍ଣ୍ଣ-ଯୋଗର ପ୍ରତିଶ୍ରୁତି । ଡାର୍‌ଉଇନ୍ ଓ ତାଙ୍କର ବୈଜ୍ଞାନିକ ବିବାଦରମାନେ ବିବର୍ତ୍ତନକୁ ତାହାର ସର୍ବମୂଳ ଜୈବବିନ୍ଦୁଠାରୁ ନରର ସ୍ତର ପର୍ଯ୍ୟନ୍ତ ଟାଣି ଆଣିଥିଲେ । ସେମାନଙ୍କୁ ଅତିକ୍ରମ କରି ଶ୍ରୀ ଅରବିନ୍ଦ "ଦେବନରର ଅବତୀର୍ଣ୍ଣ" ହେବା କଥା କହିଲେ । ଶିଖର ଆରୋହଣର କଥା କହିଲେ ; ଆପଣାର ଅସଲ ମୂଳଟିର ଉପଲବ୍‌ଧି କଥା କହିଲେ ।

କବି ରଘୁନାଥ ଦାସ ବହୁବର୍ଷ ପୂର୍ବେ କବିତା ଲେଖୁଥିଲେ । ୧୯୫୩ ମସିହା ପର୍ଯ୍ୟନ୍ତ ତାଙ୍କର ଯେଉଁସବୁ କବିତା ପ୍ରକାଶ ପାଇଥିଲା, ସେଗୁଡ଼ିକର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଥିଲା, ଏକ ସ୍ୱକୀୟ ଆବେଦନ ନିଷ୍ଠା ମଧ୍ୟ ରହିଥିଲା । ବିଶେଷତଃ, ଭାରତବର୍ଷ ରାଜନୀତିକ ସ୍ୱାଧୀନତା ଲାଭ କରିବା ପରେ ଏକାଧିକ ବିପ୍ଳବୀ କବି ଯେତେବେଳେ ଅନ୍ୟ ନାନା ପୁଚ୍ଛମାନ ଲଗାଇ ଆଧୁନିକ ହେଲେ, ସେତେବେଳେ ମଧ୍ୟ ଶ୍ରୀଯୁକ୍ତ ଦାସ ନିଜକୁ ସେଭଳି କୌଣସି ପ୍ରକାର ଲେଭରୁ କ୍ଷାନ୍ତ କରି ରଖି ପାରିଥିଲେ । ସମ୍ଭବତଃ, ଏହିସବୁ ଅନ୍ୟ ସ୍ରୁଆଙ୍ଗ ଦେଖି ସିଏ କବିତାର କ୍ଷେତ୍ରରୁ କ୍ରମଶଃ ଅପସରି ଯାଇଥିଲେ । ବାହାରକୁ ଦେଖିବା ଲାଗି ନୀରବ ରହିଲେ ଏବଂ ପ୍ରାୟ କୋଡ଼ିଏ ବର୍ଷର ନୀରବତା ପରେ ୧୯୭୨ ମସିହାରେ ସେ ଯେତେବେଳେ ପୁନର୍ବାର କବିତା ଲେଖିବାକୁ ଆରମ୍ଭ କଲେ, ସେତେବେଳେ ତାଙ୍କର ଲେଖନୀ ପ୍ରମାଣ କରିଦେଲା ଯେ, କବି ପ୍ରକୃତରେ କୋଡ଼ିଏ ବର୍ଷ କାଳ କେବଳ ନୀରବ ଦ୍ରଷ୍ଟା ହୋଇ ରହିନଥିଲେ । ଆପଣାର ଅନୁବୋଧ ଓ ସମ୍ବେଦନାର ଦ୍ୱାରକୁ ସେ କୁଏତ କେବେହେଲେ ବନ୍ଦ କରିନଥିଲେ । ଯେଉଁମାନେ ନୂଆ ଶୈଳୀର ବାଣ ମାରି ଆଧୁନିକ ମାର୍ଗରେ କବିତା ଭିତରେ ପ୍ରାୟ ଏକ ନ'କାରର ପର୍ବ ଲୁଟାଇ ଦେବାପାଇଁ ଆଭିନିବେଶ ସିଦ୍ଧ ବାହାରିଥିଲେ, ସେମାନେ କୁଏତ ଭିତରେ ଦ୍ୱାର ବନ୍ଦ କରି ବସିଥିଲେ, ବାହାରେ ଅଳଙ୍କାରଗୁଡ଼ାକ ଦେଖାଇ ହେଉଥିଲେ ଏବଂ ସ୍ୱାଧୀନତା ପରବର୍ତ୍ତୀ କାଳଟିକୁ ଯଥାସମ୍ଭବ ଅଧିକ ସଫଳତାର ସହିତ ଭୋଗ କରିବାରେ ମନୋନିବେଶ କରିଥିଲେ । କବି ରଘୁନାଥ ଦାସ ତାଙ୍କର ଦ୍ୱିତୀୟ ପର୍ଯ୍ୟାୟରେ 'ଜଟାୟୁ' ନାମରେ ନିଜର କବିତାଗୁଡ଼ିକୁ ଲେଖିଥିଲେ । ରାବଣ ସୀତାଙ୍କୁ ଚୋରି କରି ରଥରେ ବସାଇ ନେଇ ଯାଉଥିବା ସମୟରେ ଜଟାୟୁ ବାଟରେ ତାହାର ପଥରୋଧ କରିଥିଲା, ରାବଣ ସହିତ ଯୁଦ୍ଧ କରିଥିଲା । ଜଟାୟୁ ପାଖରେ ରଥ ନଥିଲା, ଖଡ଼୍ଗ ବି ନଥିଲା । ସେ ତଥାପି ପ୍ରତିବାଦ ଜଣାଇଲା, ଯୁଦ୍ଧ କଲା । ପରବର୍ତ୍ତୀ କାଳର କବିତାଗୁଡ଼ିକ ଏକତ୍ର କରି କବି ରଘୁନାଥ ଦାସ ୧୯୮୩ ମସିହାରେ "ପୁନଶ୍ଚ" ନାମକ ଯେଉଁ ସଂକଳନଟିକୁ ବାହାର କଲେ, ସେଥିରେ ଥିବା ମୁଖବନ୍ଧରେ ସେ ଲେଖିଛନ୍ତି, "ଦୁର୍ନୀତି, ଦୁରାଗ୍ରହ, ଦୁଃଶାସନ, ଦୁଃଖ, ଦୈନ୍ୟ .. ଜନଗଣ ଭାଙ୍ଗି ପଡ଼ିଛନ୍ତି । ଆଶ୍ରା କରିବାକୁ ସଂଗଠିତ ଶକ୍ତି ନାହିଁ, ପ୍ରତିରୋଧ କରିବାକୁ ମନୋବଳ ନାହିଁ । ଏହି ଦୁଃସ୍ଥ ଜନତାକୁ ଉଦ୍ଧାର କରିବାର ସାମର୍ଥ୍ୟ ମୋର ନାହିଁ ।" ପୁନଶ୍ଚ, "'ପୁନଶ୍ଚ' କବିତାଗୁଚ୍ଛରେ ମୋର ପୂର୍ବ କବିତାର ଶୌର୍ଯ୍ୟ ନାହିଁ, ଉଷ୍ଣତା ନାହିଁ, ଉଦ୍ଦୀପନା ନାହିଁ । ଦିଗନ୍ତ ନୈରାଶ୍ୟରେ ମୁଁ କାତର ହୋଇଯାଇଛି । ଜନଶକ୍ତି ପ୍ରତି କେଉଁଠି ବ୍ୟଙ୍ଗ ବିଦ୍ରୂପ କରି, କେଉଁଠି ଚେଇଁ ଉଠୁଥିବା ଆନ୍ଦୋଳନକୁ ସ୍ୱାଗତ ଜଣାଇ ମୁଁ ପାଇଛି ଆତ୍ମତୃପ୍ତି । କେଉଁଠି ପୁଣି ମୁଁ ଦାର୍ଶନିକ ସ୍ତରକୁ ଉଠି ସମଗ୍ର ଜୀବନ-ପ୍ରବାହର ଚିତ୍ର ଆଙ୍କିଛି ।" ଏହି ସଂକଳନରେ ସର୍ବପ୍ରଥମ କବିତାଟିର ନାମ ହେଉଛି 'ଜଟାୟୁ' । ସେଥିରେ କବି ସବାଶେଷରେ ନିଜକୁ ଧିକ୍ ପକାଇ ଦେବାପରି କେତେ ଶୌର୍ଯ୍ୟର ସହିତ ଲେଖିଛନ୍ତି,

"ମୁଁ ରହିବ ଯୁଗେଯୁଗେ ମୃମୁକ୍ଷୁର ଜ୍ୱଳନ୍ତ ପ୍ରେରଣା ।" ପୁଣି, "ଲେଖିବ ବାଲ୍ମୀକ : ସଗ୍ତା ଲାଗି ପକ୍ଷୀ ଏକ / ରାମ ଆସୁଁ ଯୁଝିଥିଲା ବାଂଶବାହୁ ପ୍ରତିପକ୍ଷେ ; ଯୁଝିଛୁ ଏକାକୀ । ଏକକ ସେ ସେନା, ପକ୍ଷେ ସତ୍ୟ, ପକ୍ଷେ ନ୍ୟାୟ, ଅବନୀତ ଜଟାୟୁର ଚେତନା ।" 'ମହାନାଟକ' କବିତାରେ ମଧ୍ୟ କବି କେତେ ପ୍ରତ୍ୟୟର ସହିତ "ଏ ସଂସାର ନୁହେଁ ମିଥ୍ୟା, ଏ ଜଗତ ଆଲୋକ-ପାବଣ" ବୋଲି ଲେଖିଛନ୍ତି ।

ବିଶ୍ୱ-ଇତିହାସର ମହାନାଟକରେ ଯେଉଁ ଆଠୋଟି ଅଙ୍କ ଅଭିନୀତ ହୋଇଛି, ସେଗୁଡ଼ିକ କ'ଣ ଆପଣାର ଅଭିନୟ-ଅବଧିଟିକୁ ଶେଷ କରି ପୃଥିବୀ ପୃଷ୍ଠରୁ ବିଦାୟ ନେଇ ଚାଲିଯାଇଛି ? ବୁଦ୍ଧ, ଯୀଶୁ, ଫରାସୀ ବିପ୍ଳବ, କାର୍ଲମାର୍କସ, ଗାନ୍ଧୀ ଓ ଶ୍ରୀଅରବିନ୍ଦ, ସେମାନଙ୍କୁ ଆମେ ପୃଥିବୀର ଉତ୍ତରଣ ପଥରେ ଆଜି ମଧ୍ୟ ଗୋଟିଏ ଗୋଟିଏ ଆହ୍ୱାନ ବା ଗୋଟିଏ ଗୋଟିଏ ସନ୍ଦେଶ ବୋଲି ଅନୁଭବ କରିବା, ଆଜି ମଧ୍ୟ ସେମାନଙ୍କର ଆହ୍ୱାନ-ଗୁଡ଼ିକର ଅବଶ୍ୟ ଏକ ପ୍ରାସଙ୍ଗିକତା ରହିଛି ବୋଲି ଅନୁଭବ କରିବା ନା ଯେକୌଣସି ନାଟକର ଅଙ୍କଗୁଡ଼ିକ ପରି ସେମାନେ ଆସି ଚାଲି ଯାଇଛନ୍ତି ବୋଲି ବୁଝିବା ? ଏବେ ମଧ୍ୟ ଧର୍ମ ନାମରେ ବାହ୍ୟ ଅତିରିକ୍ତାଚାରମାନ ମଣିଷର ଗୋଡକୁ ବାନ୍ଧି ରଖିଛି । ସମ୍ପତ୍ତିର କବଳ ଖାଇଗୁଡ଼ାକ ଆଜି ମଧ୍ୟ କୋଟି କୋଟି ମଣିଷଙ୍କୁ ଅତ୍ୟନ୍ତ ନୃଶଂସ ଭାବରେ ବଞ୍ଚିତ କରି ରଖିଛି । କେବଳ ସାମ୍ରାଜ୍ୟବାଦ ନୁହେଁ, ତାହାରି ପରି ଆହୁରି କେତେକେତେ ବାଦ ମଣିଷର ବନ୍ଧୁ ହୃଦୟ ଏବଂ ଅଗଣତିର ବାଟକୁ ଓଗାଳି ବସିଛି । ପ୍ରବଳମାନେ ଏବେ ମଧ୍ୟ ଅଛନ୍ତି, ହିଂସା କେତେକେତେ ଦରବାରରେ ସବୁଠାରୁ ଅଧିକ ଉଚ୍ଚ ସିଂହାସନରେ ଯାଇ ପ୍ରତିଷ୍ଠା ମାଡ଼ି ବସିଛି । ତେଣୁ ଯୁଦ୍ଧ ସରିନାହିଁ, ନାଟକ ସରିନାହିଁ—ଏ ନାଟକ କେବେହେଲେ ସରିବ ନାହିଁ । ଅର୍ଥାତ ଏକଦା ବିଶ୍ୱର ହୃଦୟକୁ ଆଲୋଡ଼ିତ କରି ଦେଇଥିବା ଆହ୍ୱାନଗୁଡ଼ିକର ପ୍ରାସଙ୍ଗିକତା ଏବେ ମଧ୍ୟ ରହିଛି ।

ଏହି ନାଟକରେ ଆମେ କାହାକୁ ପ୍ରକୃତରେ ନାୟକ ବୋଲି ଗ୍ରହଣ କରିବା ? ପୃଥିବୀର ଇତିହାସରେ ଯୁଗେ ଯୁଗେ କେତେ ମିଛ ନାୟକ ଆସିଛନ୍ତି, ସେମାନେ କେତେ ଖଣ୍ଡ ସତ୍ୟକୁ ପୂର୍ଣ୍ଣ ସତ୍ୟ ବୋଲି କହିଛନ୍ତି ଓ ତା'ପରେ କ୍ଷମତା ଆବୋରି ବସିଛନ୍ତି ; ମଣିଷକୁ ବାରବାର ପ୍ରତାରିତ କରିଛନ୍ତି । ମଣିଷ ପୁରୁଣା ଦାସତ୍ୱଗୁଡ଼ାକ ଛଡ଼ାଇ

ଆସିବାର ଉତ୍ସାହରେ ପୁନର୍ବାର ନୂଆ ଦାସତ୍ୱମାନଙ୍କର କବଳରେ ଯାଇ ପଡ଼ିଯାଇଛୁ । ପତାକା, ଟଙ୍କା ଓ ପଇଡ଼ାମାନେ ମଣିଷ ଉପରେ ଘୋଡ଼ା ଚଢ଼ିଛନ୍ତି । ତଥାପି ମଣିଷକୁ ଯଥାର୍ଥ ଆସନ ଉପରେ ନେଇ ବସାଇ ପାରିବାର ଅସଲ ଶୌର୍ଯ୍ୟ ଓ ଅସଲ ଶକ୍ତି ଏହି ମଣିଷ ଭିତରେ ରହିଛି । ଏହିପରି ଶକ୍ତି ଦ୍ୱାରା ଶକ୍ତିମାନ୍ ଏବଂ ସଚେତନ ମନୁଷ୍ୟମାନଙ୍କର ସଂଘ ହାତରେ ହିଁ ଗୃବ୍ବକାଠି ରହିଛି । ଇତିହାସର ମହାନାଟକ ସମ୍ଭବତଃ ସେହି ମଣିଷମାନଙ୍କୁ ଓ ସେହି ସଂଘକୁ ପାବଛୁ ପରେ ପାବଛୁ ଅତିକ୍ରମ କରାଇ ଆଣିଛି । ଅନ୍ୟାଗ୍ରହୀ ଓ ଅନ୍ୟାଗ୍ରସ୍ତମାନଙ୍କର ଆଖିକୁ ତାହା ଦୃଶ୍ୟ ହେଉ ନଥିଲେ ମଧ୍ୟ ହୁଏତ ତାହାହିଁ ଆମ ପୃଥିବୀର ପରବର୍ତ୍ତୀ ମୀମାଂସାରେ ନାୟକର ଭୂମିକା ଗ୍ରହଣ କରିବାକୁ ଯାଉଛି ।

କବି ରଘୁନାଥ ଦାସଙ୍କର 'ମହାନାଟକ' ସେହିପରି ଏକ ପ୍ରତ୍ୟୟ ଆଡ଼କୁ ପାଠକର ଚେତନାକୁ ପରିଗୃହୀତ କରି ନେଇଯାଉଛି । ଆମେ ସମସ୍ତେ ଯେ ସେହି ମହାନାଟକରେ ଅଂଶ ଗ୍ରହଣ କରିବା ଲାଗି ଅଭିପ୍ରେତ ହୋଇ ଏହି ପୃଥିବୀକୁ ଆସିଛୁଁ, ମହାନାଟକରେ ଉପସ୍ଥାପନ କରା ଯାଇଥିବା ଆହ୍ୱାନଗୁଡ଼ିକ ଆମକୁ ସତେ ଅବା ସେହି କଥାଟିକୁ ସ୍ମରଣ କରାଇଦେଇ ଯାଉଛି ।



ନୋହୁଁ ଆମେ ଜାନୁଆର, ମିଥ୍ୟା ତୁମ ଜଙ୍ଗଲର ନ୍ୟାୟ !
ଶାନ୍ତିନୀଡ଼େ ଏ ଜୀବନ ଛନ୍ଦ ରଚେ କଲରବ ପ୍ରାୟ ।

କପୋତର ପକ୍ଷତଳେ କାଟିଦେଲ ତେଣୁ ଏ ମସ୍ତକ,
ଜନତାର ମସୀଧାରେ ଧୁସିଯାଉ ଅସିର କଳଙ୍କ ॥

( ଏ ମୋର ମସ୍ତକ )

# ମହାନାଟକ : ଏକ ଅଧ୍ୟୟନ

## ଡ଼କ୍ଟର ଅର୍ଚ୍ଚନା ନାୟକ

ଓଡ଼ିଆ ସାହିତ୍ୟର ଇତିହାସ ରଚୟିତାମାନେ କବି ରଘୁନାଥ ଦାସଙ୍କ ସମ୍ପର୍କରେ ନୀରବତା ଅବଲମ୍ବନ କରି କେବଳ ନିଜର ଅଜ୍ଞତାର ପରିଚୟ ଦେଇଛନ୍ତି କହିଲେ ଭୁଲ ହେବନି । ତାଙ୍କ କାବ୍ୟକୃତିର ଯଥାର୍ଥ ମୂଲ୍ୟାୟନ କରାଯାଇ ପାରି ନଥିଲେ ମଧ୍ୟ କବି ଗୌରବ ଆଶା ନକରି ନିଭୃତରେ ଏକ ମହାନ ଲକ୍ଷ୍ୟ ନେଇ ସାଧନା କରିଥିବା ଏହି ଶିଳ୍ପୀ ଚିରକାଳ ଏ ଜାତିର ନମସ୍ୟ ହୋଇ ରହିବେ । ୧୯୩୯ରୁ ୧୯୫୩ ମଧ୍ୟରେ ତତ୍କାଳୀନ ପତ୍ର ପତ୍ରିକାରେ ବିଭିନ୍ନ ଛଦ୍ମନାମରେ ତାଙ୍କ ରଚିତ କବିତାଗୁଡ଼ିକ ଆତ୍ମପ୍ରକାଶ କରି ପାଠକ ମହଲରେ ବେଶ ଆଲୋଡ଼ନ ସୃଷ୍ଟି କରିଥିଲା । ଓଡ଼ିଆ କାବ୍ୟ ଜଗତରେ କବି ସଚ୍ଚି ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ ପରି କବି ରଘୁନାଥଙ୍କର କାବ୍ୟମାନସ ମଧ୍ୟ ଥିଲା ସାମ୍ୟବାଦୀ ଚେତନଦୀପ୍ତ । ମାର୍କସ୍‌ବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ଏହି ବିପ୍ଳବୀ କବିଙ୍କର ଆଶା, ଆକାଂକ୍ଷା, ସ୍ୱପ୍ନ ଓ ଜୀବନ ଦର୍ଶନ ତାଙ୍କ କବିତା ଗୁଡ଼ିକରେ ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାବରେ ରୂପ ପାଇଛି । ସାମାଜିକ ଜୀବନରେ ସୁସ୍ଥ ବାତାବରଣ, ମୈତ୍ରୀର ଅନାହତ ଧାରା ବଜାୟ ରଖିବା ଥିଲା ତାଙ୍କର ଲକ୍ଷ୍ୟ । କବିଙ୍କର ପ୍ରାରମ୍ଭିକ କାବ୍ୟଚେତନା ଅନୁଧ୍ୟାନ କଲେ ଏହା ବେଶ୍ ସ୍ପଷ୍ଟ ହୋଇଉଠେ ଯେ କବିଚିତ୍ତ ସ୍ୱପ୍ନ ଅପେକ୍ଷା ବାସ୍ତବତା ପ୍ରତି ଅଧିକ ସଚେତନ ଥିଲା । ସ୍ୱପ୍ନଭଙ୍ଗର ହତାଶାରେ କବି ବିମୂଢ଼ ନୁହନ୍ତି ବା ବାସ୍ତବତା ଠାରୁ ଦୂରକୁ ପଳାୟନ କରିବାର ଚେଷ୍ଟା କରିନାହାନ୍ତି । ବରଂ ହତାଶା ଓ ମୃତ୍ୟୁର ଅନୁଚିନ୍ତା ତାଙ୍କୁ ଜୀବନକୁ ଏକ ଦାର୍ଶନିକ ଦୃଷ୍ଟିକୋଣରୁ ଦେଖିବାକୁ ସାହାଯ୍ୟ କରିଛି । ତାଙ୍କର କବିତା 'ମୃତ୍ୟୁ ହେ ତୁମେ ସେତେବେଳେ କିଆଁ ଆସନି'ରେ କବିଙ୍କର ଦାର୍ଶନିକ ବ୍ୟକ୍ତିତ୍ୱ ଭାସ୍ୱର ହୋଇ ଉଠିଛି । ମୃତ୍ୟୁ ଏକ ଅବଶ୍ୟମ୍ଭାବୀ ସତ୍ୟ । କାହାର ଚାହିଁବା ବା ନ ଚାହିଁବାକୁ ସେ ଅପେକ୍ଷା କରେନା । ତଥାପି ମଣିଷ ମୃତ୍ୟୁକୁ ଏଡ଼େଇ ଯିବାକୁ ଚାହେଁ, ଜୀବନର ସବୁ ସୁଖ ଲୁଟିନେବାକୁ ଚାହେଁ । କିନ୍ତୁ କବିଙ୍କ ନିକଟରେ ମୃତ୍ୟୁ ଜୀବନ ପରି ସ୍ୱାଗତଯୋଗ୍ୟ । ଜୀବନର ଗୌରବମୟ, ଆନନ୍ଦଘନ ମୁହୂର୍ତ୍ତରେ ମଧ୍ୟ ମୃତ୍ୟୁକୁ ଆଲିଙ୍ଗନ କରିବାରେ କବିଙ୍କର ଦ୍ୱିଧା ନାହିଁ—

ଯୌବନର ଶେଷେ ଗୌରବ ମେଳେ ଯେବେ ଧାନଗଛ ଗର୍ଭରେ
ଶରତ ଚନ୍ଦ୍ରର ଫୁଲଉଠେ ଗ୍ରୁଡ଼ ସୁନା ଫଳିଛି କି ମର୍ତ୍ତ୍ୟରେ
ମୃତ୍ୟୁ ହେ ତୁମେ ସେତେବେଳେ କିଆଁ ଆସନି ?

ସାମାଜିକ ଜୀବନରେ, ଜାତୀୟ ଜୀବନରେ ଓ ଆନ୍ତର୍ଜାତିକ ସ୍ତରରେ ଘଟୁଥିବା ପ୍ରତିଟି ଅନ୍ୟାୟ, ଅବିଚାରର ବିରୋଧରେ କବି ଜଟାୟୁର ଶକ୍ତିନେଇ ଲଢ଼ିବା ପାଇଁ ପ୍ରସ୍ତୁତ । ଶରୀରର ଶକ୍ତି ପଛେ କ୍ଷୀଣ ହେଉ ; କିନ୍ତୁ ନ୍ୟାୟ ପାଇଁ ସତ୍ୟ ପାଇଁ ଶକ୍ତିମାନ୍ ବିପକ୍ଷରେ ଠିଆହୋଇ ସଂଗ୍ରାମ କରିବାର ଦୁର୍ବାର ମନୋବଳ ଓ ନୈତିକବଳର ଅଧିକାରୀ ଥିଲେ କବି –

'ମୁଁ ଗୀଧ ଜଟାୟୁ ପକ୍ଷୀ, ମୁଁ ପକ୍ଷ ପ୍ରବଳ ପ୍ରତାପୀ
ନୁହେଁ ତା'ର ସମକକ୍ଷ, ପ୍ରତିବାଦ କରିବି ତଥାପି,
ପାରେ ବା ନପାରେ ମୁହିଁ, ଅନ୍ୟାୟର ରୋଧିବି ଗତିକୁ ,
ସତ୍ୟ ଲାଗି ଯୁଝିବି ମୁଁ, ଆଶ୍ୱାସନା ହେବ ସେ ସତୀକୁ ।'

( ଜଟାୟୁ )

କବିଙ୍କର ସାମ୍ୟସନ୍ଧାନ ବ୍ୟକ୍ତିତ୍ୱ ତାଙ୍କ କବିତାରେ ସ୍ପଷ୍ଟ । ତାଙ୍କର କବିତାର ସ୍ୱର ତୀବ୍ର ଓ ଲକ୍ଷ୍ୟନିଷ୍ଠ । ମୋଟ ଉପରେ ମାର୍କସ-ପ୍ରଦର୍ଶିତ ବିପ୍ଲବ ମାଧ୍ୟମରେ ସମାଜରେ ସମାନତା ଆଣିବାରେ ସେ ପକ୍ଷପାତୀ । ତେଣୁ ସାମ୍ୟବାଦର ଗୁଣାତ୍ମକ ଲକ୍ଷ୍ୟର ହାସଲ ପାଇଁ ଯେଉଁଠି ରକ୍ତାକ୍ତ ବିପ୍ଲବ ସଂଘଟିତ ହୋଇଛି, ତାକୁ କବି ଆନ୍ତରିକ ସମର୍ଥନ ଜଣାଇଛନ୍ତି । ଏ ସ୍ୱରରେ କୁଆପି ଦୋଳନ ବା ବିରୋଧାଭାସର ସ୍ପର୍ଶ ନାହିଁ । ଏପରିକି ଭାଗ୍ୟ ଓ ଭଗବାନ ଯେ ଶୋଷକର ଏକ ଛଳ, ଏକଥା ସେ ଜଣେ ମାଓବାଦୀ କମ୍ୟୁନିଷ୍ଟ ଭାବରେ ତାଙ୍କ କବିତାରେ ଦୃପ୍ତ କଣ୍ଠରେ ଘୋଷଣା କରିଛନ୍ତି ଏବଂ ତା' ସହିତ ଜଣେ ମହାନ ମାନବବାଦୀ ଭାବରେ ଘୋଷଣା କରିଛନ୍ତି (୧) —

'ସମାଜର ସିଂହାସନେ ପୂଜାପାଏ ମଣିଷର ଭ୍ରମ
ମହାଯାନ ଅଟେତ ମଣିଷ
କହେ ବୁଦ୍ଧ, କହେ କନ୍‌ଫୁସିୟସ୍,
କହିଛନ୍ତି କାର୍ଲମାର୍କସ ଓ ଲେନିନ୍, କମ୍ରେଡ଼ ଷ୍ଟାଲିନ୍
ଆଜି କହେ ଆଜିକାର ଚୀନ ।'

— 'ଚୀନ'

କବି ରଘୁନାଥଙ୍କର ପ୍ରକାଶିତ ଗ୍ରନ୍ଥ 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ଓ 'ପୁନଶ୍ଚ'ରେ ସଂକଳିତ କବିତାଗୁଡ଼ିକର ଅନୁଧ୍ୟାନ କଲେ ଜଣାଯାଏ କବି କେଉଁଠାରେ ହେଲେ ଶବ୍ଦାଡମ୍ବର ସୃଷ୍ଟି କରିନାହାନ୍ତି । ପ୍ରକାଶ ଭଙ୍ଗୀରେ ଛନ୍ଦାନୁଗତ ଜଟିଳତାର ଚିହ୍ନ ନାହିଁ । ନବୀନତା ବା ପ୍ରଗତିବାଦ ନାମରେ ଅଯଥା ଆଧୁନିକତା ବା କୃତ୍ରିମତାର ପ୍ରକାଶ ଘଟିନି ; କିନ୍ତୁ କବିପ୍ରାଣର ଆକୁତି କବିତା ମଧ୍ୟରେ ସଞ୍ଚରିତ ହୋଇଥିବାରୁ ପାଠକର ହୃଦୟକୁ ଅନାୟାସରେ ସ୍ପର୍ଶ କରିଥାଏ ।

ଆଲୋଚ୍ୟ କବିତା 'ମହାନାଟକ' କବିଙ୍କର ଏକ ଅନବଦ୍ୟ ସୃଷ୍ଟି । ଏଥିରେ ପୃଥିବୀକୁ ଏକ ରଙ୍ଗମଞ୍ଚ ରୂପେ ପରିକଳ୍ପନା କରାଯାଇଛି । ଯେଉଁ ମଞ୍ଚ ଉପରେ ପ୍ରତିନିୟତ ବହୁ ନାଟକ ଅଭିନୀତ ହୋଇଚାଲିଛି । କବି ରଘୁନାଥ ସେହି ମଞ୍ଚ ଉପରେ ଏକ ମହାନାଟକର କଳ୍ପନା କରିଛନ୍ତି । ଯେଉଁ ନାଟକରେ ପୃଥିବୀ ସୃଷ୍ଟିର ପ୍ରାକ୍ କାଳ, ସୃଷ୍ଟି ଓ ସୃଷ୍ଟି ପରବର୍ତ୍ତୀ ଅବସ୍ଥାର ପ୍ରତିଟି ପର୍ଯ୍ୟାୟ ଅଙ୍କ ଓ ଦୃଶ୍ୟକ୍ରମରେ ସନ୍ନିବେଶିତ ହୋଇଛି । ନାଟକର ନାନ୍ଦୀମୁଖରେ କବି ସୂଚନା ଦେଇଛନ୍ତି ବିଶ୍ୱଜନନୀ ଏକ ମହାଉତ୍ସବର ଆୟୋଜନ କରିବାକୁ ଯାଇ ସତେ ଯେପରି ସୀମାହୀନ ଚନ୍ଦ୍ରାତପ ସଦୃଶ ଆକାଶରେ ମୁକ୍ତାରୂପୀ ତାରକାପଂକ୍ତି ଝୁଲି ଦେଇଛନ୍ତି । ସପ୍ତାଶ୍ୱ ରଥରେ ବିରାଜିତ ପିତୃଦେବ ସୂର୍ଯ୍ୟ, ବାଦଲ ମେଳରେ କ୍ରୀଡ଼ାରତ ଚନ୍ଦ୍ର ଓ ରୂପ, ରସ, ଗନ୍ଧରେ ଭରା, ନାନାବିଧ ଐଶ୍ୱର୍ଯ୍ୟରେ ସମୃଦ୍ଧା ଏବଂ ପଞ୍ଚଭୂତରେ ଗଢ଼ା ମାତା ବସୁଧା ପ୍ରକାଶିତ ହୋଇଛନ୍ତି ।

ପ୍ରଥମ ଅଙ୍କରେ ଧରଣୀମାତାର ଗର୍ଭରେ ଜନ୍ମଲାଭ କରିଥିବା ଲତା, ଗୁଳ୍ମ, ପଶୁ ପକ୍ଷୀ ଓ ମଣିଷ ନିର୍ବିଶେଷରେ ସମସ୍ତେ ସମ ଆନନ୍ଦରେ ଜୀବନ ନିର୍ବାହ କରିବାର ଚିତ୍ର ପ୍ରଦାନ କରାଯାଇଛି । ଝରଣାର ଜଳ, ମଳୟର ହିଲ୍ଲୋଳ, ଆକାଶରୁ ଝରି ଆସୁଥିବା ଆଲୋକର ଛଟା ଓ ପୃଥିବୀର ବକ୍ଷ ଥିଲା ସଭିଁଙ୍କ ପାଇଁ ମୁକ୍ତ । ଉପନିଷଦୀୟ ଭାବଧାରା 'ସର୍ବେ ଭବନ୍ତୁ ସୁଖିନଃ' ଓ 'ବସୁଧୈବ କୁଟୁମ୍ବକମ୍' ମାଧ୍ୟମରେ ମଣିଷ ଥିଲା ଆସ୍ଥାବାନ୍ । ନିଜେ ଆନନ୍ଦରେ ବଞ୍ଚିବା ସଙ୍ଗେ ଅନ୍ୟକୁ ଆନନ୍ଦରେ ବଞ୍ଚିବାର ସୁଯୋଗ ଦେଉଥିଲା ।

କିନ୍ତୁ ଦ୍ୱିତୀୟ ଅଙ୍କରେ ହଠାତ୍ ବିଭ୍ରାଟର ସୂତ୍ରପାତ ହେଲା । ମଣିଷ ହିଁ ଆବିର୍ଭୂତ ହୋଇଛି ନାଟକର ଖଳନାୟକ ରୂପେ । ନିଜ ବୁଦ୍ଧିର ଚତୁରତାରେ ଏ ସୃଷ୍ଟିର ଅନ୍ୟ ସମସ୍ତ ପ୍ରାଣୀଙ୍କୁ ନିଜର କରାୟତ୍ତ କରିଛି । ନିଜକୁ ପ୍ରଭୁ ରୂପେ ପ୍ରତିଷ୍ଠିତ କରାଇଛି । କେବଳ ସେତିକିରେ ସନ୍ତୁଷ୍ଟ ହୋଇ ରହିନି, ନିଜ ଭିତରେ ସୃଷ୍ଟି କରିଛି ବିଭେଦର ପ୍ରାଚୀର । ଜାତିଗତ ବୈଷମ୍ୟ ମୁଣ୍ଡ ଟେକିଛି । କେହି ନିଜକୁ ବ୍ରାହ୍ମଣ, କେହି ନିଜକୁ ରାଜା ରୂପେ ଅନ୍ୟଠାରୁ ନିଜର ପ୍ରାଧାନ୍ୟ ପ୍ରତିଷ୍ଠା କରିବାକୁ ଯାଇ ଦ୍ୱନ୍ଦ୍ୱ କଳହରେ ବ୍ୟାପୃତ ହୋଇଛି । ମଣିଷ ମଣିଷ ଭିତରେ ଉଚ୍ଚ ନୀଚର ଶ୍ରେଣୀ ବିଭାଗ ହୋଇଯାଇଛି । କିନ୍ତୁ ଚରମ ବିପର୍ଯ୍ୟୟ ଘନେଇ ଆସିଛି ଯେଉଁଦିନ ମଣିଷ—

'ଜନନୀକୁ ଜାୟା କରି ବୋଲାଇଲେ ସେହି ମହୀପତି
ତା' ଔରସେ ଜାତ ହେଲା ଯେ କାରଜ ତାଙ୍କର୍ଣି ସମ୍ପତ୍ତି
ସମାଜକୁ ସେହି ହେଲା କାଳ
ତା' ଲାଗି ଲାଗିଲା ଦ୍ୱନ୍ଦ୍ୱ ଯୁଗେ ଯୁଗେ ବିପତ୍ତି ଘୋଟିଲା ।'

ମଣିଷ ଉପରେ ମଣିଷର ଅତ୍ୟାଚାର କ୍ରମଶଃ ବୃଦ୍ଧି ପାଇଲା । ଧର୍ମ ନାମରେ, ଈଶ୍ୱରଙ୍କ ନାମରେ ଶୋଷଣ ଓ ଅତ୍ୟାଚାର ସୀମା ଲଙ୍ଘନ କଲା । 'ଏକ ବ୍ରହ୍ମଃ ଦ୍ୱିତୀୟ ନାସ୍ତି' କହୁଥିବା ବ୍ରାହ୍ମଣ ଶୂଦ୍ର ଭିତରେ ଭଗବତ୍ ଅସ୍ତିତ୍ୱକୁ ଅସ୍ୱୀକାର କଲା । ଯେଉଁମାନେ ଭଗବାନଙ୍କୁ କରୁଣାସାଗର ମନେକରି ଆର୍ତ୍ତ କଣ୍ଠରେ ପ୍ରାର୍ଥନା କରନ୍ତି ସେହି ସରଳ ନିରୀହ ମଣିଷଙ୍କ ଉପରେ ଈଶ୍ୱରଙ୍କ କେତନବାହୀ ବର୍ବରମାନେ ଜାନ୍ତବ ଅତ୍ୟାଚାର କରି ଯାଇଛନ୍ତି । ବ୍ରାହ୍ମଣ୍ୟ ସଂସ୍କୃତିର ଏହି ଘୃଣ୍ୟ ଦିଗ ପ୍ରତି କବି ପାଠକକୁ ସଚେତନ କରିଛନ୍ତି । କିନ୍ତୁ ଗୀତାରେ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରି ସତେ ଯେପରି ଈଶ୍ୱର ଶୁଦ୍ଧ ସିଦ୍ଧ ବୁଦ୍ଧରୂପେ ଅବତରଣ କରିଥିଲେ ଓ ଯାହାର ଉଦାତ୍ତ କଣ୍ଠରୁ ଉଚ୍ଚାରିତ ହେଲା ପରମ ଆଶ୍ୱାସନାର ବାଣୀ –

ଲୋଡ଼ା ନାହିଁ ମନ୍ତ୍ର ତନ୍ତ୍ର, ଲୋଡ଼ା ନାହିଁ ପୂଜାର ନୈବେଦ୍ୟ
ଶରୀର ମଧ୍ୟରେ ଜାଣ ଆତ୍ମା ତୋର ପରମ ଆରାଧ୍ୟ
ଚିତ୍ତ ଶୁଦ୍ଧି କିମ୍ବା ଶୁଦ୍ଧି ଜୀବେ ଦୟା ସତ୍ୟେ ରଖ ନିଷ୍ଠା
ମରି ଏ ଜଗତେ ନର ଅମୃତର ପାଇବ ସନ୍ଧାନ
ଲଭିବ ନିର୍ବାଣ ।

ବିରାଟ ରଙ୍ଗମଞ୍ଚର ବିଭିନ୍ନ ସ୍ତରରେ ଭିନ୍ନ ଭିନ୍ନ ଦୃଶ୍ୟ ଏକ ସମୟରେ ଅଭିନୀତ ହୋଇ ଚାଲିଛି । ବିଚିତ୍ର ଏ ମଣିଷ, ବିଚିତ୍ର ଏହାର କ୍ରିୟାକଳାପ । କେତେକ ପାର୍ଥିବ ଜୀବନର ସୁଖଭୋଗରେ ବ୍ୟାପୃତ । ଜାଗତିକ ଜୀବନର ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ ଓ ସମ୍ଭୋଗ ସେମାନଙ୍କର ଏକମାତ୍ର ଧ୍ୟେୟ । ଅଥଚ ଆଉ କେତେକ ଅପାର୍ଥିବ ଜୀବନର ମହତ୍ତ୍ୱ, ଆତ୍ମାର ଐଶ୍ୱର୍ଯ୍ୟ ଉପଲବ୍ଧି ପାଇଁ ଓ ଦିବ୍ୟତ୍ୱର ଅଧିକାରୀ ହେବାପାଇଁ ସାଂସାରିକ ଜୀବନର ସମସ୍ତ ସୁଖ ମୋହକୁ ପରିତ୍ୟାଗ କରିଦିଅନ୍ତି । ପୁଣି ରାଜ୍ୟ ବିସ୍ତାର ନିଶାରେ ନିଜର ଶୌର୍ଯ୍ୟ, ବୀର୍ଯ୍ୟର ପ୍ରତିଷ୍ଠା ଲାଗି ନିଜ ପ୍ରଭୁପଣିଆର ଜୟଜୟକାର ଲାଗି ଦୁର୍ଦ୍ଧର୍ଷ ସମ୍ରାଟ-ମାନଙ୍କର ନିର୍ଦ୍ଦେଶରେ ଜଳିଯାଏ ଅସଂଖ୍ୟ ପୁରପଲ୍ଲୀ । ଭୂଲୁଣ୍ଠିତ ହୁଏ ଅଗଣିତ ନିରୀହ ନରନାରୀର ଛିନ୍ନ ମସ୍ତକ । ଏହି ବର୍ବରତା, ନୃଶଂସତା ଓ ପଶୁତ୍ୱ କବଳରୁ ମଣିଷକୁ ରକ୍ଷାକରିବା ପାଇଁ କ୍ଷମା, ପ୍ରେମ, ଦୟା ଓ ଭ୍ରାତୃତ୍ୱର ସ୍ୱର୍ଗୀୟ ବାଣୀ ପ୍ରଚାର କରିବାକୁ ଆସିଥିଲେ ଦେବଦୂତ ଯୀଶୁ । ମଣିଷ ମନରେ ଘୃଣା ବଦଳରେ ପ୍ରେମ, ପ୍ରତିଶୋଧ ବଦଳରେ କ୍ଷମା, ନିଷ୍ଠୁରତା ପରିବର୍ତ୍ତେ ଦୟା ଓ କରୁଣା ସୃଷ୍ଟି କରି ମଣିଷକୁ ଦେବତ୍ୱ ଦେବାର ଚେଷ୍ଟା ସେ କରିଥିଲେ । ଅଥଚ ସଭ୍ୟତାମୀ ମଣିଷର ଅହଂକାର ତାହା ଗ୍ରହଣ କରିପାରିଲା ନାହିଁ । ସତ୍ୟର, ଶାନ୍ତିର କଣ୍ଠରୋଧ କରିବାକୁ କୁଣ୍ଠା ପ୍ରକାଶ କଲାନାହିଁ । ରାଜଦ୍ରୋହ ଅପରାଧର ଦ୍ୱାହି ଦେଇ କ୍ରୁଶବିଦ୍ଧ କଲା ପ୍ରେମ ଓ ଦୟାର ଅବତାର ଯୀଶୁଖ୍ରୀଷ୍ଟଙ୍କୁ । ସହନଶୀଳତାର ଚରମ ପରାକାଷ୍ଠା ଦେଖାଇ ଦୁଃଖୀ ମାନବ ପାଇଁ

କରୁଣା ଓ ପ୍ରେମର ନିଦର୍ଶନ ସ୍ୱରୂପ କ୍ରୁଶବିଦ୍ଧ ଯୀଶୁ ତାଙ୍କର ହତ୍ୟାକାରୀମାନଙ୍କୁ କ୍ଷମା କରିବା ନିମନ୍ତେ ଈଶ୍ୱରଙ୍କୁ ନିବେଦନ କରିଗଲେ । କିନ୍ତୁ ମଣିଷ ସମାଜରୁ ନିଷ୍ଠୁରତା ଓ ଅତ୍ୟାଚାରର କାହାଣୀର ଲୋପ ପାଇଲାନି । ସମ୍ରାଟ ସାମନ୍ତ ରାଜାପ୍ରଜାର ପାର୍ଥକ୍ୟତ ଦୂରୀଭୂତ ହେଲାନି ।

ଯୁଗ ଯୁଗ ବ୍ୟାପୀ ଅତ୍ୟାଚାର, ଅବିଚାର ଓ ଅନ୍ୟାୟରେ ଅସ୍ଥିର, ଜର୍ଜରିତ ବୁଭୁକ୍ଷିତ ଜନସାଧାରଣ ପ୍ରଳୟାନ୍ତ କାଳରେ ପ୍ରଭୁଙ୍କର ଭଲ ମନ୍ଦର ନିଷ୍ପତ୍ତି ପାଇଁ ଅପେକ୍ଷା କଲେନାହିଁ । ଶତାବ୍ଦୀ ଶତାବ୍ଦୀ ଧରି ନିପୀଡ଼ିତ ମଣିଷର ରୁଦ୍ଧଶ୍ୱାସ ଆଗ୍ନେୟ ତୋଫାନ ସୃଷ୍ଟି କରି ସାମ୍ରାଜ୍ୟବାଦର ବିନାଶ କଲା । ଫ୍ରାନ୍‌ସର ଜନସାଧାରଣ ସମଅଧିକାର ଓ ଭ୍ରାତୃତ୍ୱର ଅଭିନବ ଅନୁଭୂତି ଲାଭକଲା । ସେ ସବୁ କିନ୍ତୁ କେତେକାଳ ପାଇଁ ! ମୁକ୍ତିର ପ୍ରଥମ ଉଚ୍ଛ୍ୱାସ କଟିଯିବା ପରେ ସାଧାରଣ ମଣିଷ ଅନୁଭବ କଲା ଯେ ତା' ଅବସ୍ଥାର କୌଣସି ପରିବର୍ତ୍ତନ ହୋଇନାହିଁ । ରାଜାର ସଂଜ୍ଞା ବଦଳିଛି, ଶୋଷଣର ରୀତି ବଦଳିଛି କିନ୍ତୁ ପ୍ରଭୁତ୍ୱ ଓ ଶୋଷଣ ଆହୁରି ତୀବ୍ର ହୋଇଛି । କ୍ଷମତାସମ୍ପନ୍ନ ଗୋଟିଏ ଗୋଷ୍ଠୀ ନିଜ ସ୍ୱାର୍ଥଲାଗି ପ୍ରତ୍ୟକ୍ଷ ବା ପ୍ରଚ୍ଛନ୍ନ ଭାବରେ ସାଧାରଣ ଲୋକର ସର୍ବସ୍ୱ ଅପହରଣ କରୁଛି । ଦେଶେ ଦେଶେ ଏହି ଶୋଷକ ଓ ଶୋଷିତର ଚିତ୍ର କବି ଦେଖିଛନ୍ତି । ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଗୋଟିଏ ସର୍ବହରା ଶ୍ରେଣୀ ପୃଥିବୀରେ ସର୍ବତ୍ର ନିଜର ଦୟନୀୟ ଅବସ୍ଥାରେ ମୁହ୍ୟମାନ । କବି ବଜ୍ରକଣ୍ଠରେ ସେମାନଙ୍କୁ ଆହ୍ୱାନ ଦେଇଛନ୍ତି—

ଜାଗ ଜାଗ ଜାଗରେ ଦଳିତ
ଏକତା ହିଁ ଆସ କରି, ବିଶ୍ୱବ୍ୟାପୀ ହୁଅ ସଂଗଠିତ
ଏକ ହୁଅ ମେହନତି, ଜନତାର ଅଜେୟ ସେନାନୀ
ଏକ ହୁଅ ଏକ ହୁଅ ହେ ଶୋଷିତ କଙ୍କାଳ ବାହିନୀ ।

କବି ରଘୁନାଥଙ୍କର ଏ କ୍ଷେତ୍ରରେ ଆନ୍ତର୍ଜାତିକ ସାହିତ୍ୟ କ୍ଷେତ୍ରରେ ଆସିଥିବା ମାର୍କସୀୟ ଚେତନା ପ୍ରତି ଅଧିକ ପ୍ରବଣତା ପ୍ରକାଶ ପାଇଥିବା ସ୍ପଷ୍ଟ । ତେଣୁ ମହାନାଟକର ପଛଭୂମିରେ କେବଳ ଭାରତର ଦଳିତ ନିଷ୍ପେଷିତ ନରନାରୀ ନୁହନ୍ତି ସମଗ୍ର ପୃଥିବୀର ସର୍ବହରା ଗୋଷ୍ଠୀ ପ୍ରତି କବିଙ୍କର ସମ୍ବେଦନଶୀଳତା ପ୍ରକାଶ ପାଇଛି । ଏକ ଶୌଖୀନ ଧନତାନ୍ତ୍ରିକ ସଭ୍ୟତା ଓ ତାର ପୀଡ଼ନ ତଥା ଶୋଷଣ ବିରୋଧରେ ମାର୍କସ୍ ପ୍ରବର୍ତ୍ତିତ ଚିନ୍ତାଧାରା କବିଙ୍କୁ ବହୁଭାବରେ ଅନୁପ୍ରାଣିତ କରିଛି । ଏକ ଶୋଷଣହୀନ, ଶ୍ରେଣୀହୀନ ସମାଜଗଠନ କରିବା ପାଇଁ ମାର୍କସ୍ ନିର୍ଦ୍ଦେଶିତ ପଥ ବ୍ୟତୀତ ଅନ୍ୟ ଉପାୟ ନାହିଁ । କବି ଏଠାରେ ପୌରାଣିକ ଚରିତ୍ର କୃଷ୍ଣଙ୍କ ସହିତ କାର୍ଲମାର୍କସ୍‌ଙ୍କର ତୁଳନା କରିଛନ୍ତି । ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ପାଣ୍ଡବମାନଙ୍କର ସଖା ରୂପେ, ନିୟନ୍ତା ରୂପେ କୃଷ୍ଣ ଅନ୍ୟାୟୀ

ଅତ୍ୟାଗ୍ରସ୍ତ କୌରବକୁଳ ବିରୋଧରେ ସଂଗ୍ରାମର ନେତୃତ୍ୱ ନେଇଥିଲେ । ତେଣୁ କବି ଏଠାରେ ମାର୍କସ୍‌ଙ୍କୁ କୃଷ୍ଣଙ୍କ ପରି ଶୋଷିତ ସର୍ବହରାର ନେତୃତ୍ୱ ନେଇ ପୁଞ୍ଜିବାଦୀ ବିରୋଧରେ ଲଢ଼େଇ କରିବାର ଉଦ୍‌ଘୋଷଣା କରିଛନ୍ତି—

ଅବତୀର୍ଣ୍ଣ କର୍ଣ୍ଣଧାର କାର୍ଲମାର୍କସ୍ ବିପ୍ଳବ ବିଜୟୀ
ବଞ୍ଚିତର ମନ୍ତ୍ରଦାତା ସଖା, କୃଷ୍ଣ ସୁଦର୍ଶନପାଣି ।

କମ୍ୟୁନିଷ୍ଟ ମତବାଦ ଦ୍ୱାରା ପ୍ରଭାବିତ ଓ ପରିଚାଳିତ ଦେଶ ଋଷ, ଚୀନ, ଯୁଗୋସ୍ଲୋଭିଆ ଓ କ୍ୟୁବାର ରାଷ୍ଟ୍ରନେତାମାନଙ୍କୁ ପାଣ୍ଡବମାନଙ୍କ ମଧ୍ୟରୁ ଅର୍ଜୁନ, ଭୀମ, ନକୁଳ ଓ ସହଦେବ ମନେକରି ମାର୍କସ୍‌ରୂପୀ କୃଷ୍ଣଙ୍କ ନେତୃତ୍ୱରେ ପୃଥିବୀରୁ ପୁଞ୍ଜିବାଦ ଓ ଶୋଷଣବାଦ ଦୂର କରି 'ଏକ ହେବ ଏ ମାନବଜାତି'ର ନିର୍ଦ୍ଦିଷ୍ଟ ପରିକଳ୍ପନା କରିଛନ୍ତି ।

'ମହାନାଟକ'ର ସପ୍ତମ ଅଙ୍କରେ ମିସନାରୀମାନଙ୍କର ଧର୍ମ ପ୍ରଚାରର ତୀବ୍ର ସମାଲୋଚନା କରିଛନ୍ତି କବି ରଘୁନାଥ । କାରଣ ଧର୍ମପ୍ରଚାର ମୂଳରେ ନିଜର ପ୍ରାଧାନ୍ୟ ପ୍ରତିଷ୍ଠାର ଚେଷ୍ଟା ମୁଖ୍ୟତଃ ପ୍ରକାଶ ପାଏ । ନିଜକୁ ସଭ୍ୟ ମନେକରି ଅନ୍ୟମାନଙ୍କୁ ପଶୁତୁଲ୍ୟ ମନେ କରିବା କୌଣସି ଧର୍ମ ପକ୍ଷରେ ସ୍ପୃହଣୀୟ ନୁହେଁ । ଧର୍ମ ପ୍ରଚାର ଆଳରେ ପ୍ରଥମେ ଆସନ୍ତି ମିସ୍‌ନାରୀ—

ତାଙ୍କ ପଛେ ପୋତ ବାହି ଦେଶ ଘୁରି ଆସନ୍ତି ବଣିକ
ବାଣିଜ୍ୟର ନିରାପତ୍ତା ଲାଗି ଲେଡା ମାରଣା ବନ୍ଧୁକ ।

× × × ×

କଳାଙ୍କ ବଜାର ପାଇଁ ଲଗେ ପୁଣି ଗୋରାଙ୍କର କଳ
ଯିଶୁଙ୍କ ଅହିଂସ ଚୁଣେ ଲକ୍ଷ ବୋଦା ନିତି ପଡେ ବଳି ।

ଇଂରେଜ ସରକାରର ଅଧୀନ ବନ୍ଦୀ ଦେଶର ଲୋକେ ନିଜ ମାଟି ଉପରେ ଅପମାନିତ ନିର୍ଯାତିତ ହୁଅନ୍ତି । ଭାରତବର୍ଷର ଦୀର୍ଘ ପରାଧୀନତା ଏ ଜାତିକୁ ଦାସତ୍ୱ ଓ ହୀନମନ୍ୟତା ଭିତରେ ନିପୀଡ଼ିତ କରିଥିବା ବେଳେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଆରମ୍ଭ ହେଲା ସ୍ୱାଧୀନତା ପାଇଁ ଅହିଂସ ଆନ୍ଦୋଳନ । ଆତ୍ମଶକ୍ତିରେ ବଳୀୟାନ ହୋଇ ପଶୁଶକ୍ତିର ମୁକାବିଲା କରିଥିଲେ ଭାରତୀୟମାନେ । ସତ୍ୟବୃତ୍ତିର ତେଜରେ ଇଂରେଜ ସାମ୍ରାଜ୍ୟ-ବାଦର ଜତୁଗୃହ ଜଳି ଯାଇଥିଲା । ଭାରତବର୍ଷ ସମଗ୍ର ବିଶ୍ୱକୁ ଶିକ୍ଷା ଦେଇଥିଲା ଶାନ୍ତି, ମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱ ।

କିନ୍ତୁ ଶେଷ ଅଙ୍କରେ ଧୀରେ ଧୀରେ ରାଜନୀତି, ସମାଜ ଓ ବ୍ୟକ୍ତିଜୀବନରେ ଶଠତା, ପ୍ରତାରଣା ଓ ଅବକ୍ଷୟର ଅବସ୍ଥା ଲକ୍ଷ୍ୟ କରି କବି ମୁହ୍ୟମାନ ହୋଇପଡ଼ିଛନ୍ତି । ପୃଥିବୀ ଇତିହାସରେ ବହୁ ଉତ୍ଥାନ ପତନ, ସଭ୍ୟତାର ଉଦ୍‌ଭବ-ବିଲୟ, ଅହିଂସା-ପ୍ରତିହିଂସା, ଯୁଦ୍ଧ-ଶାନ୍ତିର ଅଶେଷ ଘଟଣା ବିଶ୍ଳେଷଣ କରିଛନ୍ତି, କିନ୍ତୁ ଶେଷରେ ସବୁ ମନେ ହୋଇଛି ନିରର୍ଥକ—

ରୋଗ ଶୋକ ଜନ୍ମ ମୃତ୍ୟୁ ଜର୍ଜରିତ ଜୀବନ ସାହାରା
ଏ ଜଗତ ମିଥ୍ୟାମାୟା ଉଚ୍ଛୃଙ୍ଖଳ କୁହୁଡ଼ି ପର୍ବର
ପଦେ ପଦେ ବାଧାବିଘ୍ନ, ପଗେ ପଗେ ପୂରିଛି କଣ୍ଟକ
ଖେଳା ଲୀଳା ସ୍ୱପ୍ନଛାୟା, ବୃଥା ସବୁ, ସବୁ ନିରର୍ଥକ
ଅସାର ସଂସାର !
ଧରା ଧାମେ କାହିଁ ଶାନ୍ତି ? କାହିଁ ମୁକ୍ତି ? ଏ ତ କାରାଗାର ।

କବିଙ୍କ ମନରେ ଅନେକ ପ୍ରଶ୍ନ ଏ ସୃଷ୍ଟିର ପ୍ରତିଟି ଘଟଣା ସତେ କାହା ନିର୍ଦ୍ଦେଶରେ ଘଟିଚାଲିଛି ? କିଏ ତାର ସୂତ୍ରଧର ? କିଏ ତାର କର୍ତ୍ତା ? ଏ ଆତ୍ମଜିଜ୍ଞାସାର ଉତ୍ତର ତାଙ୍କୁ ଦେଇପାରିନି ସାମ୍ୟବାଦ ବା ସମାଜବାଦ । ସାମ୍ୟବାଦର ପ୍ରବକ୍ତାମାନେ ମାର୍କସିଜିମ୍ ଅନୁସାରେ ଏକ ସମତୁଲ ସମାଜ ପ୍ରତିଷ୍ଠା କ୍ଷେତ୍ରରେ ସମାଜର ଚିରାଚରିତ ଧର୍ମ ବିଶ୍ୱାସ ଓ ଭଗବତ୍ ବିଶ୍ୱାସକୁ ମଧ୍ୟ ସମ୍ପୂର୍ଣ୍ଣ ଅସ୍ୱୀକାର କରିଥିଲେ । ଭଗବାନ ବା ଧର୍ମ କେନ୍ଦ୍ର ସଂସ୍ଥା ମଣିଷର ସମସ୍ୟାର ସମାଧାନ କରିପାରିବେ ନାହିଁ । କିନ୍ତୁ ସମୟ କ୍ରମରେ କବି ରଘୁନାଥଙ୍କର "ସମାଜର ମୁକ୍ତିମାର୍ଗେ ନାସ୍ତିକତ୍ୱ କରେ ସଂହାର"ର ପ୍ରତ୍ୟୟ ତୁଟିଯାଇଛି । ସେ ଉପଲବ୍ଧି କରିଛନ୍ତି ମଣିଷର ପ୍ରକୃତ ଆତ୍ମିକ ସମସ୍ୟା ଜାଗତିକ ସ୍ତରରେ କେବେ ସମାଧାନ କରିପାରେନା । ସେ ଆତ୍ମାନୁସନ୍ଧାନୀ ହୋଇ ଉଠିଛନ୍ତି । ହତାଶା ତାଙ୍କୁ ସ୍ପର୍ଶ କରିନି ବରଂ ଏକ ଦିବ୍ୟ ସମ୍ଭାବନାରେ ଉଦ୍ଦୀପିତ ହୋଇ ଉଠିଛି ତାଙ୍କର ପ୍ରାଣ ମନ । ଧର୍ମ, ସମାଜବାଦ ଓ ସାମ୍ୟବାଦର ସଂକୀର୍ଣ୍ଣ ବଳୟକୁ ଭେଦକରି ତାଙ୍କର ଅନ୍ତରାତ୍ମା ଆଧ୍ୟାତ୍ମିକତାର ଅନନ୍ତ, ବ୍ୟାପକ ଓ ପ୍ରସାରଶୀଳ ଚେତନା ଭିତରେ ଆଲୋକର ସନ୍ଧାନ କରିଛି । ତାଙ୍କର ଚେତନାର ଉତ୍ତରଣ ଘଟିଛି । ଅଧ୍ୟାତ୍ମବାଦୀ କବି ବିଶ୍ୱାସ ସ୍ଥାପନ କରିଛନ୍ତି ଋଷି ଦିବ୍ୟଦ୍ରଷ୍ଟା ଶ୍ରୀ ଅରବିନ୍ଦଙ୍କର ଅତିମାନସ ଦର୍ଶନରେ । ସେ ଉପଲବ୍ଧି କରିଛନ୍ତି ଏକ ପରମ ଦିବ୍ୟସତ୍ତା ଏହି ବିଶ୍ୱଟିକୁ ସୃଷ୍ଟି କରିଛି । ଏ ବିଶ୍ୱର ଉତ୍ପତ୍ତି ଓ ସ୍ଥିତି ସେହି ସଚ୍ଚିଦାନନ୍ଦ ସତ୍ତାରେ । ମଣିଷର ଇନ୍ଦ୍ରିୟବୋଧ, ମନ, ଶକ୍ତି ଓ ଅସ୍ତିତ୍ୱ ପ୍ରଭୃତି ଦ୍ୱୈତବୋଧକ ସଂଜ୍ଞାଗୁଡ଼ିକ କେବଳ ସେହି ଦିବ୍ୟ ପୁରୁଷଙ୍କର ଚେତନଶକ୍ତି, ଆନନ୍ଦ ଓ ଦିବ୍ୟ ଅସ୍ତିତ୍ୱର ଗୁପ୍ତାପାତ ବ୍ୟତୀତ ଆଉ କିଛି ନୁହେଁ । ପ୍ରଚ୍ଛନ୍ନ ଭାବରେ ହେଲେ ମଧ୍ୟ ଏହି ଦିବ୍ୟଶକ୍ତି ବିଶ୍ୱର ଯାବତୀୟ ରୂପ

ତଥା ଯାବତୀୟ ଶକ୍ତି ଭିତରେ ବିଦ୍ୟମାନ ରହିଥାଏ । ତେଣୁ ମନୁଷ୍ୟର ମାନସିକ ତଥା ଶାରୀରିକ ଭୂମିରେ ଦିବ୍ୟଚେତନାକୁ କେବଳ ପ୍ରକାଶିତ କରିବା ଓ ଧାରଣ କରିବା ନୁହେଁ— ପରିଶେଷରେ ହୁଏତ ଏହି ଦିବ୍ୟଶକ୍ତି ମଣିଷର ପ୍ରାଣ, ମନ ଓ ଶରୀରକୁ ମଧ୍ୟ ରୂପାନ୍ତରିତ କରିଦେବ । ଶ୍ରୀଅରବିନ୍ଦଙ୍କର ଦର୍ଶନରେ ବିଶ୍ୱାସୀ କବିଙ୍କର ପ୍ରତ୍ୟୟ ଆସିଛି ଏ ପୃଥିବୀରେ ମନୁଷ୍ୟ ଲାଗି ଏକ ଦିବ୍ୟ ଜୀବନର ସମ୍ଭାବନା ରହିଛି । ତେଣୁ ସେ ଉଦାତ୍ତ କଣ୍ଠରେ ଗାଇ ଉଠିଛନ୍ତି—

ବିନାଶର ଧାରା କେବେ ହଜାଇବ ସୃଷ୍ଟି ମହୋତ୍ସବ
ମରଲୋକେ ଅମରତ୍ୱ, ନର ଦେହେ ଦେବତ୍ୱ ସମ୍ଭବ,
ସମ୍ଭବିବ ଏହି ମର୍ତ୍ତ୍ୟେ ଯୁଗ ଯୁଗ କଳ୍ପିତ ଗୋଲୋକ
ବିକଶିବ ତୋ ମାନସେ ଅତୀନ୍ଦ୍ରିୟ ଦିବ୍ୟ ସେ ଆଲୋକ ।

ଆପଣା ମଧ୍ୟରେ ବ୍ରହ୍ମର ପରମ ପ୍ରଶାନ୍ତି ଓ ନୈଷ୍କର୍ମ୍ୟର ପରିଚୟ ପାଇଲେ ମନୁଷ୍ୟ ପରିପୂର୍ଣ୍ଣତା ଲାଭକରେ ଓ ତାର ଚେତନାର ଦିବ୍ୟ ଉତ୍ତରଣ ଘଟେ । ଶୁଦ୍ଧ ଚିନ୍ମୟସତ୍ତା ମଣିଷ ଭିତରେ ଆପଣାର ପରମ ମୁକ୍ତିକୁ ପ୍ରକାଶିତ କରିବାକୁ ଚାହେଁ । କବିଆତ୍ମା ସେଥି-ପାଇଁ ନିଜକୁ ପ୍ରସ୍ତୁତ କରିଛି, ଦୁଇ ବାହୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରି ପ୍ରାଣ ମନ ଓ ଶରୀର ନିର୍ବିଶେଷରେ ନିଜକୁ ପରିପୂର୍ଣ୍ଣ ଭାବରେ ସମର୍ପିତ କରି ଡାକଇଛି ସେହି ଅତିମାନସ ଶକ୍ତି ନିକଟରେ— 'ପରମୋଚ୍ଚ ପ୍ରଭୋ ସତ୍ୟ ନିତ୍ୟ ତ୍ୱମେବ କେବଳମ୍' ।



୧ । ସବୁଜରୁ ସାମ୍ପ୍ରତିକ — ଡ: ନିତ୍ୟାନନ୍ଦ ଶତପଥୀ, ପୃ- ୩୬୭

# କ୍ରାନ୍ତିର କବିତା : କବି ରଘୁନାଥ

ଡଃ ଆଶୁତୋଷ ପରିଡ଼ା

କବିତା କାଳେ କାଳେ ମଣିଷ ଆତ୍ମାର ନିଷ୍କପଟ ଉଚ୍ଚାରଣ । କବିର ଚେତନା ସହିତ ବସ୍ତୁନିଷ୍ଠ ବାସ୍ତବତାର ଯେଉଁ ସଂଘାତ ସୃଷ୍ଟି ହୁଏ, ତାର୍ ଏକ ସ୍ୱତନ୍ତ୍ର ରୂପାୟନ ହେଉଛି କବିତା । ବାସ୍ତବତାର ଉପଲବ୍ଧି ଭିତରେ କବି ଦେଖେ ନିଜ ସମସ୍ୟାର ଦ୍ୱନ୍ଦ୍ୱ, ସମାଜରେ ସାଧାରଣ ମଣିଷର ଜୀବନ ସଂଗ୍ରାମ । କବିର ଆବେଗ ଓ ଆଭିମୁଖ୍ୟ ଅନୁଯାୟୀ ତାର କବିତା ନିର୍ଦ୍ଦିଷ୍ଟ ରୂପ, ରସ ଓ ସମ୍ମୋହନ ନେଇ ଉଭା ହୁଏ । ସ୍ଥିତାବସ୍ଥା ଯେଉଁଠି କବି ପାଇଁ ସ୍ପୃହଣୀୟ ନୁହେଁ, ସେଠି ସେ କ୍ରାନ୍ତିରେ ବିଶ୍ୱାସ ରଖେ । ଶ୍ରେଣୀ ବିଭକ୍ତ ସମାଜର ସୌଦାଗରୀ ମୂଲ୍ୟବୋଧ ପାଖରେ ସେ ଆଉ ନିଜର କାବ୍ୟ ସୃଷ୍ଟିକୁ ପଣ୍ୟ ଭାବରେ ଅର୍ପଣ କରିପାରେ ନାହିଁ କିମ୍ବା ବିଶୁଦ୍ଧ କଳା ଭିତରେ ଆତ୍ମଗୋପନ କରି ବ୍ୟକ୍ତି ସର୍ବସ୍ୱତା ଗ୍ରହଣ କରିପାରେ ନାହିଁ । ବାସ୍ତବତାର ପୃଷ୍ଠଭୂମିରେ ସେ ସଚେତନ ଭାବରେ ପ୍ରତିଫଳିତ କରେ ସମାଜକୁ ଓ ଅଗଣିତ ମଣିଷଙ୍କ ଆଶା ଆକାଂକ୍ଷାକୁ । ସ୍ଥିତାବସ୍ଥା ବିରୋଧରେ ସେ ସ୍ୱର ଉତ୍ତୋଳନ କରେ ; ନୂତନ ମୂଲ୍ୟବୋଧ ପାଇଁ ଆହ୍ୱାନ ଦିଏ ; ମଣିଷର ମୁକ୍ତିର ଜୟଗାନ କରେ । ସେତେବେଳେ ତାର କାବ୍ୟଚେତନା ଏକ ନିର୍ଦ୍ଦିଷ୍ଟ ଦିଗରେ ପ୍ରଧାବିତ ହୁଏ ; ତାର କବିତା ହୋଇଯାଏ କ୍ରାନ୍ତିର କବିତା ।

କ୍ରାନ୍ତଦର୍ଶୀ କବି ତାର କାବ୍ୟିକ ଅନୁପ୍ରେରଣା ସମାଜଠାରୁ ହିଁ ଲାଭକରେ । ମଣିଷର ଦୈନ୍ୟ, କ୍ଲାନ୍ତି, ସଂଗ୍ରାମ ଓ ମୁକ୍ତିର ପିପାସା ତାକୁ ଉଦ୍‌ବେଳିତ କରେ । ଆବେଗ ହୁଏ ତାର ଗଣମୁଖୀ । ନିଜସ୍ୱ ବିଶ୍ୱାସ ଓ ଅଙ୍ଗୀକାରକୁ ସେ କାବ୍ୟ ରୂପରେ ଅର୍ପଣ କରେ ମଣିଷର ବିଶ୍ୱାସ ଓ ଅବବୋଧ ପାଇଁ । ସେତେବେଳେ, ଏକ ଶ୍ରେଣୀ ବିଭକ୍ତ ସମାଜରେ କବି ଜନଗଣଙ୍କ ପକ୍ଷଭୁକ୍ତ ହୋଇଯାଏ ।

କବି, ସାହିତ୍ୟିକର ଏହି ପକ୍ଷଭୁକ୍ତି ସହିତ ଏକ ମତାଦର୍ଶର ପ୍ରଶ୍ନ ଜଡ଼ିତ । ଜୀବନକୁ ନେଇ କଳା ଓ ସାହିତ୍ୟ ; ଜୀବନ ଯେହେତୁ ସମାଜ ଆଧାରିତ ଓ ସମାଜ ଯେହେତୁ ରାଜନୈତିକ ଅନୁଷ୍ଠାନମାନଙ୍କ ଦ୍ୱାରା ପରିଚାଳିତ, ସେଠାରେ କବି ପାଇଁ ଏକ ମତାଦର୍ଶର ମାର୍ଗ ଅବଶ୍ୟମ୍ଭାବୀ । ଯେଉଁ ଶିଳ୍ପୀ ସାହିତ୍ୟିକମାନେ ମତାଦର୍ଶଠାରୁ ଦୂରରେ ରହିଛନ୍ତି ବୋଲି ଦାବି କରନ୍ତି ସେମାନେ ମଧ୍ୟ ଅଚେତନ ଭାବରେ କୌଣସି ନା କୌଣସି ମତାଦର୍ଶ ଦ୍ୱାରା ପ୍ରଭାବିତ । କବି ରଘୁନାଥ ଦାସଙ୍କର ଏକ ନିର୍ଦ୍ଦିଷ୍ଟ

ରାଜନୈତିକ ସିଦ୍ଧାନ୍ତ ଥିଲା । ସେ ଥିଲେ ସାମ୍ୟବାଦୀ ସାହିତ୍ୟିକ । ମାର୍କସଙ୍କ ଭାଷାରେ "It (ସାମ୍ୟବାଦ) is the definite resolution of antagonism between man and nature and between man and man. It is the true solution of the conflict between existence and essence, between objectification and self affirmation between freedom and necessity, between individual and species. It is the solution of the riddle of history and knows itself to be the solution."

ଏଇ ଉକ୍ତି ଭିତରେ ଯେଉଁ ଆସ୍ଥା ଓ ଆଶାର ସ୍ୱର ଅନୁରଣିତ ହୁଏ, ତା'ର ଅର୍ଥ ଯିଏ ଯେପରି ଭାବରେ କଳ୍ପନା କାହିଁକି, ଯେ କୌଣସି ମାନବବାଦୀ ଶିଳ୍ପୀ ସାହିତ୍ୟିକ ପାଇଁ ତା ଭିତରେ ରହିଛି ଏକ ଅଦମ୍ୟ ଆକର୍ଷଣ । ତେଣୁ, ଆଗାମୀର ସ୍ୱପ୍ନ ଦେଖୁଥିବା ଓ ସ୍ଥିତାବସ୍ଥା ସହିତ ସାଲିସ୍ ନକରିବା ପାଇଁ ଅଙ୍ଗୀକାରବଦ୍ଧ ଶିଳ୍ପୀ ସାହିତ୍ୟିକ ପକ୍ଷରେ, ଏପରି ଏକ ଦର୍ଶନକୁ ଅସ୍ୱୀକାର କରିବା ବାସ୍ତବତଃ ଅସମ୍ଭବ । କବି ରଘୁନାଥ ଏହାର ବ୍ୟତିକ୍ରମ ନଥିଲେ । ତେଣୁ ସେ ଲେଖିଥିଲେ—

"ଘକାର ମୁଁ ନୁହେଁ ଭାଟ, ମନଗଢ଼ା କଳ୍ପନା ସୌଖୀନ
ନୁହେଁ ଏହା ବୁର୍ଜୁଆର ବ୍ୟକ୍ତିତ୍ୱର ଲଗି ଜନତାର ବଦ
ମୋର କଣ୍ଠେ
ଆଗାମୀ ଶୁଣୁଛି ତାର ଆଗମନୀ ଅପୂର୍ବ ଭୈରବୀ ।"

ତାଙ୍କ ପାଇଁ "ବିପ୍ଳବୀ ସାହିତ୍ୟ ଏକ ନୈବେଦ୍ୟ । ଅଭାବ ଚେତନାର ମହାଯଜ୍ଞରେ ତାହା ଇନ୍ଧନର କାର୍ଯ୍ୟ କରିଥାଏ । କାବ୍ୟ ରଚୟିତାର ଚତୁର୍ବର୍ଗ କାମନାରୁ ତାହା ସୃଷ୍ଟି ହୁଏନାହିଁ । ମୁକ୍ତିକାମୀ ଜନଗଣଙ୍କୁ ଉଦ୍‌ବୁଦ୍ଧ କରିବା, ସେମାନଙ୍କୁ ସଙ୍ଗଠିତ କରିବା ଓ ଦିଗ୍‌ଦର୍ଶନ କରିବାରେ ସହାୟକ ହେବାଲାଗି ତାହା ଉଦ୍ଦିଷ୍ଟ ।"

( 'ଏ ଚତ୍ୱ ଚିନ୍ତାର ସାହା' — 'ପୁନଷ୍ଟ'ର ମୁଖବନ୍ଧ )

## 'ଅଗଷ୍ଟ ପନ୍ଦର'ର କବି :

କବି ରଘୁନାଥ ଦାସଙ୍କର ପ୍ରକାଶିତ କବିତାର ସଂଖ୍ୟା ସ୍ୱଳ୍ପ । ୧୯୪୯ ମସିହାରେ ପ୍ରକାଶିତ 'ଅଗଷ୍ଟ ପନ୍ଦର' କବିତା, ଯାହାକୁ ଏକ ଖଣ୍ଡକାବ୍ୟ ବି କୁହାଯାଇପାରେ, ତାଙ୍କୁ ଜଣେ ଶକ୍ତିଶାଳୀ ମାର୍କସ୍‌ବାଦୀ କବି ଭାବରେ ପ୍ରତିଷ୍ଠିତ କରିଥିଲା ।

'ଅଗଷ୍ଟ ପନ୍ଦର' ଏକ କାବ୍ୟିକ ବିସ୍ଫୋରଣ । ୧୯୪୭, ୪୮ ଓ ୪୯ ସମୟରେ ତିନି ପର୍ଯ୍ୟାୟରେ ରଚିତ । 'ଅଗଷ୍ଟ ପନ୍ଦର' ସ୍ୱପ୍ନ, ମୋହଭଙ୍ଗ ଓ ଶପଥର କବିତା ;

ଶୌର୍ଯ୍ୟ, ଅଗ୍ନି ଓ ଆବାହନର କବିତା । '୧୯୪୭'ରେ କବି ତା ଭିତରେ ଦେଖୁଛନ୍ତି ଔପନିବେଶିକ ଶାସନ ଓ ଲୁଣ୍ଠନର ଅବସାନ । 'ବାଲିତର ପ୍ରାଣଘାତୀ ପୁଞ୍ଜିପତି ଲୁବଧକ କୌଶଳ', 'ମଦକେଲିଷ୍ଟ କୁକୁରର ଜମିଦାର ପଦରେ ଲାଳସା' ଇତ୍ୟାଦି ଇତ୍ୟାଦି ପଦ୍ଧରେ ରହିଯାଇଛି । "କଙ୍କାଳ କରିଛି ଦାବି ବଞ୍ଚିବାର ନ୍ୟାଯ୍ୟ ଅଧିକାର··· ·· / ଆମ ରକ୍ତେ କେତେକାଳ ରଞ୍ଜା ହେବ ତୁଚ୍ଛା ଦରବାର ?" ର ଉଚ୍ଚାରଣ ଭିତରେ କବି ଦେଖିଛନ୍ତି ସାରାଦେଶର ଶ୍ରମିକ, କୃଷକମାନଙ୍କ ପାଇଁ ଅର୍ଥନୈତିକ ସ୍ୱାଧୀନତାର ସ୍ୱପ୍ନ । କବି ସ୍ୱାଗତ କରିଛନ୍ତି ଅଗଷ୍ଟ ପନ୍ଦରକୁ । ତଥାପି ସତର୍କବାଣୀ ଶୁଣାଇଛନ୍ତି—

"ଯାତ୍ରୀ ସାବଧାନ !
ତୋର ଏହି ଯାତ୍ରାପଥେ ନୁହେଁ ଏ ଯେ ଅନ୍ତିମ ସୋପାନ ।
ସଂଗ୍ରାମ ତୋ ସରିନି ଏବେବି ;
ଏବେ ମଧ୍ୟ ଉଡ଼ୁଛି ତୋର ଜନତାର ରକ୍ତ ମାଂସ ଲେହି
ଗୃଧ୍ରଦଳ ଚନ୍ଦ୍ରମାରେ ; ଝାର୍ମିନି ଏ ଶ୍ରମିକର ଆସୁ,
ଏବେ ମଧ୍ୟ ଭାତଥାଳୀ ଭୋଗ କରେ ମାଲିକ ଓ ସାଧୁ !! ··"

'୧୯୪୮'ରେ କବି ଭୁଲିପାରୁ ନାହାନ୍ତି ଏକବର୍ଷ ତଳର ସେଇ ଉତ୍ସବମୁଖର, ସ୍ୱପ୍ନିଳ ଉନ୍ମାଦନାକୁ । ମନେ ପଡ଼ୁଛି ପୂର୍ଣ୍ଣକୁମ୍ଭ ରଖି ଆବାହନର ଦୃଶ୍ୟ, ଶଙ୍ଖ ହୁଳ-ହୁଳିର ଶବ୍ଦ । ମନେ ପଡ଼ୁଛି 'ଗ୍ରାମେ ଗ୍ରାମେ ଉତ୍ସବର ସମାରୋହ··· ଢୋଲ, ଖୋଲ ତାଳ / ସଜୀବତା ·· ସତେ କିବା ଜୀବନ୍ୟାସ ପାଇଲା କଙ୍କାଳ !' କବି କିନ୍ତୁ ଆଗରେ ଦେଖିଛନ୍ତି ଉଲଙ୍ଗ ବାସ୍ତବତାର ରୂପ । ମନରେ କ୍ଷୋଭ ଆଉ ପ୍ରତିହିଂସା ଜାଗିଛି । କବିଙ୍କର ମୋହଭଙ୍ଗ ଘଟିଛି ।

"ମୁମୂର୍ଷୁର ପ୍ରାଣେ ସେ ଯେ ଜାଗିଥିଲା ଯନ୍ତ୍ର ଉଦ୍ଦୀପନା—
ଆଜି ତାର ଦେଖେ ଭସ୍ମ । ସବୁ ମିଥ୍ୟା, କ୍ରୂର ପ୍ରବଞ୍ଚନା ।
ଶତ୍ରୁର ସେ ଥିଲା ଗୁଲ୍ । ଖାଲି ଗୋଟେ ମନ୍ତ୍ର ଧପ୍‌ପାବାଜି

× × ×

ଧରାପଡ଼େ ଜାଲ
ନଗ୍ନ ରୂପେ ଦେଖାଦିଏ ଶୋଷକର ଉଦ୍ଧତ ଦଲାଲ ।"

କବି ମର୍ମାହତ, କ୍ରୋଧ ଜର୍ଜରିତ, କିନ୍ତୁ ନିଜ ଉପରୁ ଆସ୍ଥା ହରାଇ ନାହାନ୍ତି "ଉଠ ! ଦୁର୍ଜୟ ସେ ବଳ ଆଣ ପ୍ରାଣେ, ଶକ୍ତ କର ବାହୁ, / ମୋ ସାଥେ ଶପଥ ଘେନ ଏ ଦେଶର ହାଡୁଡ଼ି ଓ ଦାଆ !" କବି ବୁଝିପାରିଛନ୍ତି ମୁକ୍ତି କାହାର ଦାନ ବା ଉପହାର ନୁହେଁ ।

ବନ୍ଧନକୁ ଚୂର୍ଣ୍ଣ କରି କେଉଁ 'ରକ୍ତାକ୍ତ ପ୍ରଭାତ'ରେ ତାକୁ ଲାଭ କରିବାକୁ ହୁଏ । ସେଥିପାଇଁ 'ମଧ୍ୟସ୍ଥତା' ବା 'ଚୁକ୍ତି' ଲୋଡ଼ାନାହିଁ ।

'୧୯୪୯'ରେ କବି 'ଅଗଷ୍ଟ ପନ୍ଦର' ଭିତରେ ଦେଖୁଛନ୍ତି "କଳଙ୍କି, କ୍ରୂର ପୈଶାଚିକ କୃଷ୍ଣ ଆତତାୟୀ"କୁ । ତେଣୁ କ୍ଷୋଭରେ ଗର୍ଜି ଉଠନ୍ତି— "ନୁହେଁ ନୁହେଁ ଏହା କେବେ ମଣିଷର ଶିଶୁ ଆୟୁଷ୍ମାନ", କବିଙ୍କ ଭାଷାରେ 'ମେହନତିର ଦୀର୍ଘ ଇତିହାସ' ତାକୁ ଉପହାସ କରୁଛି । ବିଶ୍ୱଭିତର କୁରୁକ୍ଷେତ୍ରରେ ରକ୍ତର ନଈ ବେଗ ଧରିଛି, ଯାହାର 'ଅନିବାର୍ଯ୍ୟ ସ୍ରୋତ'ରେ ଭାସି ଯାଉଛି ଅଗଣିତ ଦୁଃଶାସନଙ୍କ ଶବ, ଅନେକ ସାମ୍ରାଜ୍ୟ । କବି ନିଜସ୍ୱ ହତାଶାକୁ ଅତିକ୍ରମ କରି ଦେଖୁଛନ୍ତି ସମଗ୍ର ପୃଥିବୀ ବ୍ୟାପି ଶୋଷିତ ଜନତାର ବିପ୍ଳବର ଜୟଯାତ୍ରା । ନିଜର 'ସକଳ ସଂଶୟ'କୁ ଦୂର କରି କବି ମଣିଷର ମୁକ୍ତିପାଇଁ ଅର୍ପଣ କରୁଛନ୍ତି ନିଜର ବୈପ୍ଳବିକ ଅଙ୍ଗୀକାର ।

'ଅଗଷ୍ଟ ପନ୍ଦର' କବି ରଘୁନାଥଙ୍କ ବିପ୍ଳବୀ ଲେଖମର ଶ୍ରେଷ୍ଠତମ କୃତି । ନିଷ୍ପେଷିତ ଜନଗଣଙ୍କ ଆତ୍ମାର ଅଭ୍ୟନ୍ତରରୁ କବି ଏଠାରେ ମୂଲ୍ୟାୟନ କରିଛନ୍ତି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର । ଉଚ୍ଚାରଣରେ ଏଠି କୁଣ୍ଠା ନାହିଁ । ଧ୍ୱନିରେ ଏଠି କାର୍ପଣ୍ୟ ନାହିଁ । ଆବେଗ ଏଠାରେ ବସ୍ତୁନିଷ୍ଠ ଓ ଆଦର୍ଶ କଳାତ୍ମକ ଉତ୍କର୍ଷତାରେ ଚିର ପ୍ରତିଷ୍ଠିତ ।

'ଅଗଷ୍ଟ ପନ୍ଦର'ରେ ରାଜନୀତି ଅଛି ଓ କାବ୍ୟକଳାର ଚରମ ସ୍ୱାକ୍ଷର ଅଛି । ମାର୍କସୀୟ ଦୃଷ୍ଟିଭଙ୍ଗୀ ଅନୁଯାୟୀ କଳା ଓ ରାଜନୀତି ଭିତରେ ଏକ ନିର୍ଦ୍ଦିଷ୍ଟ ଦ୍ୱନ୍ଦ୍ୱାତ୍ମକ ସମ୍ପର୍କ ରହେ । ଯାହା ଭିତରେ ଉଭୟେ ସମନ୍ୱିତ ହୁଅନ୍ତି । ଏହା ଅନ୍ତର୍ନିହିତ ସହିତ ଆଙ୍ଗିକର ସମନ୍ୱୟ ; କ୍ରାନ୍ତିକାରୀ ଆଦର୍ଶ ସହିତ ଉଚ୍ଚତମ କଳା-କୌଶଳର ସମନ୍ୱୟ ହିଁ ବିପ୍ଳବୀ ସାହିତ୍ୟର ସଫଳତାର ମାପକାଠି ବୋଲି କୁହାଯାଇଥାଏ ।

ଆଲାନ୍ ବୋଲ୍ଡ ତାଙ୍କ ଦ୍ୱାରା ସମ୍ପାଦିତ **'A Penguin Book of Socialist Verses'** ପୁସ୍ତକର ମୁଖବନ୍ଧରେ କହନ୍ତି— **"A political association may help to give poetry immediate attention : it is inspite of this association that poetry will be read if it is read tomorrow. Because unless the political matter is humanised and transformel into poetry, it deserves to be forgotton."**

'ଅଗଷ୍ଟ ପନ୍ଦର' ଭୁଲି ହୋଇ ଯିବାର କବିତା ନୁହେଁ । ତେଣୁ ଏହା ରଚିତ ହେବାର ପଚିଶିରୁ ଊର୍ଦ୍ଧ୍ୱ ବର୍ଷ ପରେ ମଧ୍ୟ ଏହାର ଆବେଦନ ଅମ୍ଳାନ ରହିଛି । ଏହାର ରଚୟିତା ଭାବରେ ତେଣୁ କବି ରଘୁନାଥ ସ୍ମରଣୀୟ ହୋଇ ରହିବେ ।

**ବିପ୍ଳବିତର ଅଟଳ ବିଶ୍ୱାସ :**

ବିପ୍ଳବୀ କବି ତାର କବିତାର ପ୍ରେରଣା ଓ ଉପାଦାନ ଜନଗଣଙ୍କ ଠାରୁ ଗ୍ରହଣ କରେ । ମୃତ୍ୟୁକୁ ଉପହାସ କରି ଜୀବନର ଆବାହନ କରେ । କବି ରଘୁନାଥଙ୍କ ଭାଷାରେ "ମୃତ୍ୟୁ ତୁମକୁ ମୁଁ କରେ ଉପହାସ ·· । / ଏ ଜୀବନ··· ତାହାକୁ ମୁଁ ଭଲ ପାଏ । / ତା ଲଗି ଭରିଛି ପ୍ରାଣେ ଅଟଳ ବିଶ୍ୱାସ ;" (କମ୍ୟୁନିଷ୍ଟ) । ଭବି ବିଶ୍ୱାସ କରିଛନ୍ତି ଯେ ମଣିଷର ସଂଗ୍ରାମ କେବେ ବୃଥା ହେବନାହିଁ, 'ବୃଥା କେବେ ହେବନାହିଁ ଲକ୍ଷକୋଟି ସଂଗ୍ରାମୀର ପଣ' । ଏଇ ବିଶ୍ୱାସ ନେଇ କବି ଯେତେବେଳେ କଥା କହେ 'ଗଣ ବଳେ ବଳୀୟାନ' ତାର ସ୍ୱର । ସେଇ ଉଚ୍ଚାରଣ ଭିତରେ ରୂପ ନିଏ କବିର ଆଗ୍ନେୟ ସ୍ୱପ୍ନ, ନିପୀଡ଼ିତ ମଣିଷର ଭବିତବ୍ୟ ।

କବି ରଘୁନାଥଙ୍କ କାବ୍ୟ ଜିଜ୍ଞାସା ନିଜସ୍ୱ ପରିବେଶ ପାଖରେ ସୀମାବଦ୍ଧ ହୋଇ ରହିନାହିଁ । ସାରା ଦୁନିଆର ସର୍ବହରାଙ୍କ ପାଇଁ ଲେଖନୀ ତାଙ୍କର ଚଞ୍ଚଳ । କାରଣ ସେ ଜାଣନ୍ତି ସର୍ବହରା ସବୁଠି ସମାନ ; ଶୋଷଣର ଚକ୍ର କୌଣସି ଗ୍ରାମ, ସହର ବା ଦେଶର ସୀମା ଭିତରେ ଆବଦ୍ଧ ନୁହେଁ, ସାରା ପୃଥିବୀକୁ ଅଚ୍ଛନ୍ନ କରିଛି ତାର ଆକ୍ଟୋପସ୍ ବାହୁ । ତେଣୁ ସାରା ପୃଥିବୀ ବ୍ୟାପି ସର୍ବହରାର ସଂଗ୍ରାମ । ସର୍ବହରା ଆନ୍ତର୍ଜାତୀୟତାରେ ଉଦ୍‌ବୁଦ୍ଧ କବି ତେଣୁ ଗାଇଛନ୍ତି – 'ଭୂଗୋଳର ଭେଦ ଭୁଲି ଦେଶେ ଦେଶେ ଆମ ଅଭିଯାନ' ଚୀନ, କୋରିଆ, ମାଲୟ, ଭିଏତନାମ ଭୂମିରେ ଚାଲିଥିବା ଗଣସଂଗ୍ରାମ ଓ ମୁକ୍ତିଯୁଦ୍ଧ ପ୍ରତି କବି ଉଦ୍‌ଗ୍ରୀବ ହୋଇ ଚାହିଁ ରହନ୍ତି । ତାଙ୍କ ଦୃପ୍ତ କଣ୍ଠରୁ ଝରିପଡ଼େ ବିପ୍ଳବ ପାଇଁ ଅଟଳ ବିଶ୍ୱାସ –

"ଆଗେ ନିବିଡ଼ ରାତିର କଳା ଝଡ଼ ଫୁଲି ଫୁଲି ଉଠେ ··
ସମ୍ମୁଖେ କୁହାଟେ ମୃତ୍ୟୁ; ଦେଖେ, ଶୁଣେ, ନାହିଁ ଯେ ଲେଉଟେ
ନିର୍ଯାତନା ମଣି ତୁଚ୍ଛ, କମାଣରେ କରି ଉପହାସ,
ଗଣବଳେ ବଳୀୟାନ, ବିଜୟେ ଯା ଅଟଳ ବିଶ୍ୱାସ,
ପଦେ ପଦେ ଘାତୁକର ବେୟୋନେଟ୍ କରିଛି ସାମନା,
ତଥାପି ଦଳି ଯେ ଚଳେ କାଳସର୍ପ ହଳାହଳ ଫଣା,
ନିର୍ଭିତ ଗଢର ତାଲେ ବଜ୍ରମୁଷ୍ଟି ହାଣି ଊର୍ଦ୍ଧ୍ୱେ ନଭେ,
ଜାଣେ ଜାଣେ ସେମାନେ ଆସିବେ ।"

( ପଦଧ୍ୱନି )

ସାମ୍ରାଜ୍ୟବାଦୀଙ୍କ ସହିତ ଚାଲିଥିବା କୋରିଆର ଜନଗଣଙ୍କର ଅପ୍ରତିହତ ସଂଗ୍ରାମକୁ ନେଇ କବି ରଚନା କରିଛନ୍ତି 'କୋରିଆ' ଓ 'ମୃତ୍ୟୁଞ୍ଜୟ' କବିତା। ସାମ୍ରାଜ୍ୟବାଦୀଙ୍କ ସବୁ ଚକାନ୍ତ, ଯୁଦ୍ଧ କୌଶଳ, ଅସ୍ତ୍ର କୋରିଆ ପାଖରେ ବ୍ୟର୍ଥ ହୋଇଛି। କୋରିଆ 'ଜ୍ୱଳିପିତ ଶିଖା' ପରି ଜେଳି ଉଠିଛି। ମର୍ମସ୍ପର୍ଶୀ 'ମୃତ୍ୟୁଞ୍ଜୟ' କବିତାରେ, ବୋମାମାଡ଼ର ଧ୍ୱଂସ ସ୍ତୁପ ଭିତରେ ମା'ଟିଏ ଖୋଜୁଛି ହଜି ନିଶ୍ଚିହ୍ନ ହୋଇଯାଇଥିବା ତାର ଶିଶୁ ସନ୍ତାନକୁ। ସେଇ ଶିଶୁକଣ୍ଠରେ କବି ଶୁଣାଇଛନ୍ତି ଆଗାମୀର ମୃତ୍ୟୁଞ୍ଜୟ ସ୍ୱର—

ମା, ତୁମେ କାନ୍ଦନା।
ମୁଁ ମରିନି, ମୁଁ ବଞ୍ଚିଛି, ମିଛ ନୁହେଁ, ଏ ନୁହେ ଛଳନା,
ମୃତବତ୍ସା ହେ ଜନନୀ ! ମୁଁ ବଞ୍ଚିଛି ତୁମରି ଗର୍ଭରେ,
ମୁଁ ବଞ୍ଚିଛି ମୋ ଦେଶର କୋଟି ପ୍ରାଣେ, ଘରେ, ଘରେ ଘରେ ।

( ମୃତ୍ୟୁଞ୍ଜୟ )

ସେହିପରି ଚୀନର ବିପ୍ଳବ ଉପରେ ରଚିତ 'ସାଙ୍ଘାଇ' ଓ 'ଚୀନ' କବିତାରେ କବି ବିପ୍ଳବର ଜୟଗାନ କରିଛନ୍ତି। କବିଙ୍କ ମତରେ ଏହା କାହାରି ନୁହେଁ ବା 'ଆପଣାର କଥା' ନୁହେଁ; ସଂଗଠିତ ବିଶ୍ୱର ଜନତା ଅଭିନ୍ନ, ଅଭେଦ୍ୟ ଓ ଏକାକାର। କବି ତେଣୁ ଗାଇଛନ୍ତି—

ମାଟିର ସନ୍ତାନ ଆମେ ସବେଁ ଏକ ସହୋଦର ଭାଇ,
ଆମକୁ ପ୍ରତୀକ୍ଷା ରଖେ ଅବିମୁକ୍ତ ଅଯୁତ ସାଙ୍ଘାଇ !

( ସାଙ୍ଘାଇ )

ଯେଉଁ ବିଶ୍ୱାସ ନେଇ କବି କ୍ରାନ୍ତିର ଆବାହନ କରିଛନ୍ତି, ସେଇ ବିଶ୍ୱାସ ନେଇ ସେ ଅର୍ଘ୍ୟ ବାଢ଼ିଛନ୍ତି ଗଣସଂଗ୍ରାମର ସାରଥୀମାନଙ୍କ ପାଖରେ। ସମାନ ଦୃଷ୍ଟି ଓ ନିଷ୍ଠା ନେଇ ସେ ଦେଖିଛନ୍ତି ବିପ୍ଳବ ଓ ତାର ଅଗ୍ରଦୂତମାନଙ୍କୁ। 'ଗଣପତି', 'ମାଓ-ସେ-ତୁଙ୍ଗ୍', 'ଭଗବତୀ', 'ଲେନିନ', 'ନାଗଭୂଷଣ' ପ୍ରଭୃତି କବିତାରେ କବି ଏଇ ବିପ୍ଳବୀମାନଙ୍କୁ ନିଜର ଶ୍ରଦ୍ଧା ଓ ସଲାମ୍ ଜଣାଇଛନ୍ତି ମର୍ମସ୍ପର୍ଶୀ ଭାଷାରେ, ଯାହାର କିଛି ଉଦାହରଣ ଏଠାରେ ଦିଆଯାଇପାରେ।

"ସେ କିବା ସକାଳ ସୂର୍ଯ୍ୟ ଜଳିଅଛି କୁଞ୍ଚିତ ଆକାଶେ
ମରଣକୁ ମ୍ଳାନ କରି ଜୀବନର ଦୃପ୍ତ ପରିହାସେ।
ହେ କୋମଳ ! ହେ ନିର୍ଭୀକ !
କିଏ ତୁମେ କୁହ ?
ପରିଚିତ ପରି ଲାଗ ; ତୁମେ କି ହେ ଆମ ଆଖି ଲୁହ ?"

( ଗଣପତି )

"ପ୍ରଭାତର ବନ୍ଧୁପୂର୍ବେ ତୁମର ଉଦୟ ;
ଉଷାର ସପନେ ଦୀପ୍ତ ତୁମେ ଜ୍ୟୋତିର୍ମୟ ;
ଆଲୋକର ଅଗ୍ରଦୂତ ତୁମେ ଶୁକତାରା,
ତୁମେ ବନ୍ଧୁ ଜାଗୃତିର ପହିଲ ତାରକା ।"
( ଭଗବତୀ )

"ସେ ରହିଛି ଗୁଳିଆ ଘରେ ଅଳିଆ ତଳେ ତଳେ
କାଳିଆ ଦେହ ମସିଆ ଲୁଗା ଜନତା ମେଳେ ମେଳେ ;
ନାଗଭୂଷଣ ନୁହେଁରେ କେହି ଆମର ମୂକ ଭାଷା
ତାଠାରେ ଫୁଟେ ଦଳିତ ପ୍ରାଣ ଦଳିତ ଜନ ଆଶା ।"
( ନାଗଭୂଷଣ )

ଜୀବନକୁ ଭଲପାଇବାର ଅର୍ଥ ମଣିଷକୁ ଭଲପାଇବା । ମଣିଷକୁ ଭଲପାଇବାର ଅର୍ଥ ମଣିଷର ମୁକ୍ତିର କାମନା, ତା ପାଇଁ ତୁଚ୍ଛା ଅନୁକମ୍ପା ନୁହେଁ । ମାନବବାଦୀ କବିର ଦୃଷ୍ଟି ଭିତରେ ତେଣୁ କ୍ରାନ୍ତିର ଉଦ୍ଦୀପନା ଭରିରହିଥାଏ । କ୍ରାନ୍ତିରେ ଅଟଳ ବିଶ୍ବାସ ନେଇ ସେ ଖୋଜିପାଏ ତାର କବିତାର ଭାଷା, ଯେଉଁଠି ସ୍ଲୋଗାନ ନାହିଁ, ଅଛି ସମଗ୍ର ମଣିଷ ଜାତି ପ୍ରତି ଅନ୍ତରଙ୍ଗତା ଓ ଅଙ୍ଗୀକାର । ରଘୁବାବୁ ଏହିପରି ଜଣେ କବି ।

ସ୍ଲୋଗାନ ନୁହେଁ ଇତିହାସ :

ବିପ୍ଳବୀ କବିତା କେବଳ ବିପ୍ଳବର ଉଦ୍‌ଘୋଷଣା ଭିତରେ ସୀମାବଦ୍ଧ ନୁହେଁ । ଏହା ଭିତରେ ଜାତୀୟାର୍ଜିତ ସାମାଜିକ ବାସ୍ତବତାର ବିଭିନ୍ନ ରୂପ । ଯାହା କୁତ୍ସିତ, କଦାକାର ବା ଯାହା ଈପ୍ସିତ ଓ ସୁନ୍ଦର ନିଜ ନିଜର ଐତିହାସିକତା ନେଇ ସମ୍ମିଳିତ ହୁଅନ୍ତି କ୍ରାନ୍ତିର ସୃଜନଶୀଳତା ଭିତରକୁ । ଜର୍ଜ ଥମସନ୍‌ଙ୍କ ମତରେ – "In class society, and especially in contemporary capitalist society, truth and beauty appear as antagonistic opposites. The real is ugly and the beautiful is unreal. The artist seeks to resolve this contradiction in and through the imagination." ( George Thomson, The Human Essence. ) ବିପ୍ଳବୀ କବି ନିଜ କବିତା ଭିତରେ ସତ୍ୟ ଆଉ ସୁନ୍ଦରର ଏଇ ବିରୋଧାଭାସକୁ ସମାହିତ କରିବାକୁ ଚେଷ୍ଟାକରେ । କିନ୍ତୁ କବିତାରେ ତା ପାଇଁ ଭ୍ରାନ୍ତିର ସ୍ଥାନ ନାହିଁ । ସେ ସର୍ବଦାକାଳ ସଚେତନ । ସେ ଯେତେବେଳେ ଜନଗଣଙ୍କ

ପକ୍ଷଭୁକ୍ତ ହୋଇଯାଏ ଓ ସେମାନଙ୍କ ସହିତ ନିଜର ଅସ୍ତିତ୍ୱକୁ ଏକାକାର କରିଦିଏ, ସେ ଭ୍ରାନ୍ତ ଓ ବାସ୍ତବତା ଭିତରେ ପାର୍ଥକ୍ୟ ଭୁଲିଯାଉଥାଏ । କେବଳ ସେତିକି ନୁହେଁ, ଏ ସବୁର ସାମାଜିକ ଭିତ୍ତିକୁ ହୃଦୟଙ୍ଗମ କରି ପାରିଥାଏ ।

କବି ରଘୁନାଥ ଇତିହାସ ସଚେତନ ଶିଳ୍ପୀ । 'ଅଗଷ୍ଟ ପନ୍ଦର' ପର୍ଯ୍ୟାୟରେ ସବୁ କବିତାରେ ଓ 'ପୁନଶ୍ଚ' ପର୍ଯ୍ୟାୟର ଅଧିକାଂଶ କବିତାରେ ତାଙ୍କର ଏଇ ଦୃଷ୍ଟିଭଙ୍ଗୀ ଲକ୍ଷ୍ୟ କରିଯାଇପାରେ । ସାମାଜିକ ବାସ୍ତବତାକୁ ସେ ଗଭୀର ଓ କଳାତ୍ମକ ଭାବରେ ରୂପାୟିତ କରିଛନ୍ତି ତାଙ୍କ ବିଭିନ୍ନ କବିତାରେ । ବିପ୍ଳବର ଧ୍ୱନି ଭିତରେ କେଉଁଠି ସେସବୁ ଓତଃପ୍ରୋତ ଭାବରେ ମିଶି ରହିଛି ତ କେଉଁଠି ଅଶେଷ କାରୁଣ୍ୟ ଭିତରେ ଫୁଟି ଉଠିଛି ବା କେଉଁଠି ତୀବ୍ର ବ୍ୟଙ୍ଗ ଭିତରେ ରୂପାୟିତ ହୋଇଛି ।

ଶୋଷଣ, ଅନାଚାର, ଦାରିଦ୍ର୍ୟ, ଏ ସବୁ ମଣିଷ ପାଇଁ ନୂଆ କଥା ନୁହେଁ । କିନ୍ତୁ କେଉଁ ପରିପ୍ରେକ୍ଷୀରେ ଓ କିପରି ଭାବରେ ଏହା କାବ୍ୟରୂପ ନିଏ, ତାହାହିଁ କବିତା ଓ ତାର ନାନ୍ଦନିକ ସଫଳତା ପାଇଁ ତାତ୍ପର୍ଯ୍ୟ ବହନ କରେ । କବି ରଘୁନାଥ ଏକ ବୈପ୍ଳବିକ ସମ୍ଭାବନାର ପରିପ୍ରେକ୍ଷୀରେ, ଗଭୀର ସମ୍ବେଦନା ଓ କଳାତ୍ମକ ନିଷ୍ଠା ନେଇ ଦାରିଦ୍ର୍ୟ ଓ ଶୋଷଣର ଅସଂଖ୍ୟ ଚିତ୍ର ଦେଇଛନ୍ତି ; ଯାହାର କିଛି ଉଦାହରଣ ହେଉଛି-

"ମାଂସ ତ ଯାଇଛି ଝଡ଼ି, ଅଛି ହାଡ଼, କେବଳ ହିଁ ହାଡ଼ .. ;
ହାଡ଼ର ଶାସନ ଲାଗି ଗୁଳି ଗ୍ୟାସ ଜେଲ ଲାଠିମାଡ଼... ।
ଦିଗେ ଦିଗେ ଆର୍ତ୍ତ ହାହାକାର ।"

( ଅଗଷ୍ଟ ପନ୍ଦର )

"ଆମେ କି ରହିବ ଗଛ—
—ଆମ ଗ୍ରୀଷ୍ମ ନଗିଡା ଋତରେ
ଚନ୍ଦ୍ରାଯିବ କର୍ମୀମାନଙ୍କର ରକ୍ତ ଲାଲ ବହଳିଆ ଲଭ ?"

( ଗଣପଥ )

"ସେ ଗରଳେ ଝାଉଁଳିଛି ତରୁଲତା
ଯେତେ ଗୋକୁଳରେ ;
ସେ ବିଷରେ ଝଡ଼ିପଡ଼େ ହାଡ଼ୁ ମାଂସ,
ଶୁଖିଛି ରକତ ;
ଉପବାସେ ହାତପାତେ ଶ୍ୟାମଳୀମା
ହତଶ୍ରୀ ଭାରତ ।"

( ପଦ୍ମତୋଳା )

"ଉତ୍କଳ ତ ସେ ଶ୍ରଣୀ ଜନତା
ବାକ୍ୟ ଯାର ନ ଫୁରଇ ହୃଦୟର ବ୍ୟଥା ।
ତୋତେ ତ ଛେଳକୁ ବ୍ୟାଧ ଦଶ ଦଶ ଘେର,
ତୋର ରକ୍ତ ମାଂସ ଖାଇ ତାର ସୌଦାଗରୀ ।"

( ମୃଗୁଣୀ ସ୍ତୁତି )

କବି ଦେଖିଛନ୍ତି, ଜନସାଧାରଙ୍କ ଦୈନ୍ୟ ବେଳେ, ଭଦ୍ରସମାଜର ସ୍ୱାର୍ଥପରତା ଓ ଭଣ୍ଡାମୀର ପ୍ରହସନ । ଏଥିର କ୍ଷୋଭ ନେଇ ତାଙ୍କ ମାନସିକ ପ୍ରତିକ୍ରିୟା ପ୍ରକାଶ ପାଇଛି ତୀବ୍ର ବ୍ୟଙ୍ଗ ବିଦ୍ରୂପ ଭିତରେ, ଯେଉଁଠି ତାଙ୍କ ଲେଖନୀ ଶାଣିତ ହୋଇ ଉଠିଛି । 'ଊର୍ଣ୍ଣନାଭ', 'ପ୍ରବାଳ ଦ୍ୱୀପରେ ଲବଙ୍ଗଲତା', 'ଭାରତ ବନ୍ଦନା', 'ମାନଚିତ୍ର ଭିତରେ', 'ପ୍ରବଞ୍ଚନା' ପ୍ରଭୃତି କବିତାରେ ଏହା ପ୍ରତିଫଳିତ—

"ପବିତ୍ର ଭାରତବର୍ଷ ; ପବିତ୍ର ସ୍ୱେଚ୍ଛ ତାର ଇତିକଥା
ଜାତଲଗ୍ନେ ମେଷରାଶି ; ଗୌରୁମାନେ ଏଦେଶେ ଦେବତା ।"

( ମାନଚିତ୍ର ଭିତରେ )

"ସନ୍ତ୍ରୀବିତ ସମସ୍ୟରେ ଶୁଭ ଗଣତନ୍ତ୍ର,
ଦାରିଦ୍ର୍ୟ କବଚେ ଲେଖା ସାମ୍ୟବାଦମନ୍ତ୍ର,
ବିଶ୍ୱପତ୍ନୀ ଦାସ୍ୟେ ଭୂଲି ଅଣ୍ଡିବା ଶାରଦ ;
ନମୋ ନମୋ ଦାରୁଭୂତ ଇଣ୍ଡିଆ ଭାରତ ।"

( ଭାରତ ବନ୍ଦନା )

"ଉଦ୍‌ଘାଟନ କର ଦେଶେ ଅଛୁ ଯେତେ ନଦୀ ଓ ପର୍ବତ ;
ଦାରିଦ୍ର୍ୟର ସୀମାରେଖା ବଢ଼େ ଯେବେ ଭବିଷ୍ୟ ଉଜ୍ଜ୍ୱଳ ;
ଅମଲାଏ କରୁଛନ୍ତି ଫାଇଲରେ ବୈପ୍ଳବିକ ସୃଷ୍ଟି ।
ଏ ପ୍ରସଙ୍ଗେ ଆଉପାଦ ଲେଖ ଲେଖ କବି କାଳିଦାସ ।"

( ଭୋଜନ ଦେହ ରାଜେନ୍ଦ୍ର )

ସବୁ ମିଥ୍ୟାଚାର ଓ ଶୋଷଣ ସତ୍ତ୍ୱେ, ସ୍ଥିତାବସ୍ଥାର ସମସ୍ତ ଚକ୍ରାନ୍ତ ସତ୍ତ୍ୱେ, ସମାଜରେ ପରିବର୍ତ୍ତନ ଘଟି ଚାଲିଛି । ମଣିଷର ଚେତନାରେ ଉତ୍ତରଣ ଘଟୁଛି ।

ଇତିହାସର ଗତି ରହିଛି ଅପ୍ରତିହତ । କବି ବିଶ୍ୱାସ କରନ୍ତି ଏଇ ପରିବର୍ତ୍ତନରେ । ତେଣୁ ସେ 'ଲେନିନ' କବିତାରେ ଉଚ୍ଚାରଣ କରନ୍ତି— "ସ୍ଥାଣୁ ନୁହେଁ ଇତିହାସ ; / ଚିରନ୍ତନ ନୁହେଁ / ପ୍ରଭୁ ଆଉ କ୍ରୀତଦାସ ॥" 'ମହାନାଟକ' କବିତାରେ ଅଙ୍କନ କରନ୍ତି ମଣିଷ ସମାଜର ଐତିହାସିକ ବିବର୍ତ୍ତନର ଛବି । 'କାରାଗାର'କୁ ଗ୍ରହଣ କରନ୍ତି ଆଗାମୀର ସୂତିକା ଭବନ ଭାବରେ । ଗାଇ ଉଠନ୍ତି—

"ଦେବକୀ ମୁଁ / ପ୍ରକୃତିର ପ୍ରତିକୃତି,
ମୁଁ ଜଗନ୍ମାତା ।
ଯୁଗେ ଯୁଗେ ଏଇଭଳି
ଲେଖିଛି ତ ନିଷିଦ୍ଧ କବିତା / ଆଗାମୀର ।"

( ଶ୍ରୀମଦ୍ ଭାଗବତ )

"ଯାଦୁକର ଜାଣିରଖ,
ଜନତା ନୋହିଛି ବନ୍ଦୀ ଘଣ୍ଟା ଇନ୍ଦ୍ରଜାଳେ ।
ପୁଣି—
ତୁମକୁ ଭେଟିବୁ ଆମେ ରକ୍ତାକ୍ତ ସକାଳେ ।"

( ଘଣ୍ଟା )

## ଅବିନୀତ ଜଟାୟୁର ଚେତନା :

କବି ରଘୁନାଥ ଦାସଙ୍କର 'ଅଷ୍ଟେ ପନ୍ଦର' ଓ 'ପୁନଶ୍ଚ' ସଙ୍କଳନର କବିତାମାନଙ୍କ ମଝିରେ ଦୀର୍ଘ କୋଡ଼ିଏ ବର୍ଷର ବ୍ୟବଧାନ । ଆଶ୍ଚର୍ଯ୍ୟ ହେବାକୁ ହୁଏ, ଏପରି ଜଣେ ଅଗ୍ନିମାନ କବି ମଝିରେ ଏତେକାଳ କିପରି ନୀରବ ରହିପାରିଥିଲେ ! ଏହାର କାରଣ ଅବଶ୍ୟ କବି ନିଜେ ଦେଇଛନ୍ତି 'ପୁନଶ୍ଚ'ର ମୁଖବନ୍ଧରେ । ସ୍ପର୍ଶକାତର କବି ଏମିତି ଅନେକ ସମୟରେ ପରିସ୍ଥିତିର ଚାପରେ କବିତା ଠାରୁ ଦୂରେଇ ଯାଏ । କିନ୍ତୁ ପୁଣି ଫେରିଆସେ । ଯାହା କିଛି ଆୟୁଧ ତା ପାଖରେ ବାକିଥାଏ ତାକୁ ନେଇ ପୁଣିଥରେ ସେ କବିତାର ଇଲାକାରେ ଅବତୀର୍ଣ୍ଣ ହୁଏ । ଜଟାୟୁ ଭଳି ସେ ପ୍ରତିରୋଧ କରେ ସବୁ ପ୍ରତାରଣା ଓ ବ୍ୟଭିଚାରକୁ ।

କବି ନିଜେ ସ୍ୱୀକାର କରିଛନ୍ତି— " 'ପୁନଶ୍ଚ' କବିତାଗୁଚ୍ଛରେ ମୋର ପୂର୍ବ କବିତାର ଶୌର୍ଯ୍ୟ ନାହିଁ, ଉଷ୍ମତା ନାହିଁ, ଉଦ୍ଦୀପନା ନାହିଁ । ବିଗତ ନୈରାଶ୍ୟରେ ମୁଁ କାତର ହୋଇ ଯାଇଛି । ଜନଶକ୍ତି ପ୍ରତି କେଉଁଠି ବ୍ୟଙ୍ଗ-ବିଦ୍ରୂପ ପ୍ରକାଶ କରି, କେଉଁଠି ଚେଇଁ ଉଠୁଥିବା ଆନ୍ଦୋଳନକୁ ସ୍ୱାଗତ ଜଣାଇ ମୁଁ ପାଇଛି ଆତ୍ମତୃପ୍ତି ।" (ଏ ଶବ୍ଦ ଚୟନ ଯାହା— 'ପୁନଶ୍ଚ'ର ମୁଖବନ୍ଧ) କବିର ମନ ଓ ଉଚ୍ଚାରଣ ଉପରେ ଯେ କାଳର ପ୍ରଭାବ ରହିବ, ଏକଥା ସମସ୍ତେ ସ୍ୱୀକାର କରିବେ । କିନ୍ତୁ କବି ରଘୁନାଥ ଦୀର୍ଘ ସ୍ତବ୍ଧତା ପରେ ବି ନିଜର ମୌଳିକ ଆଭିମୁଖ୍ୟ ବଜାୟ ରଖିଛନ୍ତି । 'ଅଗଷ୍ଟପନ୍ଦର' କବିତା ବଲୀରେ ଯେଉଁ ଉଚ୍ଛ୍ୱାସ ଓ ଉଦ୍ଦୀପନା ନେଇ କାବ୍ୟପୁରୁଷ ତାଙ୍କର ଗର୍ଜି ଉଠିଥିଲ, 'ପୁନଶ୍ଚ' ବେଳକୁ ତାହା ବହୁ ପରିମାଣରେ ଶାନ୍ତ, କିନ୍ତୁ ତଥାପି ତାର ଉଚ୍ଚାରଣରେ ରହିଛି ପୂର୍ବର ସେଇ ବିଶ୍ୱାସ ଓ ପ୍ରତିଶ୍ରୁତି । 'ଅଗଷ୍ଟ ପନ୍ଦର'ର ସେଇ ଆଗ୍ନେୟ ଝଲକ 'ପୁନଶ୍ଚ'ର ଅନେକ କବିତାରେ ପରିଲକ୍ଷିତ ହୁଏ, ଯାର ଉଦାହରଣ—

"ଅନ୍ୟାୟର ପ୍ରତିପକ୍ଷେ ଦୃପ୍ତ ପ୍ରତିଶୋଧ,
ଅବିଚାର ପ୍ରତିପକ୍ଷେ ପୁଞ୍ଜୀଭୂତ କ୍ରୋଧ,
ସୁଧ ମୂଳେ ହିଂସା ମାଗେ ନେବ ପରିଶୋଧ ।
କଂସ, ସାବଧାନ !"

( ଦେବବାଣୀ )

"ଯୁଗ ଯୁଗ ରୁଦ୍ଧ ବହୁ ଦୀର୍ଘଶ୍ୱାସ
କୃଷ୍ଣ ପଟଳରେ ଆଚ୍ଛାଦି ଆକାଶ
ତୋଳେ ଲକ୍ଷ ଲକ୍ଷ ଉତ୍ତାଳ ଲହରୀ
ପାରାବାରେ ସୃଜି ବିକଟ ଭଉଁରୀ,
ଦୂରେ ଘିରି ଘିରି ସବୁ କରୁ ଚୂରି··· ।"

( ଆବାହନୀ )

"ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ବାଜେ ବାଜେ / ମୃଦଙ୍ଗ ଦେବଦତ୍ତ ଶଙ୍ଖ,
ପାଞ୍ଚାଳୀର ବେଣିବନ୍ଧେ ଜଳଉଠେ / ଦୁଃଶାସ କଳଙ୍କ ।
ପଶାକାଠି କଥା କହ ।
ପ୍ରବଞ୍ଚନା କଥା କହ ।
ବିବସନ କଥା କହ ।
ବନବାସନ କଥା କହ ।"

( ଇନ୍ଦ୍ରପ୍ରସ୍ଥର : ଜନତାର )

'ପୁନଶ୍ଚ' ପର୍ଯ୍ୟାୟର କବିତାରେ କବି **ଜଟାୟୁ** ଭିତରେ ନିଜର ପ୍ରତିବିମ୍ବ ଦେଖିଛନ୍ତି । ସେଇଥି ପାଇଁ **'ଜଟାୟୁ'** ଛଦ୍ମନାମରେ ସେ ଲେଖିଛନ୍ତି କବିତା । **ଜଟାୟୁ** ପଳାୟନର ପ୍ରତୀକ ନୁହେଁ, ପ୍ରତିବାଦ ଓ ପ୍ରତିରୋଧର ପ୍ରତୀକ । ତା ପାଇଁ ଆତ୍ମସମର୍ପଣର ପ୍ରଶ୍ନ ଉଠେନା । ଦୁର୍ବିନୀତ ତାର ଆତ୍ମା, ତେଣୁ ସେ ଉଚ୍ଚାରଣ କରେଛି— "ଆପଣାର ହୀନବଳେ ମନେ ବୃଥା ଜାଗିଛି ସଂଶୟ; / ବପୁର ଶକ୍ତି ମୋ କ୍ଷୀଣ, କିନ୍ତୁ ମୋର ଆତ୍ମା ଯେ **ଅଜେୟ** ।" ( ଜଟାୟୁ ) ସତ୍ୟର ପ୍ରତିଷ୍ଠା ପାଇଁ ବିପ୍ଳବୀକୁ ଯଦି ଆତ୍ମୋତ୍ସର୍ଗ କରିବାକୁ ହୁଏ ସେଥିପାଇଁ ଶୋଚନା ନାହିଁ । ତାର ରକ୍ତବୀଜରେ ସତ୍ୟ ବିଚ୍ଛୁରିତ ହୁଏ ; ଭବିଷ୍ୟତର ଆଖି ଖୋଲା ହୋଇଯାଏ । କବି ତେଣୁ ଲେଖିଛନ୍ତି—

"ଏକକ ସେ ସେନା  
ପକ୍ଷେ ସତ୍ୟ, ପକ୍ଷେ ନ୍ୟାୟ  
ଅବିନୀତ ଜଟାୟୁର ଡେଣା ।"

( ଜଟାୟୁ )

କବି ରଘୁନାଥ ସ୍ଥିତାବସ୍ଥା ପାଖରେ ବଶମ୍ବଦ ହୋଇ ନାହାନ୍ତି. କିମ୍ବା କାବ୍ୟ ପ୍ରେରଣା ଯେତେବେଳେ ଆସିନାହିଁ, ପରୀକ୍ଷା ନିରୀକ୍ଷା ନାମରେ ଅବକ୍ଷୟର ସାହିତ୍ୟ ସୃଷ୍ଟି କରି ନାହାନ୍ତି । ନିଷ୍ପେଷିତ ଜନଗଣଙ୍କ ଦାୟରେ, ବିପ୍ଳବର ଦାୟରେ, ଯାହା ନିବିଡ଼ ଭାବରେ ଅନୁଭବ କରିଛନ୍ତି, ତାକୁ ଜୀବନର ବିଭିନ୍ନ ପର୍ଯ୍ୟାୟରେ ନିଷ୍କପଟ ଓ ନିର୍ଭୀକ ଭାବରେ ପ୍ରକାଶ କରିଛନ୍ତି ନିଜ କାବ୍ୟକୃତିରେ । କ୍ରାନ୍ତିର କବିତା ପାଇଁ ନିବେଦିତ ତାଙ୍କର ସମସ୍ତ କାବ୍ୟଶକ୍ତି ଓ ପ୍ରତିଭା । ତାହାହିଁ କବିଭାବରେ ତାଙ୍କର ଚରମ ଅଙ୍ଗୀକାର ।



# ନୀରବ ସାଧକ ଓ ସଂଗଠକ
# ସାମ୍ୟବାଦୀ କବି ରଘୁନାଥ ଦାସ

ଡକ୍ଟର ବାସୁଦେବ ସାହୁ

କବି ରଘୁନାଥ ଦାସ ଓଡ଼ିଆ ସାହିତ୍ୟରେ ମାର୍କସବାଦୀ ଚେତନାର ଅନ୍ୟତମ ପରିପୂରକ । ଏହି ଅସାଧାରଣ ବାମପନ୍ଥୀ ସାରସ୍ୱତ ପ୍ରତିଭାର ଆଗ୍ନେୟ ଲେଖନୀ ୧୯୫୩ ସାଲରୁ ୧୯୭୨ ପର୍ଯ୍ୟନ୍ତ ଥିଲା ସ୍ତବ୍ଧ ।

ସେ ଥିଲେ ଓଡ଼ିଆ ସାହିତ୍ୟ ଆକାଶରେ ଏକ ଉଜ୍ଜ୍ୱଳ ରକ୍ତଜ୍ୟୋତିଷ୍କ । ରଘୁବାବୁଙ୍କ କବିତାଗୁଡ଼ିକ ନିଜ ନାମରେ ବା ଛଦ୍ମ ନାମରେ 'ମୁକ୍ତିଯୁଦ୍ଧ', 'ସନ୍ଧାନ' ଆଦିରେ ପ୍ରକାଶିତ ହେଉଥିଲା । କବି ରବୀନ୍ଦ୍ରନାଥ ସିଂହ ନିଜକୁ ରଘୁବାବୁଙ୍କ ଭଳି 'ଅଦୃଶ୍ୟ ଲଲ ସାରସ୍ୱତ ଜ୍ୟୋତିଷ୍କଟିର ନାକ୍ଷତ୍ରିକ ଦାୟାଦ' ବୋଲି ଗର୍ବର ସହ ଭାବନ୍ତି ଏବଂ କହନ୍ତି 'ତାଙ୍କ ସହ ସାକ୍ଷାତ୍ ହୋଇ ନଥିଲେ ରଘୁବାବୁଙ୍କ ପ୍ରତିଭାର ସ୍ତବ୍ଧତା ପରେ ପରେ ଓଡ଼ିଆ ସାହିତ୍ୟରେ ମାର୍କସୀୟ ଚେତନାର ଧାରା ଖଣ୍ଡିତ ହୋଇ ହରାଇ ଥାନ୍ତା ତାର ଧାରାବାହିକତା ।'

କବି ରଘୁନାଥ ଦାସ ୧୯୨୦ରେ ଜନ୍ମଗ୍ରହଣ କରି ୧୯୮୪ରେ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ଲେଖନୀ କିନ୍ତୁ ମନ୍ଥର ହୋଇ ଯାଇଥିଲା ୧୯୫୩ରୁ । ସେ ଥିଲେ ଏକାଧାରରେ ଜଣେ ଶକ୍ତିଶାଳୀ କବି, ଗାଳ୍ପିକ, ସମାଲୋଚକ, ନାଟ୍ୟକାର ଓ ପ୍ରାବନ୍ଧିକ । ଏକ ବଳିଷ୍ଠ ବୈପ୍ଳବିକ ମାର୍କସୀୟ ଚିନ୍ତାଧାରାର ବାହକ ଥିଲେ ସେ । ତାଙ୍କ ପ୍ରଣୀତ 'ରୁଷିଆର ରୂପକଥା', 'ରାଜନୀତି ଆଜି ଆମେ' (୧୯୪୮), 'ସଭ୍ୟତାର ଆଗେ' (୧୯୫୨), 'ପ୍ରେମର ନିକଷ' (୧୯୪୮), 'ଅଗଷ୍ଟ ପନ୍ଦର' (୧୯୪୯) ଗ୍ରନ୍ଥଗୁଡ଼ିକ ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ । କବି ରବୀନ୍ଦ୍ରନାଥ ସିଂହ ୧୯୭୩ରେ ତାଙ୍କ କବିତାଗୁଡ଼ିକର ଏକ ସଂକଳନ 'ଅଗଷ୍ଟ ପନ୍ଦର ଏବଂ ଅନ୍ୟାନ୍ୟ କବିତା' ପ୍ରକାଶ କରିବା ଏବଂ ସେହିବର୍ଷ 'ଝଙ୍କାର'ରେ 'ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦୀ ଚେତନାର ଅନ୍ୟ ଏକ ମୋଡ଼ ରଘୁନାଥ ଦାସ' ଶୀର୍ଷକ ପ୍ରବନ୍ଧ ଲେଖି ଦାସଙ୍କ ମୌଳିକତା ଓ ପ୍ରଗତିବାଦୀ ଚିନ୍ତାଧାରା ଲୋକଲୋଚନକୁ ଆଣିଛନ୍ତି ।

୧୯୬୮ ମସିହା 'ସହକାର'ରେ ପ୍ରକାଶିତ ଦାସଙ୍କ 'ମୃତ୍ୟୁ ଗୋ ତୁମେ ସେତେବେଳେ କାହିଁ ଆସନ'ରେ ଆମେ ଏକ ଅପୂର୍ବ ଛନ୍ଦବିନ୍ୟାସ ଓ ଗଭୀର ମର୍ମସ୍ପର୍ଶୀ ଚିତ୍ର ଦେଖିବାକୁ ପାଉ :

'ଧାନ କାଟୁ କାଟୁ ଗାଇଦିଏ ପଦେ ଭୁଲି ଜମିଦାର ସାହୁକୁ
କମିଷକ ଲଗି ପାଶୋର ଯାଏ ସେ ଜୀବନର ଶତ ବନ୍ଧୁକୁ
ଅନ୍ନପୂର୍ଣ୍ଣା ଘରଣୀ / ମୃତ୍ୟୁ ଗୋ ତୁମେ ସେତେବେଳେ କାହିଁ ଆସନ ?"

ସୃଷ୍ଟି-ସୌନ୍ଦର୍ଯ୍ୟର ଉଲ୍ଲାସରେ ଗଭୀର ଗୃହୀର ଅଦ୍ଭୁତ ସତ୍ତ୍ୱବଳୀନ ଚିନ୍ତା ।

ପୁଞ୍ଜିବାଦ ପରେ ସାମ୍ରାଜ୍ୟବାଦ । ନିଜ ଦେଶରେ ଧନୀ ଶ୍ରେଣୀର ଦର୍ବ୍ୟସ୍ତ ଶ୍ରେଣୀ ଉପରେ ଅତ୍ୟାଚାର ପରେ ଅତ୍ୟାଚାର ବ୍ୟାପିଯାଏ ଦେଶରୁ ଦେଶାନ୍ତରକୁ । ସମୃଦ୍ଧିଶାଳୀ ପୁଞ୍ଜିବାଦୀ ରାଷ୍ଟ୍ର ଧ୍ୱଂସର ତାଣ୍ଡବଲୀଳା ଚଳାଏ ଅନ୍ୟ ଦେଶ ଉପରେ ଆକ୍ରମଣ କରି । କେଲେ କୋରିଆ, କେଲେ ଭିଏତନାମ, ଧ୍ୱଂସସ୍ତୂପ ଭିତରୁ ଖୋଜି ବୁଲେ ସନ୍ତାନହରା ପାଗଳିନୀ ମାଆ ତା'ର ଶିଶୁ ସନ୍ତାନକୁ । ପାଏ କି ? କବି ଦାସ ସାନ୍ତ୍ୱନା ଦିଅନ୍ତି । ନାନା, ଏକ ଅବ୍ୟର୍ଥ ଅପ୍ରିୟ ସତ୍ୟ ଜଣେଇ ଦିଅନ୍ତି —

"ମା ତୁମେ କାନ୍ଦନା,
ମୁଁ ମରିନି, ମୁଁ ବଞ୍ଚିଛି. ମିଛ ନୁହେଁ ଏ ନୁହେଁ ଛଳନା ।
ମୃତବତ୍ସା ହେ ଜନନୀ, ମୁଁ ବଞ୍ଚିଛି ତୁମରି ଗର୍ଭରେ,
ମୁଁ ବଞ୍ଚିଛି ମୋ ଦେଶର କୋଟି ପ୍ରାଣେ ଘରେ ଘରେ ଘରେ ।
ମୋତେ ତ ଭେଟିବ ତୁମେ ଗ୍ରାମେ ଗ୍ରାମେ ପ୍ରତି ପଥପ୍ରାନ୍ତେ,
ଶ୍ୟାମ ଉପତ୍ୟକା ମଧ୍ୟେ ଗିରିଶୃଙ୍ଗେ ଅତଳ ପ୍ରଶାନ୍ତେ ।"
( ମୃତ୍ୟୁହୀନ )

ଅନ୍ୟ ଏକ କବିତା 'କୋରିଆ' (୧୯୫୧)ରେ ମୃତ୍ୟୁଞ୍ଜୟୀ-ରକ୍ତବୀର୍ଯ୍ୟ-ସଂଗ୍ରାମୀ କୋରିଆ ଓ ବ୍ୟସ୍ତ ବିବ୍ରତ ଆମେରିକାର ଚିତ୍ର ମର୍ମସ୍ପର୍ଶୀ ଭାଷାରେ ପ୍ରକାଶ ପାଇଛି—

"ଉର୍ଦ୍ଧ୍ୱପିତ ଶିଖା ସମ ତେଜଉଠେ ଦକ୍ଷିଣେ ଉତ୍ତରେ...
.. ଅଦ୍ଭୁତ ପ୍ରାଣ / ଆଜି ପୁଣି ଜାଗିଉଠେ, କାଲି ଯା'କୁ କଲି ମୁଁ ଶ୍ମଶାନ ।"

ସ୍ୱାଧୀନତା ସଂଗ୍ରାମର ଗୌରବମୟ ଇତିହାସ ମନେପକାଇ କବି ଗର୍ବ ଅନୁଭବ କରୁଥିଲେ ହେଁ ସଚେତନ ହୋଇ ସତର୍କବାଣୀ ଶୁଣାଇଛନ୍ତି—

"ଯାତ୍ରୀ ସାବଧାନ / ତୋର ଏହି ଯାତ୍ରା ପଥେ ନୁହେଁ ଏଯେ
ଅନ୍ତିମ ସୋପାନ ।" ( ଅଗଷ୍ଟ ପନ୍ଦର ୧୯୪୭ )

୧୯୪୮ ଅଗଷ୍ଟ ପନ୍ଦର ବେଳକୁ ଅର୍ଥାତ୍ ସ୍ୱାଧୀନତା ପ୍ରାପ୍ତିର ଠିକ୍ ବର୍ଷକ ପରେ କବି ସନ୍ଦିହାନ ହୋଇ ନୈରାଶ୍ୟର ସ୍ୱର ଉନ୍ମୋଚନ କରିଛନ୍ତି 'ଅଲ୍ଟାମ୍ୟୁଟ' କବିତାରେ—

"ନୁହେଁ ନୁହେଁ ଏହା କେବେ ମଣିଷର ଶିଶୁ ଆସ୍ଥାନ
କେଉଁ ରାକ୍ଷସ ଔରସେ ତାଙ୍କ ମାର ଜାରଜ ସନ୍ତାନ
ଅଲ୍ଟାମ୍ୟୁଟ ପ୍ରାଣେ ତାର ଲେଉଅଛୁ କରିବ ଦୁଃଚେଷ୍ଟା
ଅଭିଶପ୍ତ ଯେତେ ଅପଚେଷ୍ଟା ।"

ସ୍ୱାଧୀନ ଭାରତ ଶାସନରେ କ୍ଷୁବ୍ଧ କବିଙ୍କ ଉକ୍ତ କଟୁ ହେଲେ ହେଁ ସାଧାରଣ ମଣିଷର ମର୍ମବ୍ୟଥାର ଏହା ଖୁବ୍ କଠୋର ଶାଣିତ ଅଭିବ୍ୟକ୍ତି ।

କବି ଦାସ ଅବିଭକ୍ତ କମ୍ୟୁନିଷ୍ଟପାର୍ଟି ସହିତ ପ୍ରତ୍ୟକ୍ଷ ଭାବରେ ଦୀର୍ଘକାଳ ଧରି ନିଜକୁ ସାମିଲ କରିଥିଲେ । ଓଡ଼ିଶାର ସୋସାଲିଷ୍ଟ ୟୁନିଟ୍ ସେଣ୍ଟର (SUCI) ଶାଖା ଖୋଲି ତହିଁର ମୁଖ୍ୟ ଭାବରେ ସଂଗଠନ ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ତାର ମୁଖପତ୍ର 'ସଂହିତା' ପାକ୍ଷିକ ପତ୍ରିକାର ମୁଖ୍ୟ ସଂପାଦକ ଥିଲେ । ତେଣୁ ବିଶ୍ୱାସ ହୁଏ ତାଙ୍କର ଲେଖା ଓଡ଼ିଶାର ବିପ୍ଳବୀମାନଙ୍କୁ ଯଥେଷ୍ଟ ଚେତନା ଓ ଖୋରାକ ଯୋଗାଇଥିଲା । କବି ଦାସ ଥିଲେ ଜଣେ ମାର୍କସ୍‌ବାଦୀ ପ୍ରାଜ୍ଞ ସଚେତନ ସ୍ରଷ୍ଟା । ସତର୍କବାଣୀ ଶୁଣାଇ ସେ ଲେଖିଥିଲେ—

"ଭାରତର ସିଂହାସନେ ଲାଳାୟିତ କଂସର ଦାୟାଦ
ଛଦ୍ମବେଶୀ ଲକ୍ଷଭାର ପଦ୍ମଲାଗି କରୁଛି ବିବାଦ ।" (ଅଗଷ୍ଟ ପନ୍ଦର)

କବି ଆଶା କରିଛନ୍ତି ଦୁଷ୍ଟ ଅସୁର ନାଶିବାକୁ ଜନ୍ମ ନେବେ କୃଷ୍ଣ ଏବଂ 'କୃଷ୍ଣ ମଧ୍ୟେ ଲଭିବୁ ରୁ ଆଲୋକର ଏକାନ୍ତ ସନ୍ଧାନ ।" କେତେ ଗଭୀର ସମ୍ବେଦନାପୂର୍ଣ୍ଣ ବ୍ୟଥା-ଜର୍ଜ୍ଜରିତ ହୃଦୟର କଥା ଏ—

"ମାଂସ ତ ଯାଇଛି ଝଡ଼ି, ଅଛି ହାଡ଼, କେବଳ ହିଁ ହାଡ଼ ..
ହାଡ଼ର ଶାସନ ଲାଗି ଗୁଳି ଗ୍ୟାସ ଜେଲ ଲଠିମାଡ଼ ।"
(ଅଗଷ୍ଟ ପନ୍ଦର, ୧୯୪୯)

ଏହି କବିଙ୍କର ମୌନବ୍ରତ ୧୯୫୩ରୁ ୧୯୭୨ ପର୍ଯ୍ୟନ୍ତ ଥିଲା ନିରବଚ୍ଛିନ୍ନ । ୧୯୭୨ରୁ ୧୯୮୨ ମଧ୍ୟରେ ଲିଖିତ କବିତାଗୁଡ଼ିକ ସନ୍ନିବିଷ୍ଟ ହୋଇଛି 'ପୁନଶ୍ଚ' (୧୯୮୩) ପୁସ୍ତକରେ । ସେଗୁଡ଼ିକର ବିଚାର ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ ।

ଲେନିନ୍ କହିଥିଲେ 'ସାହିତ୍ୟ ଜନସାଧାରଣଙ୍କ ସେବା କରିବା ଉଚିତ ଏବଂ ଲୋକଙ୍କ ବୋଧଗମ୍ୟ ହେବା ଉଚିତ ।' ସ୍ୱାଧୀନତା ପୂର୍ବରୁ ଉଦ୍‌ବେଳିତ ଜନସାଧାରଣଙ୍କୁ

ଆନ୍ଦୋଳନର ଲକ୍ଷ୍ୟ ପଥରେ ଅବିଚଳିତ ଭାବରେ ଆଗେଇ ନେବାକୁ ପ୍ରେରଣା ଦେବା ପାଇଁ, ଏବଂ ସେମାନଙ୍କ ମାନସ ପଟରେ ଏକ ନୂତନ ସମାଜର ସୁସ୍ପଷ୍ଟ ଚିତ୍ର ଆଙ୍କି ଦେବା ପାଇଁ ଯେଉଁ କେତେଜଣ କୃତୀସ୍ରଷ୍ଟା ଲେଖନୀ ଚାଳନା କରିଥିଲେ ସେମାନଙ୍କ ମଧ୍ୟରେ ସଚି ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ ସମେତ ମାର୍କସବାଦୀ କବି ରଘୁନାଥ ଦାସ ଆମ୍ଭ ଦୃଷ୍ଟିରେ ବିଶେଷ ଭାବରେ ବନ୍ଦନୀୟ ।

ନିରବଚ୍ଛିନ୍ନ ଭାବେ ୧୯୫୩ରୁ ୧୯୭୨ ପର୍ଯ୍ୟନ୍ତ ନୀରବ ରହି କବି ରଘୁନାଥ ଦାସ ପୁନର୍ବାର ଲେଖନୀ ଚାଳନା କରିଥିଲେ ୧୯୮୨ ପର୍ଯ୍ୟନ୍ତ । ୧୯୭୨ରୁ ୧୯୮୨ ମଧ୍ୟରେ ରଚିତ କବିତା ଗୁଡ଼ିକ ସନ୍ନିବିଷ୍ଟ ହୋଇଛି 'ପୁନଶ୍ଚ' ପୁସ୍ତକରେ । ଏହି କବିତାରେ 'କବିଙ୍କର ଦୃଷ୍ଟିକୋଣ ନିଶ୍ଚିତଭାବେ କେଉଁଠି ବୈଜ୍ଞାନିକ ସାମ୍ୟବାଦର ବିଚାରଧାରା ଉପରେ ପର୍ଯ୍ୟବସିତ ତ କେଉଁଠି ତାହା ନିଶ୍ଚିତ ଭାବେ ଆଧ୍ୟାତ୍ମିକବାଦ ଉପରେ ପ୍ରତିଷ୍ଠିତ । ଏହି ପରସ୍ପର ବିରୋଧୀ ଦର୍ଶନ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବା ଦୁରୂହ ହେଲେ ବି କବି ତାହା କରିବାକୁ ସମର୍ଥ ହୋଇଛନ୍ତି, କାରଣ କବି ବସ୍ତୁବାଦର କ୍ଷୁଦ୍ର ପରିସର ମଧ୍ୟରେ ନିଜକୁ ଆବଦ୍ଧ ରଖିନାହାନ୍ତି । ସମ୍ପ୍ରସାରିତ ବସ୍ତୁବାଦୀ ଭିତ୍ତିଭୂମିରୁ ନିଜକୁ ଉର୍ଦ୍ଧ୍ୱାୟିତ କରି ସେ ସମଗ୍ର ସୃଷ୍ଟି ପ୍ରକ୍ରିୟାର ସମୀକ୍ଷା କରିଛନ୍ତି ।'* କବି ପ୍ରୌଢ଼ ବୟସରେ ଅନୁଭବ କରିଛନ୍ତି ଯେ ସେ "ସଙ୍କୀର୍ଣ୍ଣ ପରିସୀମା ମଧ୍ୟରେ ବନ୍ଦୀ ।" ଏହି ସଚେତନତା ତାଙ୍କୁ ମୁକ୍ତି ପାଇଁ କରିଛି ବ୍ୟାକୁଳ । ତେଣୁ ସେ ଆଶ୍ରୟ ନେଇଛନ୍ତି କବିତା ସୃଷ୍ଟିରେ । କାରଣ "କାବ୍ୟ ଜରିଆରେ ବ୍ୟକ୍ତି ଉପଲବ୍‌ଧି କରେ ଅନନ୍ତ ଜୀବନର ସମଗ୍ରତାକୁ ଓ ତାର ନିକ୍ଷଣ ଛନ୍ଦକୁ ।" କବି କହିଛନ୍ତି "ଆପଣାର ବନ୍ଧନ ବିଷୟରେ ସେ (ବ୍ୟକ୍ତି) ଯେତେବେଳେ ସଚେତନ ହୁଏ ସେ ଲୋଡ଼େ ମୁକ୍ତି । ଅସୀମର ଅନ୍ୱେଷଣ ଲାଗି ତାର ଆକାଙ୍‌କ୍ଷା, ନଶ୍ୱର ଶରୀରରେ ସମସ୍ତ ଅନୁଭୂତି ଲାଗି ତାର ଲିପ୍‌ସା । ମର ଦେହରେ ଅମୃତ ପିପାସା ଯେତେବେଳେ ଜାଗ୍ରତ ହୁଏ ସେତେବେଳେ ସେ ଆପଣାର କ୍ଷୁଦ୍ର ପରିସର ଭେଦ କରି ଲୋଡ଼େ ଅନନ୍ତର ଆସ୍ୱାଦ ।"※ ଏହି ଆସ୍ୱାଦ ପାଇଁ ବ୍ୟଗ୍ରତା ଆତ୍ମପ୍ରକାଶ କରିଛି "ପୁନଶ୍ଚ" ଗ୍ରନ୍ଥସ୍ଥ ଅନେକ କବିତାରେ ।

ଦୀର୍ଘ କୋଡ଼ିଏ ବର୍ଷର ସ୍ୱେଚ୍ଛାକୃତ ନୀରବତାର କାରଣ ଦର୍ଶାଇ କବି ଲେଖିଛନ୍ତି "ମୁଁ ନିଶ୍ଚିତଭାବେ ଅନୁଭବ କଲି ଜନଗଣଙ୍କର କର୍ଣ୍ଣଧାରମାନେ ଗଣମୁକ୍ତି ଆଭିମୁଖ୍ୟ ପ୍ରତି ଅନୁରକ୍ତ ନୁହନ୍ତି, ଜନସାଧାରଣଙ୍କୁ ଅଶ୍ରାବ୍ୟ ଅସୁବିଧା କଥା କହି, ମନ କିଣି ମିଥ୍ୟା ପ୍ରତିଶ୍ରୁତି ଶୁଣାଇ ସେମାନଙ୍କୁ ପ୍ରତାରିତ କରି ସଭିଏଁ ଆପଣାର ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି

* ରଞ୍ଜିତା ଦାସ – 'ହରିବାଣୀ' — ପୁନଶ୍ଚ, ୧୯୮୩ ପୃ-୨

※ ରଘୁନାଥ ଦାସ "ସ୍ୱେ ଚରି ଚନ୍ଦ୍ରଇ ଯାହା" — ପୁନଶ୍ଚ, ୧୯୮୩

ଲାଗି ଅଧିକ ଯତ୍ନବାନ । ସେ ପରଶ୍ରେଣୀରେ ବିପ୍ଳବୀ କବିତା ଜନଗଣଙ୍କ ହୃଦ୍ଧ ଦ୍ଵାରରେ ହଣଆର ହୋଇଥାନ୍ତା ସିନା । ମୁଁ ସେ ପାପରେ ଭାଗୀଦାର ହେବାକୁ ଚାହିଁ ନଥିଲି ।" ୧୯୫୭ ଠାରୁ ଏ ଯାବତ୍ ସମାଜବାଦର ଦୋହାଇ ଦେଇ ପୁଞ୍ଜିବାଦୀ ଅର୍ଥନୀତିକୁ ଯେପରି ଦୃଢ଼ୀଭୂତ କରାଗଲା, ଏବଂ ଜନତାର ଦୃଷ୍ଟିବନ୍ଧ ଭାବରେ କଂଗ୍ରେସ ତଥା ଅଣକଂଗ୍ରେସ (ସାମ୍ୟବାଦୀ ଅନ୍ତର୍ଭୁକ୍ତ) ଦଳର ଅଧିକାଂଶ ନେତା ଯେପରି ଭାବେ ଛଳନାର ଆଶ୍ରୟ ନେଇ ବ୍ୟକ୍ତିଗତ ସ୍ଵାର୍ଥ ସାଧନରେ ବ୍ରତୀ ହେଲେ, ଏଥିରେ କବି ନିଜକୁ ଅସହାୟ ଅସମର୍ଥ ମଣି ନୀରବ ରହିବା ଶ୍ରେୟସ୍କର ମନେକରିଛନ୍ତି । କିନ୍ତୁ ଦୀନଦୁର୍ଗତଙ୍କ ପାଇଁ ଅନ୍ତରରେ ପୁଞ୍ଜିଭୂତ ଥିବା ସହାନୁଭୂତି ଜୀବନର ସାଯାହ୍ନରେ କାବ୍ୟ ଆକାରରେ ଅଭିପ୍ରକାଶ କରିଛି ।

'ପୁନଶ୍ଚ' ସନ୍ନିବିଷ୍ଟ କବିତାରେ "ପୂର୍ବ କବିତାର ଶୌର୍ଯ୍ୟ ନାହିଁ, ଉଷ୍ମତା ନାହିଁ, ଉଦ୍ଦୀପନା ନାହିଁ" ପରନ୍ତୁ ନୈରାଶ୍ୟରେ କବି କାତର । ଜନଶ୍ରୁତି ପ୍ରତି ବ୍ୟଙ୍ଗ ବିଦ୍ରୂପ ପ୍ରକାଶ କରି ତେଇଁ ଉଠୁଥିବା ଆନ୍ଦୋଳନକୁ ସ୍ଵାଗତ କରି ସେ ଆତ୍ମତୃପ୍ତି ଲାଭ କରିଛନ୍ତି । ତଥାପି ଏହି ବ୍ୟଙ୍ଗ, ଏହି ସହାନୁଭୂତି କାବ୍ୟିକ ଶବ୍ଦ ସୌନ୍ଦର୍ଯ୍ୟରେ ଦୀପ୍ତିମାନ, ସ୍ଵଚ୍ଛ ଆବେଗର ପ୍ରବହମାନତାରେ ମୁଗ୍ଧକର ।

ଦେଶରେ ସାମ୍ୟବାଦ ପ୍ରତିଷ୍ଠାର ସ୍ଵପ୍ନ ବ୍ୟର୍ଥ ହୋଇ ଆସୁଥିବା ଦେଖି କବି ଗଭୀର ଅନ୍ତର୍ବେଦନା ଅନୁଭବ କରିଛନ୍ତି । ଅବଶୋଷର ସ୍ଵର ତୋଳି ଗାଇଛନ୍ତି—

"ଜନ୍ମ ହେଲା ପଞ୍ଚବଟୀ ?
ବ୍ୟର୍ଥ ସିଦ୍ଧି
ଏତେ ଅଶ୍ରୁପାତ ?" (କଟାଯୁ)

ତଥାପି ଜଟାୟୁ ସାଜି ପୁଞ୍ଜିବାଦର ରାବଣ ସନ୍ନିଡ ମୁକ୍ତ କରିବାକୁ ଚାହିଁଛନ୍ତି ଡେନାପକ୍ଷ ଛିଣ୍ଡିଗଲା ପର୍ଯ୍ୟନ୍ତ । କାରଣ ତାଙ୍କର ହୃଦ୍‌ବୋଧ ହୋଇଛି—

"ଡେନାପକ୍ଷ ଛିଣ୍ଡିଗଲା,
ଛିଣ୍ଡିଯାଉ
ନାହିଁ ମୋ ଶୋଚନା ;
ମୁଁ ରହିବି ଯୁଗେ ଯୁଗେ ମୁମୁକ୍ଷୁର
ଜ୍ଵଳନ୍ତ ପ୍ରେରଣା ।"

ଠିକ୍ ଲୋକନାୟକ ଜୟପ୍ରକାଶ, ୧୯୭୫ରେ 'କାରାଗୃହର କବିତା'ରେ ଏହି ପ୍ରକାରର ଆତ୍ମବିଶ୍ୱାସର ସ୍ୱର ତୋଳିଥିଲେ —

'ଏଇ ମୋର ବିଫଳ ଜୀବନ, ଭରିଯିବ ସହସ୍ର ଅଞ୍ଜଳିରେ
ଯଦି ମୋର ସମମନା ଯୁବଜନ ପାଇଁ
କଣ୍ଟକିତ ସଙ୍କୀର୍ଣ୍ଣ ସରଣୀ
ପରିଶେଷେ ମୁକ୍ତ ହେବ, ହେବ ବିଘ୍ନଶୂନ୍ୟ ।'
('କାରାଗୃହର କବିତା', ଅନୁବାଦ : ରବି ମାଝୀ)

କବି ପ୍ରଚଣ୍ଡ ଆଶାବାଦୀ, ପ୍ରଚଳିତ ସମାଜ ବ୍ୟବସ୍ଥାର ଈପ୍ସିତ ପରିବର୍ତ୍ତନରେ ସେ ବିଶ୍ୱାସୀ । କାରଣ 'ସ୍ଥାଣୁ ନୁହେଁ ଇତିହାସ'—

'ଲୁଣ୍ଠନର ପିରାମିଡ୍
ତଳେ ନାଚେ ପ୍ରେତାୟିତ
କଳା କଳା ଗୁଚ୍ଛ,
ଏହା କିନ୍ତୁ ନୁହେଁ 'ଚିରସ୍ଥାୟୀ' ।
('ଲେନିନ' – ପୁନଶ୍ଚ)

ପ୍ରଚଳିତ ଶାସନର ସ୍ୱରୂପ କରି କବି ଲେଖିଛନ୍ତି —

ବସିଛୁ ଅନେକ ସଭା ବହୁତ ସମିତି
କିଏ ତୁମ ବନ୍ଧୁ, କୁହ, ବାଘ ଅବା ଭାଲୁ,
ସମସ୍ୟାର ଗଛ ତଳେ ଆମେ ଗଡ଼ିଗଲୁ ।' ('ଘଣ୍ଟା' – ପୁନଶ୍ଚ)

ଏହା ଦଳୀୟ ରାଜନୀତିର ପ୍ରତାରଣାପୂର୍ଣ୍ଣ ପ୍ରତିଶ୍ରୁତି ପ୍ରତି ଏକ ତୀକ୍ଷ୍ଣ ଶ୍ଳେଷ । ଏହି ଶାସନଟି 'ମୁଣ୍ଡର ତାଜ ସ୍ୱଜନର ମଧୁଛନ୍ଦ - ମାରଣର ନାଟକୀୟ ଲୀଳା ଯେତେ ଗର୍ଭେ ଅଛି ଭରି' (ପଦ୍ମତୋଳା) । କାଳଗର୍ଭରେ ଜନ୍ମନେବ ଦୁର୍ନୀତିର ଧ୍ୱଂସକାରୀ ଶକ୍ତି । ଦେବକାନ୍ତ ପ୍ରକୃତିର ପ୍ରତିକୃତି, ସେ ଯୁଗେ ଯୁଗେ, ଲେଖିଥିଲେ 'ନର୍ତ୍ତକି କବିତା ଆଗାମୀର' ('ଶ୍ରୀମଦ୍ ଭାଗବତ' – ପୁନଶ୍ଚ)

ସମାଜର ବିବର୍ତ୍ତନଧାରାରେ ବାଦ, ବିସମ୍ବାଦ, ନ୍ୟାୟ, ଅନ୍ୟାୟ, ଛଳନା, ପ୍ରତାରଣା, ହତ୍ୟା ନିଷ୍ଠୁରତା, ସୁଯୋଗ, ଦୁର୍ଯୋଗ, ଉତ୍ଥାନ, ପତନ ଲାଗି ରହିଛି । ଏହି

ବିବର୍ତ୍ତନର ଶେଷ ପରିଣତି ମଣିଷର ମନରେ 'ଅତୀନ୍ଦ୍ରିୟ ଦିବ୍ୟ ଆଲୋକ' ଦେବ, ଏହା ତାଙ୍କର ଦୃଢ଼ ବିଶ୍ୱାସ । ସେ ଲେଖିଛନ୍ତି—

'ବିକାଶର ଧାରା କେବେ ହଜାଇନି ସୃଷ୍ଟି ମହୋତ୍ସବ
ମରଲୋକେ ଅମରତ୍ୱ, ନର ଦେହେ ଦେବତ୍ୱ ସମ୍ଭବ'

ତେଣୁ ସେ ଆବେଗଭରା କଣ୍ଠରେ ବିପଥଗାମୀ ମଣିଷକୁ ଆବେଦନ କରିଛନ୍ତି—

'ଜୀବନର ସୀମା ଆଙ୍କିଦିଅ କାଳାତୀତ ମହାକାଳେ
ନିଜ ସତ୍ତା ଯୋଗକର ଅବିକଳ୍ପ ଅନନ୍ତ ସତ୍ତାରେ
ମହାକାଶ ପ୍ରତିଛବି ଫୁଟିଉଠୁ ଶିଶିର ବିନ୍ଦୁରେ
ବନ୍ଧନର ବନ୍ଧ୍ୟାଲତା ଗର୍ଭବତୀ ମୁକ୍ତିର ମୁକୁଳେ'

ଦ୍ୱୈତ ଅଦ୍ୱୈତର ଚମତ୍କାର ସମନ୍ୱୟ । ବ୍ୟକ୍ତି ଓ ସମଷ୍ଟିର ମନୋଜ୍ଞ ସମାବେଶ । ଶିଶିରବିନ୍ଦୁରେ ମହାକାଶ, ବ୍ୟକ୍ତି ସ୍ୱାର୍ଥର ବନ୍ଧନରେ ମୁକ୍ତିର କୁସୁମ ! ଅତି କାବ୍ୟିକ, ଅତି ମାର୍ମିକ ।

ଜୀବନ ସାମ୍ନାରେ ଆଧ୍ୟାତ୍ମିକ ଭାବର ପ୍ରଭାବ ସ୍ୱାଭାବିକ । କିନ୍ତୁ ଏହି ଭାବନା କବିଙ୍କ ଠାରେ ସମ୍ପୂର୍ଣ୍ଣସର୍ବସ୍ୱ ହୋଇନାହିଁ । ବୈଦିକ ଅଦ୍ୱୈତ୍ୟଭାବ 'ମୋ ମଧ୍ୟେ ବିରାଜେ ସେହି ଯେ ନିର୍ବିକାର' 'ସୋଽହଂ' କବିତାରେ ରୂପାୟିତ ହୋଇଥିବା ସ୍ଥଳେ 'ମୃଗୁଣୀ ସ୍ତୁତି' କବିତାରେ ହରିଣୀ-ଜନତାକୁ ଉଦ୍‌ବୋଧନ ଦେଇ କହିଛନ୍ତି—

'ଆତ୍ମାର ନିର୍ଦ୍ଦେଶ ମାଗ,
ଜାଗରୁ ଜନତା ଜାଗ ।'

କାରଣ ବୋଧହୁଏ, ଆତ୍ମା ଭିତରେ ପରମାତ୍ମା ନିହିତ ।

କବିଙ୍କ ଲେଖନୀରୁ ବେଳେବେଳେ ଝରିପଡ଼ିଛି ବିଦ୍ରୁପର ତୀକ୍ଷ୍ଣ ଶର । ଭାରତର ସମ୍ବିଧାନକୁ ପରିହାସ କରି ବର୍ଣ୍ଣନା କରିଛନ୍ତି—

'ବ୍ରିଟେନରୁ ବୀଜ ଆଣି ଆମେରିକା ସାର
ତହିଁରୁ ଫୁଟିଲା ଛତୁ ମୌଳିକାଧିକାର' (ଭାରତ ବନ୍ଦନା)

ନକ୍ସାଲପନ୍ଥୀ ନେତା କମ୍ରେଡ ନାଗଭୂଷଣଙ୍କୁ ପରିଚୟ ଦେଇ କବି ଅତି ଭାବଗମ୍ଭୀର ପଦ ଲେଖିଛନ୍ତି—

'ସେ ରହିଛି ଗୁଳିଆଘରେ ଅଳିଆ ତଳେତଳେ
କାଳିଆ ଦେହ ମସିଆ ଲୁଗା ଜନତା ମେଳେମେଳେ
ନାଗଭୂଷଣ ଜୁହେଁରେ କେହି ଆମର ମୂକ ଭାଷା
ତା ଠାରେ ଫୁଟେ ଦଳିତ ପ୍ରାଣ ଦଳିତ ଜନ ଆଶା ।'

'ଓଁ ତତ୍ ସତ୍' କବିତାରେ କବି ଜୀବନର ବର୍ଣ୍ଣିଳ ଗତି ବର୍ଣ୍ଣନା କରିଛନ୍ତି 'ହୃଦୟ ଝର୍ଣୀ ଘାଟରେ, ନିର୍ଝରରୁ ବନ୍ୟା ରୂପ ନେଇ 'ବିଭବର ଧୂଳି ଘରେ ଉନ୍ମାଦିନୀ' ହୋଇ ଜୀବନ ବହିଯାଉଛି କେଉଁଠିକି ? କବି ତାର ଉତ୍ତର ଦେଇଛନ୍ତି—

'ପ୍ରାଣର ଅତଳ ଗର୍ଭେ ଶୁଭେ କାର ଗମ୍ଭୀର ଆହ୍ୱାନ
ଶୀତଳ ହିଲ୍ଲୋଳେ ଦୋଳେ ଅପରୂପ ପ୍ରଣୟର ଗାନ ।'

'ସାଇ ସାଧା ବାଉଳୀ' ଭଳି ତାଙ୍କର ପ୍ରାଣ 'ବଂଶୀ ସ୍ୱନେ ପଡ଼ିଛି ତ ଉଛୁଳି' । ବାସ୍ତବବାଦୀ କବି ଜୀବନର ଶେଷ ପ୍ରାନ୍ତରେ ଦେହରୁ ଦେହାତୀତର ସ୍ପର୍ଶାନୁଭବ ପାଇଛନ୍ତି । 'ଜନ୍ମମୃତ୍ୟୁର ସୀମାରେଖା' ମଧ୍ୟରେ କବି ଅବସ୍ଥିତ ଏବଂ 'ଆକାଶର ଚିରସ୍ରୋତା ମନ୍ଦାକିନୀ ଧାରା ମଧ୍ୟେ ବିନ୍ଦୁ ମୁଁ ଅମୃତ' ( ଜ୍ଞାନାଞ୍ଜନ ) ।

କବି ମାନବିକ ଅଧିକାର ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ । 'ଅନ୍ଧ ଟଳିର ଗାଥା' କବିତାରେ ଅସଜ୍ଜିତ ଗଳି ଉପରେ ଦୁଇଫୁଟ ସ୍ଥାନରେ ଶୋଇଥିବା ଦୁଃସ୍ଥ ଯୁବକ ମୁଖରେ ଫୁଟାଇଛନ୍ତି ପ୍ରତିବାଦ ଏବଂ ଏହା ସହିତ ଅନାସକ୍ତି ଓ ମୁକ୍ତିର ନିବିଡ଼ ଦାର୍ଶନିକ ସମ୍ପର୍କ

'ମୁଁ ଜାଣିଛି ;
ବାସନା ପରିତୃପ୍ତିର ମରୀଚିକା ହିଁ
ଜନ୍ମ ଦିଏ ମୃତ୍ୟୁର ବିଭୀଷିକାକୁ ।
ଏ ଜୀବନରେ ସେ ଆସକ୍ତି ଜୁଟିନାହିଁ ମୋର
ମୃତ୍ୟୁ ଓ ମୁକ୍ତି ମୋ ଲାଗି ଏକାକଥା ।'

'ଫରିଆଦ' କବିତାରେ କୋଚିଟ କଳାବନ୍ତିର ଜୀବନ୍ତ ସୁନ୍ଦର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ମରଦ ଫିରର ଜୀବନ ଦର୍ଶନ '( ଖୋଦା ) ତୋ ପାଖେ ପରି ହଲପ୍ କଲି ମଣିଷ ହେବ ବୋଲି' ତୋଳିଛନ୍ତି, ସର୍ବହରାର ତଥାକଥିତ ହିଂସାତ୍ମକ କାର୍ଯ୍ୟର ଯୌକ୍ତିକତା ପ୍ରତିପାଦନ କରିବାକୁ ।

ସମାଜ-ଶାସନ, ସାମାଜିକ ପ୍ରଥା, ନିର୍ବାଚନ ଆଦି ଛଳନାପୂର୍ଣ୍ଣ କାର୍ଯ୍ୟକଳାପ ପ୍ରତି ତୀବ୍ର ବ୍ୟଙ୍ଗ ପ୍ରୟୋଗ କରିଛନ୍ତି କବି । ବିଭିନ୍ନ କବିତା 'ଅମଲାଏ ଜଗୁଛନ୍ତି ଫାଇଲରୁ ବୈପ୍ଳବିକ ଗୁପ୍ତ', ନିର୍ବାଚନେ 'ଜିତାପଟି ଗଢ଼ି ଅଧିକାରବାରେ', 'ଜନତାର ସେବା ପାଇଁ ମନ୍ତ୍ରୀ ହୋଇ ଘେନିଛି ଶପଥ' ପଙ୍କ୍ତି ମାନଙ୍କରେ ମର୍ମଭେଦୀ ଶ୍ଳେଷ ପରିସ୍ଫୁଟ ।

ସମସାମୟିକ ସମାଜ ବ୍ୟବସ୍ଥାରେ କବି ମର୍ମାହତ ହୋଇଥିଲେ ହେଁ ନିରାଶ ହୋଇନାହାନ୍ତି । ପ୍ରଚଣ୍ଡ ଆଶାବାଦର ସ୍ୱର ଝଂକୃତ ହୋଇଛି 'ସୂର୍ଯ୍ୟୋଦୟ' 'କାରାଗାର' ଆଦି କବିତାରେ ।

‘ପାହାନ୍ତ ବେଳା, ଅମାର ଜୋର
… … … … … … … …
ଆସିବ ସିଏ, ଆସିବ ଅସ୍ତ୍ର,
ବିଜୟ ଟୀକା ମଥାରେ ଘେନି
ଲାଲ ଟହ ଟହ ସୂର୍ଯ୍ୟ ସିଏ ।’ (ସୂର୍ଯ୍ୟୋଦୟ)

‘କାରାଗାର, କାରାଗାର
କବି ଭାବୁକର ରଙ୍ଗୀନ ସପନ
ତୁମେ ଆଗାମୀର ସୂଚକ ଭବନ
ହେ ଉଦାର, ହେ ପବିତ୍ର ।’ (କାରାଗାର)

ଭର୍ତ୍ସିତା, ପତିତା ଅଭାବ ଅନାଟନଗ୍ରସ୍ତ ମଣିଷ ପାଇଁ କବିଙ୍କ ହୃଦୟର ଦୁର୍ବଳ ଦରଦ ଆତ୍ମପ୍ରକାଶ ପାଇଛି । ରୂପ ଜୀବୀର ‘ରଙ୍ଗିଲା ଓଷ୍ଠ ଉପରେ ଅନାସକ୍ତ ବିଷାକ୍ତ ଦଂଶନ’ ବ୍ୟଥା ଦେଇଛି କବିଙ୍କୁ, ତେଣୁ ନରନାରାୟଣ ‘କବିତାରେ ପ୍ରଶ୍ନ ତୋଳିଛନ୍ତି’ —

“କିଏ ଜାଳେ ଏଥି ଅଭାବର ନିଆଁ
ପୋଡ଼ି ଘରଖାର କେ କରେ ଧୂଆଁ ?”

ଉତ୍ତର ସେ ପାଇଛନ୍ତି ନିଜେ ଏବଂ ଏହି ଶୋଷଣ ବ୍ୟବସ୍ଥାର ମୂଳୋତ୍ପାଟନର ଉପାୟ ମଧ୍ୟ ଦର୍ଶାଇଛନ୍ତି —

‘ଆମେ ଏକତାରେ ପଜା ଇଲସିପାତ
ସବୁ ଶୋଷଣକୁ କରିବୁ ନିପାତ ।’

ଜୀବନର ଅନ୍ତିମ ପର୍ଯ୍ୟାୟରେ ରଚିତ କବିତାଗୁଡ଼ିକରେ ପୂର୍ବର ‘ଉଷ୍ମତା’, ‘ଉଦ୍ଦୀପନା’ ନଥାଇପାରେ, କିନ୍ତୁ ଏକ ମହନୀୟ ଉଦାର ଦାର୍ଶନିକ ଦୃଷ୍ଟିକୋଣ ଓ ଗଭୀର ଆନ୍ତରିକତା ନିଷ୍ଠିତଭାବେ ରୂପ ପାଇଛି । ତାଙ୍କ କବିତାର ବୈଶିଷ୍ଟ୍ୟ ହେଉଛି, ସରଳ ସାବଲୀଳ ଭାଷା, ଅକୃତ୍ରିମ ମାନବିକତା, ତୀକ୍ଷ୍ଣ ଶ୍ଳେଷ ଓ ସର୍ବୋପରି ଦୃଢ଼ ଆତ୍ମବିଶ୍ୱାସ ଆଧାରିତ ଆଗାମୀର ସ୍ୱପ୍ନ । ସମାଜର ବୈପ୍ଳବିକ ପରିବର୍ତ୍ତନର ବାସ୍ତବବାଦୀ ଚିନ୍ତାଧାରା ସହ ଧର୍ମ ଓ ଆଧ୍ୟାତ୍ମିକତାର ମଧୁର ସମନ୍ୱୟ ଘଟି ‘ପୁନଶ୍ଚ’ର କେତେକ କବିତା, ଅତ୍ୟନ୍ତ ଭାବଗର୍ଭକ ଓ ଚିନ୍ତାଆଲୋଡ଼କ ହୋଇଛି ।

ଶ୍ରୀଯୁକ୍ତ ଦାସ ଥିଲେ ଜଣେ ବିପ୍ଲବୀ ଓ କବି । ସେ ଲେଖିଛନ୍ତି— 'ବିପ୍ଲବୀ ଆଖିରେ ଆଗାମୀର ସ୍ୱପ୍ନ । ସେହି ସ୍ୱପ୍ନ ବିହ୍ୱଳତା ବିପ୍ଲବୀ ସାହିତ୍ୟର ଜନ୍ମଦାତ୍ରୀ । ଏହା ଧ୍ୱଂସାତ୍ମକ ନୁହେଁ; ସ୍ଥିତାବସ୍ଥାକୁ ଏକ ଚରମ ଆଘାତ କଲେବି, ଏହାର ଅମ୍ଳିକ ଅଭିଯାନରେ ସୃଜନର ଉଦ୍ଦାମ ଛଟା' (ପୁନଶ୍ଚ) । କବିତାକୁ ସଙ୍ଗରେ ନେଇ ରାଜନୀତିରେ ପ୍ରବେଶ କରିଥିଲେ ରଘୁନାଥବାବୁ । ତେଣୁ ତାଙ୍କର ରାଜନୈତିକ ଚିନ୍ତାଧାରା କାବ୍ୟିକ ରୂପ ନେଇ ଆତ୍ମପ୍ରକାଶ କରିଛି । ସେ ସାଧାରଣ ଲୋକଭାଷାରେ ସାଙ୍ଗୀତିକତାର ରସ ବୋଳି ସାଧାରଣ ଲୋକର ଆବେଗ ତରଙ୍ଗ ଖେଳାଇ, ସାଧାରଣ ଲୋକର ଅଭିପ୍ରିୟ ଓ ଶ୍ରେୟ ଆଦର୍ଶ, ସାମ୍ୟବାଦର ଆବାହନୀ ଗାଇଛନ୍ତି ଓ ଈପ୍‌ସିତ ସାମ୍ୟବାଦୀ ସମାଜର ବର୍ଣ୍ଣୋଜ୍ଜ୍ୱଳ ଚିତ୍ର ଆଙ୍କି ତାର ପ୍ରାପ୍ତି ପାଇଁ ବିପ୍ଳବର ଅଗ୍ନି ସଂଯୋଗ କରିଛନ୍ତି । ଆଦର୍ଶ ଓ କାବ୍ୟିକ ଲାବଣ୍ୟର ସ୍ନିଗ୍ଧ ସମନ୍ୱୟ ପାଇଁ ତାଙ୍କର କବିତା ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ।



ଛାତି କବାଟ କାଲେ
ବାଘ ଲେଉଟିବ ନାହିଁରେ;
ସେ ଆମକୁ ଗୋଟି ଗୋଟି ତଣ୍ଟି ଚିପି ମାରିବ—
ଗାଁ ଦାଣ୍ଡରେ
ଦିନ ଦିପହରେ
ଚଉମୁଖୀ ଚଉତରା ଉପରେ ।
ଆମରି ରକ୍ତ ପିଇ ତାର ବଳବିକ୍ରମ ବଢ଼ୁଛି
ଆହୁରି ବଢ଼ିବ ।
ବଞ୍ଚିବାକୁ ହେଲେ
ବାଘକୁ ପଲଟେଇବାକୁ ପଡ଼ିବ
... ... ... ... ... ... ... ...
ଆମରି ତାଳ ମାଡରେ
ବାଘ ପୁଣି ଲେଉଟିବ ଜଙ୍ଗଲକୁ ॥ ( ବାଘ ମାରିଛୁ )

# 'ପୁନଶ୍ଚ'ରେ ପୁରାଣ-ଦୃଷ୍ଟି

## ପ୍ରଭାତ ଶତପଥୀ

ସ୍ୱର୍ଗତ କବି ଶ୍ରୀ ରଘୁନାଥ ଦାସ (ଜଟାୟୁ) ସାମ୍ୟବାଦୀ ଦର୍ଶନର ଜଣେ ପ୍ରବକ୍ତା-କବିଭାବେ ଓଡ଼ିଆ ସାହିତ୍ୟରେ ସୁପରିଚିତ। 'ଅଗଷ୍ଟ ପନ୍ଦର'ରେ ତାଙ୍କର ଦଳିତ ଜନତା ପ୍ରତି ସହାନୁଭୂତି ଓ ମମତ୍ୱ ଉଦ୍‌ଘୋଷିତ। ସେହି କବିଙ୍କର 'ପୁନଶ୍ଚ'. ଅନ୍ୟ ଏକ କବିତା ସଂକଳନ। ଏଥିରେ ସାମ୍ୟବାଦୀ ଦର୍ଶନ ସହ ଆଧ୍ୟାତ୍ମିକ ଦୃଷ୍ଟି ସମନ୍ୱିତ ହୋଇ ପାରିଛି। ଏଠାରେ କେବଳ ଚାରିଗୋଟି କବିତା ସମ୍ପର୍କରେ ମୋର ନିଜ ଅବବୋଧକୁ ମୁଁ ପ୍ରତିଫଳିତ କରିବାକୁ ଯାଉଛି। ଏହି ଚାରିଗୋଟି କବିତା-ସୌଧ ପୁରାଣର ପୀଠିକା ଉପରେ ନିର୍ମିତ। ଏହି ଚାରୋଟିରୁ ତିନୋଟି କବିତାରେ ଚରିତ ହୋଇଛନ୍ତି ଜଟାୟୁ, ଦେବକୀ ଓ ମୃଗୁଣୀ ଏବଂ ଚତୁର୍ଥ କବିତାଟିରେ ଚରିତ ହୋଇଛନ୍ତି ନିଜେ କାବ୍ୟନାୟକ। ସେ ହିଁ ଘଟଣା ଓ ପରିବେଶର ଦ୍ରଷ୍ଟା ଏବଂ ବକ୍ତା। ଏହି ଚାରିଟି କବିତାରେ ସାମ୍ୟବାଦୀ ଦର୍ଶନ ମୁଖ୍ୟ ଅଭିବ୍ୟକ୍ତିର ସ୍ଥାନ ଗ୍ରହଣ କରିଥିଲେ ହେଁ ସମାଜ ଓ ରାଜନୀତି ସ୍ତରର କ୍ରୂରତା, ଶଠତା ଓ ଯଥେଚ୍ଛାଚାରିତା ଆପଣାକୁ ପ୍ରମୂର୍ତ୍ତି କରି ତୋଳିଛି। ଭାରତୀୟ ସମାଜରେ ଆଜି ଧନୀ, ଦରିଦ୍ର ବୈଷମ୍ୟ (ଅର୍ଥନୈତିକ) ସର୍ବମୁଖ୍ୟ ବୈଷମ୍ୟ ହେଲେ ହେଁ, କ୍ଷମତାର ପରାକ୍ରମ ମଧ୍ୟ କମ୍ ନୁହେଁ। ସାଧାରଣ ଭାରତୀୟ ଜନତା ୨ଟି ଗୋଷ୍ଠୀ ଦ୍ୱାରା ଅତ୍ୟାଚାରିତ— ଗୋଟିଏ ଗୋଷ୍ଠୀ ଧନୀକ ଓ ଅପରଟି ରାଜନୀତିକ୍ଷମତାପନ୍ନ ଗୋଷ୍ଠୀ।

ରାଜନୀତି-କ୍ଷମତାପନ୍ନ ଗୋଷ୍ଠୀ ଅର୍ଥ ଓ ପ୍ରତିପତ୍ତିଶାଳୀ ହେବା ମଧ୍ୟ ସ୍ୱାଭାବିକ। ତେଣୁ ଧନୀ ଓ କ୍ଷମତାପନ୍ନ ଗୋଷ୍ଠୀ, ମଧ୍ୟବିତ୍ତ ଏବଂ ଅସଂଖ୍ୟ ଦରିଦ୍ର ଜନତା ଭାରତୀୟ ସମାଜ ରୂପେ ପରିଚିତ। ଅର୍ଥ ପୁଣି ମନୁଷ୍ୟର ସକଳ ପ୍ରକାର ମାନବିକତାକୁ ଗ୍ରାସ କରି ବସିଛି। ଅନ୍ୟାୟ, ଅତ୍ୟାଚାର, ଲୁଣ୍ଠନ ଓ ଧର୍ଷଣ, ଧନୀ ଓ କ୍ଷମତାପନ୍ନ ଗୋଷ୍ଠୀର ସହଜ କର୍ମ ହୋଇ ପଡ଼ିଛି। ପୁଣ୍ୟମୟ ଏ ଭାରତ ଭୂଇଁରେ ସତ୍ୟ, ଧର୍ମ, ନ୍ୟାୟ ଓ କରୁଣା ଆଜି ଚରମ ବିପର୍ଯ୍ୟୟର ସମ୍ମୁଖୀନ। ଦରିଦ୍ର ଜନତା ଅତ୍ୟାଚାରର ଶିକାର ହେଉଛି। ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀ ଶାସକ ଓ ଧନୀକ ଗୋଷ୍ଠୀର ଯଥେଚ୍ଛାଚାରିତାକୁ ଦେଖି ମଧ୍ୟ ନୀରବ, ଅଜାଗ୍ରତ। ଏହାର କାରଣ ହୋଇପାରେ ଯେ ନିଜେ ଯେତେବେଳ ଯାଏଁ ଏମାନେ ଆକ୍ରାନ୍ତ ନୁହନ୍ତି, ଅନ୍ୟାୟ ଓ ଅସତ୍ୟ ବିରୋଧରେ ସେତେବେଳେ ଯାଏ ଏମାନେ ନୀରବ, ପ୍ରତିବାଦ-ହୀନ ରହିବାକୁ ଉଚିତ ମନେକରନ୍ତି। ସତ୍ୟ, ନ୍ୟାୟର

ବୁଦ୍ଧ ଏମାନେ ଦୁର୍ଦ୍ଦାନ୍ତ ନିଶ୍ଚୟ ମାତ୍ର ସ୍ୱାର୍ଥହାନି ଭୟରେ କ୍ଷମତାଶାଳୀର ପ୍ରତିରୋଧ କରିବାକୁ ମନବଳାନ୍ତ ନାହିଁ । 'ପୁନଶ୍ଚ'ରେ ପ୍ରକାଶିତ 'ଜଟାୟୁ' କବିତାରେ ଏହି ଶ୍ରେଣୀର ଲୋକମାନଙ୍କ ପ୍ରତି ଏକ ଦୃଢ଼ ଆହ୍ୱାନ । ଜଟାୟୁ ବୟୋବୃଦ୍ଧ ପକ୍ଷୀଟିଏ ମାତ୍ର । ପ୍ରବଳ ପରାକ୍ରମୀ ବିଂଶଭୁଜ ରାବଣର ଶକ୍ତି ସମକ୍ଷରେ କେତେ ଦୁର୍ବଳ, କେତେ କ୍ଷୀଣ । ମାତ୍ର ଜଟାୟୁଙ୍କ ହୃଦୟ ସତ୍ୟ ଓ ନ୍ୟାୟର ଆଭାରେ ତେଜୀୟାନ, ମାନବିକତାର ନିର୍ଯାସରେ ମହିମାମୟ । ଅବଶ୍ୟମ୍ଭାବୀ ମୃତ୍ୟୁହିଁ ଏକମାତ୍ର ପରିଣତି ବୋଲି ଜାଣି ମଧ୍ୟ ସେ ପ୍ରବଳ ଶକ୍ତିମାନ ପ୍ରତିପକ୍ଷର ସାମ୍ନା କରିଛନ୍ତି । ଗୋଟିଏ ପରେ ଗୋଟିଏ ଡେଣା ଛେଦନ କରି ଅନ୍ୟାୟୀ, ଅପହରଣକାରୀ ରାବଣ ତାଙ୍କୁ ହତ୍ୟା କରିଛି । ମାତ୍ର ସେ ଏକକ ସେନା । ଜୀବନ ଭୟରେ ସେ ନୀରବ ନିଶ୍ଚେଷ୍ଟ ରହିନାହାନ୍ତି । ପ୍ରାଣବଳି ଦେଲେ ହେଁ ଜଗତ ସମକ୍ଷରେ ଏକ ଉଦାହରଣ ରୂପେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ଆପଣା ବିଶ୍ୱାସକୁ ସେ ଉଚ୍ଚାରନ୍ତି —

"ବେନି ପକ୍ଷ ଛିଡ଼ିଗଲା
ଛିଡ଼ିଯାଉ, ନାହିଁ ମୋ ଶୋଚନା
ମୁଁ ରହିବ ଯୁଗେ ଯୁଗେ
ମୁମୁକ୍ଷୁର ଜ୍ୱଳନ୍ତ ପ୍ରେରଣା ।"

ଏହି ଯୁଦ୍ଧ ଅହଂକାର ଭିତ୍ତିକ ନୁହେଁ । ସତ୍ୟ ଓ ନ୍ୟାୟର ଜୟ ଘୋଷଣା ନିମିତ୍ତ, ବଳାତ୍କାରର ପ୍ରତିରୋଧ ନିମିତ୍ତ ଏହି ଯୁଦ୍ଧର ସୂତ୍ରପାତ ହୁଏ ।

'ଶ୍ରୀମଦ୍ ଭାଗବତ' କବିତାଟି କାରାରୁଦ୍ଧା ଦେବକୀଙ୍କର ଆତ୍ମବାଣୀ । କଂସର ନିଷ୍ଠୁରତା ଓ ଆସୁରିକ ଅତ୍ୟାଚାରର ପ୍ରତୀକ ଏବଂ ନିର୍ଯାତିତ ଦୁଃଖୀ ଜନତାର ପ୍ରତୀକ ନିଜେ ଦେବକୀ । ସେ ଅତ୍ୟାଚାରିତା ସତ, କ୍ଲାନ୍ତ, ଶୋକାର୍ତ୍ତ ସତ, ମାତ୍ର ସେ ହିଁ ହେଉଛନ୍ତି ଯୁଗପ୍ରସବିନୀ, ସେ ନାରାୟଣଙ୍କର ଜନନୀ । ଯେଉଁ କୃଷ୍ଣ ସକଳ ନିଷ୍ଠୁରତା ଓ ଆସୁରିକତାକୁ ସମୂଳେ ନିଶ୍ଚିହ୍ନ କରିବେ, ସେହି କୃଷ୍ଣଙ୍କର ସେ ଜନନୀ । ତେଣୁ ଅତ୍ୟାଚାର ଓ ହତାଶା ଶେଷ କଥା ନୁହେଁ -- ତା' ଭିତରେ ବରଂ ନୂତନ, ଐଶ୍ୱର୍ଯ୍ୟମୟ ଯୁଗର ଅଙ୍କୁରୋଦ୍‌ଗମ ଘଟିଥାଏ । ଦେବକୀ ତେଣୁ ଫସ୍ତ ସମସ୍ତଙ୍କୁ ଚେତାବନୀ ଦିଅନ୍ତି —

"ଦେବକୀ ମୁଁ / ମୁଁ ତ ଯୁଗ ପ୍ରସବିନୀ
ମୁଁ କୃଷ୍ଣ ଜନନୀ / ମୋର ରକ୍ତସ୍ରାବେ
ଦେଖ, ନୀଳହୁଏ କଳାପାଣି / ଯମୁନାର ।
ହୋସିଆର ! ହୋସିଆର"

ତୃତୀୟ କବିତାଟି କବି ଜଗନ୍ନାଥ ଦାସଙ୍କ ରଚିତ 'ମୃଗୁଣୀ ସ୍ତୁତି'ର ପୁରାଣ-ଚେତନାକୁ ବହନ କରିଛି । ବ୍ୟାଧ ଏଠାରେ ସୌଦାଗର ସମାଜ—ବ୍ୟବସାୟୀ ବା ଯଥାର୍ଥରେ ପୁଞ୍ଜିପତି, ବ୍ୟବସାୟ ନିମନ୍ତେ, ଅର୍ଥ ନିମନ୍ତେ ସେମାନେ ପ୍ରାଣୀ ହତ୍ୟା

କଣ୍ଠବାରେ ଧରିଛନ୍ତି । ନିରନ୍ନ ଜନତା ଏଠାରେ ବିପଦଗ୍ରସ୍ତା ମୃଗୁଣୀ ସଦୃଶ । ଚତୁର୍ଦ୍ଦିଗରୁ ସୌଦାଗରୀ ସମାଜର ଜାଲ ଘେରି ଆସୁଛି । ଈଶ୍ୱର ଭିନ୍ନ ଏ ସଙ୍କଟରେ ଅନ୍ୟ ସାହା ନାହିଁ । ସେ ଈଶ୍ୱର ପୁଣି ଆମ କଳ୍ପନାର, ଦୂରସ୍ଥ ଈଶ୍ୱର ନୁହନ୍ତି । କବିଙ୍କ ଦୃଷ୍ଟିରେ ଈଶ୍ୱର ସେହି ନିରନ୍ନ ଜନତା ଭିତରେ ବର୍ତ୍ତମାନ ଅଛନ୍ତି । ବ୍ୟାଧର ଧୂର୍ତ୍ତକୌଶଳକୁ ପଣ୍ଡ କରିଦେବାର ଶକ୍ତି ସେ ନିରନ୍ନ ଜନତାଙ୍କ ମଧ୍ୟରେ ହିଁ ନିହିତ ଅଛି । କେବଳ ସଜଳ ହତାଶା ଓ ଅସନ୍ତୋଷକୁ ଦୀର୍ଘଶ୍ୱାସକୁ ନିଜ ମଧ୍ୟରେ ଚାପିରଖି ନିରନ୍ନଜନତା ସବୁ ସହିଯିବାକୁ ପ୍ରସ୍ତୁତ ହୋଇଛି ଏବଂ ସେଥିପାଇଁ ଦୁର୍ଦ୍ଦଶା ଭୋଗୁଛି । କବି ନିରନ୍ନ ଜନତାଙ୍କୁ ଆହ୍ୱାନ ଜଣାଉଛନ୍ତି —

''ଖୋଲିଦେ'ରେ ଖୋଲିଦେ'ରେ ତୋ ରୁଦ୍ଧ କବାଟ
ଯୁଗଯୁଗ ଧରି ଯହିଁ ବାନ୍ଧିଛି ଜମାଟ/ଦୀର୍ଘଶ୍ୱାସ, ହା ହୁତାଶ ତପ୍ତ ଅସନ୍ତୋଷ ।''

ମଣିଷ ଭିତରେ ଐଶୀ ଶକ୍ତିର ପ୍ରଭଞ୍ଜନ ବେଗ ଉପସ୍ଥିତ ଥିବାର କବି ବିଶ୍ୱାସ କରିଛନ୍ତି ।

'ଦକ୍ଷ ଯଜ୍ଞ' କବିତା ଆଡ଼ମ୍ବରପୂର୍ଣ୍ଣ, ଯଥେଚ୍ଛାଚାରୀ ରାଜତନ୍ତ୍ରର ସ୍ୱରୂପକୁ ପ୍ରକଟିତ କରିଛି । କଳମଗାର ଏଠାରେ ଖଣ୍ଡାଧାର ଭଳି ତୀକ୍ଷଣ — ରାଜାର ଇଚ୍ଛା ଅଲଂଘନୀୟ । ରାଜା ପୁଣି ଆଡ଼ମ୍ବର, ବିଳାସ ଓ ଅହଂକାର-ପ୍ରମତ୍ତ । ଶିବ ସ୍ୱୟଂ ମଙ୍ଗଳମୟ ପ୍ରାଣଶକ୍ତିର ପ୍ରତୀକ — ଅଙ୍ଗ ଭିତରେ, ମଣିଷ ଭିତରେ ସେ ହୋଇଛନ୍ତି ଜିହ୍ୱା ସ୍ୱରୂପ — ସେ ବିଦ୍ରୋହ, ବିପ୍ଳବ ଉଚ୍ଚାରଣର ସହାୟକାରୀ । ମାତ୍ର ରାଜାର ମିଥ୍ୟାୟୋଜନ ଭିତରେ ସେ ଜିହ୍ୱାଟି ଅନୁପସ୍ଥିତ ରହିଛି । ଅସତ୍ୟର କୋଳାହଳରେ ସତ୍ୟ-ସ୍ୱରୂପା ସତୀଙ୍କର ମୃତ୍ୟୁ ସ୍ୱାଭାବିକ ଓ ଧ୍ରୁବ । ତେଣୁ ସତ୍ୟସନ୍ଧାନୀ ମଣିଷ ଭିତରର ସେ ବିଦ୍ରୋହୀ ଶକ୍ତିକୁ କବି ଶିବ ରୂପେ ପ୍ରତିଷ୍ଠିତ କରିଛନ୍ତି ଏବଂ ଏହି ମିଥ୍ୟାମୟ ଜଗତରେ ସତ୍ୟର ମୃତ୍ୟୁ ହେଲବେଳେ ଶିବହିଁ ଜାଗି ଉଠନ୍ତୁ ବୋଲି କାମନା କରିଛନ୍ତି । ସତ୍ୟବ୍ରତ ଦୁରୂହ ବ୍ରତ, ମାତ୍ର ସତ୍ୟହିଁ ପରମ ଶକ୍ତି — ଏହା କବି ପ୍ରତିପାଦନ କରିଛନ୍ତି ।

ପ୍ରଚୁର କଳାତ୍ମକତାର ସଂଯୋଗରେ ସ୍ୱର୍ଗତ କବି ଶ୍ରୀ ଦାସ ସ୍ୱବକ୍ତବ୍ୟ ପରିବେଷଣ କରିଛନ୍ତି । ସାମ୍ୟବାଦ ପରି ସମାଜ ଚେତନା ସମ୍ବଳିତ କବିତା ରଚନାର ଅନ୍ତରାଳରେ ଆମ ଓଡ଼ିଆ ସାହିତ୍ୟରେ ଅନେକ ସ୍ଲୋଗାନ ଯେ ସ୍ଥାନ ପାଇଛି — ଏହା ଯେ କେହି ଅନୁଭବୀ ପାଠକ ବୁଝିପାରିବେ । 'ହତ୍ୟା', 'ଯୁଦ୍ଧ', 'ରକ୍ତ' ଇତ୍ୟାଦି ଶବ୍ଦର ଯଥେଚ୍ଛା ସ୍ଲୋଗାନ ଦେଇ କେତେକ କବି ସାମ୍ୟବାଦୀ କବିତା ରଚନା କରିଛନ୍ତି । ସେ ସବୁଥିରେ ଆକ୍ରୋଶ, ଆକ୍ରମଣ, ଘୃଣା ଓ ବିଦ୍ୱେଷର ରାଶି ରାଶି ଉଦାହରଣ ସୁସ୍ପଷ୍ଟ । ମାତ୍ର କବିତା କଦାପି ସ୍ଲୋଗାନ ନୁହେଁ, ଏହା କବି-ଉପଲବ୍ଧିର ସରଳତମ, ସୃଜନଶୀଳ ପ୍ରକାଶ — ଆନ୍ତରିକ ଅନୁଭବର ରସଧାରା । ଆଧୁନିକ ଓଡ଼ିଆ କବିତା ରାଜ୍ୟରେ ଯେଉଁ ଅଳ୍ପ କେତେକ କବି ଆପଣାର ସାମ୍ୟବାଦୀ ଦର୍ଶନର ସ୍ୱରକୁ ସ୍ପଷ୍ଟ, ଆନ୍ତରିକ ଓ କଳାମୟ କରି ପରିସ୍ଫୁଟ କରିଛନ୍ତି କବି ଶ୍ରୀ ଦାସ ସେହି ମୁଷ୍ଟିମେୟ କବିଙ୍କ ଭିତରୁ ଜଣେ । ତେଣୁ 'ପୁନଶ୍ଚ' ସଙ୍କଳନଟି ଏକ ଉନ୍ନତ କବିତା ପୁସ୍ତକ ।

# 'ପୁନଶ୍ଚ' ଓ କବି ରଘୁନାଥ ଦାସ 'ଜଟାୟୁ'

ସତ୍ୟନାରାୟଣ ପଣ୍ଡା

ଦୁଇଟି ବିଶ୍ୱଯୁଦ୍ଧର ଯନ୍ତ୍ରଣାଦଗ୍ଧ ମଧ୍ୟବର୍ତ୍ତୀକାଳ ଯେତେବେଳେ ଶାନ୍ତି ପାଇଁ ବିକଳ ଆର୍ତ୍ତନାଦ କରୁଥିଲା ସେତିକିବେଳେ ଆଲୋଚ୍ୟ କବିତା ଗ୍ରନ୍ଥ 'ପୁନଶ୍ଚ'ର କବି ରଘୁନାଥ ଦାସ ଜଟାୟୁ (୧୯୧୯-୧୯୮୪, ପି. ନଟବର ଦାସ, ଛଣୁପୁର, ଖୋର୍ଦ୍ଧା, ପୁରୀ ଜିଲ୍ଲା)ଙ୍କର ଶୈଶବ, କୈଶୋର ଓ ପ୍ରାକ୍ ଯୌବନ କାଳ ଦୁଃଖ ଦୈନ୍ୟର କଷାଘାତରେ ଜର୍ଜ୍ଜରିତ ହୋଇଥିଲା । ପିତା ମାତାଙ୍କର ବିୟୋଗ, ଅର୍ଥର ଅଭାବ ତଥା ଭାରତୀୟ ରାଜନୈତିକ ପରିସ୍ଥିତିର ଅହ୍ୱାନ ତାଙ୍କ ଛାତ୍ର ଜୀବନରେ କେବଳ ଶିକ୍ଷା ସମ୍ପୂର୍ଣ୍ଣ କରିବାରେ ବାଧାଦେଇ ନଥିଲା, ତାଙ୍କର ବ୍ୟଥିତ-ମଥିତ ହୃଦୟରେ ମଧ୍ୟ ସାମ୍ୟବାଦର ସ୍ୱର ଝଙ୍କାର ତୋଳିଥିଲା । ସମାଜରେ ପ୍ରଶ୍ରୟଭୂତ ବୈଷମ୍ୟ, କୁସଂସ୍କାର ଓ ମାନ୍ଧାତାପନତା ତାଙ୍କ ଲେଖନୀକୁ ଉଗ୍ର ଓ ଅଗ୍ନିବର୍ଷୀ କରିବା ସଙ୍ଗେ ସଙ୍ଗେ ପ୍ରତିଷ୍ଠିତ ପରମ୍ପରା ବିରୋଧରେ ଯୁଦ୍ଧ ଘୋଷଣା କରିବା ପାଇଁ ଖୋରାକ ଯୋଗାଇ ଥିଲା । ଫଳରେ କବି 'ଜଟାୟୁ' ଆଗାମୀର ରଙ୍ଗୀନ ସ୍ୱପ୍ନ ନେଇ ବିପ୍ଳବବାଦର ଆବାହନୀ ପାଇଁ ଯେଉଁ ନୈବେଦ୍ୟ ବାଢ଼ିଲେ ତାହା କେତେଦୂର ଏକ ଶାଣିତ ଅସ୍ତ୍ର ଭଳି ସମାଜର ସ୍ଥିତାବସ୍ଥା ପ୍ରତି କୁଠାରାଘାତ କଲା ତାହାହିଁ ପ୍ରଣିଧାନର ବିଷୟ । ସେ ଅବହିତ ଥିଲେ ଯେ 'ଧ୍ୱଂସାତ୍ମକ ସାହିତ୍ୟ ବିପ୍ଳବୀ ସାହିତ୍ୟ ନୁହେଁ' କାରଣ ତାହାର ବୁଣ୍ଡରଣ ଗତିବାଧୀ ଚିନ୍ତାଧାରାକୁ ବ୍ୟାହତ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତି ପ୍ରାଧାନ୍ୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥାଏ ।

କବି 'ଜଟାୟୁ' ଜଟାୟୁର ପକ୍ଷ ନେଇ ସାମାଜିକ ସ୍ଥିତାବସ୍ଥାର ଦୁର୍ବାର ରାବଣର ସମକକ୍ଷ ନହେଲେ ବି ତା ବିରୋଧରେ ବୈପ୍ଳବିକ ପଦକ୍ଷେପ ନେଇଛନ୍ତି । ସେ ଜାଣନ୍ତି 'ବପୁର ଶକ୍ତି ମୋ କ୍ଷୀଣ', ତଥାପି ସେ ବିଶ୍ୱାସ କରନ୍ତି 'କିନ୍ତୁ ମୋର ଆତ୍ମା ସେ ଅଜେୟ' । ତେଣୁ ସେ ଛିନ୍ନପକ୍ଷ ହୁଅନ୍ତୁ ବା ସାଥିହୀନ ହୁଅନ୍ତୁ ..... ଚିନ୍ତା ନାହିଁ । ସେ ଦେଖାଇ ଦେବାକୁ ଚାହିଁଛନ୍ତି ଯେ 'ସତୀ ଲାଗି ପକ୍ଷୀ ଏକ / ରାମ ଆଗୁ ଯୁଝିଥିଲା ବିଂଶବାହୁ ପ୍ରତିପକ୍ଷେ / ଯୁଝିଛୁ ଏକାକୀ / ଏକକ ସେ ସେନା / ପକ୍ଷେ ସତ୍ୟ, ପକ୍ଷେ ନ୍ୟାୟ / ଅବିନୀତ ଜଟାୟୁର ତେଣା' । ତେଣୁ ଜଟାୟୁ ହତାଶ ହୃଦୟରେ ଆଶାର ସଞ୍ଚାର କରିବା ସଙ୍ଗେ ସଙ୍ଗେ ନିରବଧି ଯନ୍ତ୍ରଣାରେ କଲବଲ ହେଉଥିବା ଜୀବନ୍ତ ମୁର୍ଦ୍ଦାର-ମାନଙ୍କ ପ୍ରାଣରେ ଜୀବନ ସ୍ୱର-ଝଙ୍କାର ତୋଳିଛନ୍ତି ।

'ମୋର ସେଇ ଆଶଙ୍କା ସତ୍ୟ ହେଲା, ଗଣ ସଂଗ୍ରାମ ଶିକାର ହେଲା ନେତୃତ୍ୱର ଧୋକାବାଜିର, ବାରମ୍ବାର ମୁକ୍ତି ସ୍ୱପ୍ନ ପରାହତ ହେଲା । ଜନସାଧାରଣ ନେତୃତ୍ୱ ଉପରୁ ଆସ୍ଥା ହରାଇ ବସିଲେ, ପରେଥି ପରିବର୍ତ୍ତେ ଦୁର୍ଗତି ସେମାନଙ୍କୁ ଗ୍ରାସ କଲା । ଦୁର୍ନୀତି, ଦୁରାଗ୍ରହ, ଦୁଃଶାସନ, ଦୁଃଖ, ଦୈନ୍ୟ -- ଜନଗଣ ଘାଇଁ ପଡ଼ିଛନ୍ତି, ଆଶ୍ରା କରିବାକୁ ସଙ୍ଗଠିତ ଶକ୍ତି ନାହିଁ, ପ୍ରତିରୋଧ କରିବାକୁ ମନୋବଳ ନାହିଁ । ଏଇ ଦୁସ୍ଥ ଜନତାକୁ ଉଦ୍ଧାର କରିବାର ସାମର୍ଥ୍ୟ ମୋର ନାହିଁ ।'

ଏଇ ସାମାଜିକ ଏବଂ ରାଜନୈତିକ ପରିପ୍ରେକ୍ଷୀରେ 'କଟାସ୍ଥୁ'ଙ୍କର ଯୁଦ୍ଧଂଦେହି ଆହ୍ୱାନ । ସଂଘର୍ଷରେ ସଞ୍ଜାତ, ସଂଘର୍ଷରେ ସଂପୃକ୍ତ ପୁରୁଷକାରଟିର ଏହି କାବ୍ୟିକ ଉଦଗୀରଣ ପଛରେ କୌଣସି ବ୍ୟକ୍ତିଗତ ସିଦ୍ଧି ବା ସାଫଲ୍ୟର ଲିପ୍ସା ନାହିଁ, ସ୍ୱାଧୀନତୋତ୍ତର ଭାରତରେ ସଂଗ୍ରାମୀର ପ୍ରତିଷ୍ଠା ପାଇଁ ଅନେକ ସୁଯୋଗ । ତା ପାଇଁ ସାମାଜିକ, ଆର୍ଥନୀତିକ ତଥା ରାଜନୀତିକ ସୁବିଧା ହାସଲ କରିବା ଗୋଟାଏ ଆଇନଗତ ଅଧିକାର ହୋଇ ଯାଇଥିବା ବେଳେ 'କଟାସ୍ଥୁ'ଙ୍କର ଅମ୍ଳ ଅଭିବ୍ୟକ୍ତିର ଅନ୍ତଃସ୍ୱର 'ପୁନଶ୍ଚ' ତାଙ୍କ ଅନ୍ତିମ କାଳରେ ପ୍ରକାଶ ପାଇ ତାଙ୍କୁ ଏକ ନିଃସ୍ୱାର୍ଥପର ସଂଗ୍ରାମୀ ରୂପେ ପ୍ରତିପନ୍ନ କରିଅଛି ।

ବିପ୍ଳବ-ସାହିତ୍ୟର ଭଣ୍ଡାର ଯଥେଷ୍ଟ ପୁଷ୍ଟଳ ନ ହେଲେ ବି ନଗଣ୍ୟ ନୁହେଁ । ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଏହା ସାହିତ୍ୟର ଏକ ବଳିଷ୍ଠ ଅଙ୍ଗରୂପେ ଆଦୃତ ହୋଇ ଆସୁଅଛି । ବିପ୍ଳବ-କବିତା ରଚନାରେ 'କଟାସ୍ଥୁ'ଙ୍କର ଦୃଷ୍ଟିଭଙ୍ଗୀ ଓ ସ୍ୱର ସ୍ପଷ୍ଟ ଓ ବଜ୍ରଗମ୍ଭୀର — ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ଓଡ଼ିଆ ସାହିତ୍ୟରେ 'ବାଜିରାଉତ'ର ସ୍ରଷ୍ଟାଙ୍କୁ ସ୍ମରଣ କଲାବେଳେ 'ବାଜି'ର ନିଷ୍କପଟ ତ୍ୟାଗର ସାମାନ୍ୟତମ ପ୍ରଭାବ ମଧ୍ୟ ସ୍ରଷ୍ଟାଙ୍କ ବ୍ୟକ୍ତିତ୍ୱରେ ନ ପାଇ ଜନମାନସ ପ୍ରବଞ୍ଚନାର ଧକ୍କାକୁ ସାମନା କରିଥିଲା । ଚନ୍ଦ୍ରା ଓ ଚନ୍ଦ୍ରଚର ନେଶାପ୍, ଏଜି ଅବାସ୍ତବ ବିପ୍ଳବର ଧୂଆଁବାଣ, ବାଦ୍‌ସାହୀ ଧ୍ୱଜାଧାରୀ କଣ୍ଠରେ ବୁଭୁକ୍ଷାର ଜୟଗାନ, ଅଧିକନ୍ତୁ ନିଷ୍ପନ୍ଦ ବ୍ୟକ୍ତିତ୍ୱର ନିର୍ବୀର୍ଯ୍ୟ ସ୍ଖଳନ ହିଁ ସ୍ୱାଧୀନତୋତ୍ତର କେତେକ ତଥାକଥିତ ବିପ୍ଳବୀ ସାହିତ୍ୟିକଙ୍କର ଆଧେୟ ହୋଇଥିବା ବେଳେ ଏ ଦିଗରେ କଟାସ୍ଥୁଙ୍କର ପ୍ରାଣସ୍ପର୍ଶୀ ଅଭିମୁଖ୍ୟ ସମ୍ପୂର୍ଣ୍ଣ ଭିନ୍ନ ।

'ପୁନଶ୍ଚ' କବିତା ଗ୍ରନ୍ଥ କେବଳ ତେସ୍ଥାଳିଶ ଗୋଟି ଭାବଗର୍ଭକ ଓ ସୁଖପାଠ୍ୟ କବିତାକୁ ସଂଶ୍ଳିଷ୍ଟ କରିନାହିଁ, ଏହାର ପ୍ରତ୍ୟେକଟି କବିତାର ଆଗ୍ନେୟ ଉଦ୍‌ଗୀରଣ ଚେତନାର ବିଗଳନକୁ ଭେଦ କରି ଅନନ୍ତ ଆକାଶ ପର୍ଯ୍ୟନ୍ତ ପ୍ରଲମ୍ବମାନ । ଜନମାନସକୁ

ସମ୍ପୂର୍ଣ୍ଣ ପ୍ରସ୍ତାବିତ କରିପାରୁଥିବା ଏହି କବିତାଗୁଡ଼ିକ ପାଠକର ସାମଗ୍ରିକ ସ୍ଥିତିକୁ କେବଳ ଦୋହଲାଇ ଦିଏନାହିଁ, ତାକୁ ପ୍ରବୁଦ୍ଧ କରେ, ତାର ବ୍ୟକ୍ତିତ୍ୱକୁ ପଲ୍ଲବିତ ଏବଂ ବିକଶିତ କରିଥାଏ । କୌଣସି କବିତା କଦାପି ଘୃଣା, ଅସନ୍ତୋଷ ଏବଂ ଈର୍ଷା ବା ଜିଘାଂସା ସୃଷ୍ଟି କରିଏ ନାହିଁ, ବରଂ ସ୍ୱତଃସ୍ଫୁର୍ତ୍ତ ଓ ସ୍ୱସଂସିଦ୍ଧିର ଆଭାସ ସୃଷ୍ଟି କରେ । ଫଳରେ ପାଠକ ନିଜେ ବିମୋହିତ ହୋଇଯାଏ ।

ଗ୍ରନ୍ଥଟିକୁ ଅନୁଚିନ୍ତନ ପାଠ କଲେ ଯେଉଁ କେତୋଟି ମୂଲ୍ୟ ଚିନ୍ତାଧାରର ସ୍ୱର ଶୁଣିବେ ସେଇ ସ୍ୱର ହେଉଛି ବସ୍ତୁତଃ ସାମ୍ୟବାଦର, ଆଧ୍ୟାତ୍ମିକ– ମତବାଦର, ପ୍ରଚଳିତ ଆଖ୍ୟାୟିକା ମିଥର ଓ ସର୍ବୋପରି ସାମାଜିକ ଦୁଃସ୍ଥିତି—ରାଜନୀତିକ ଦୁର୍ଗତିର । ଆଧ୍ୟାତ୍ମିକତା ସହିତ ସାମ୍ୟବାଦୀ ଚିନ୍ତାର ସମନ୍ୱୟ, ମିଥ୍ ସହିତ ରାଜନୀତିର ସଂଯୋଜନା ଓ ବିଜ୍ଞାନ ସହିତ ବେଦ ଉପନିଷଦ ବର୍ଣ୍ଣିତ ନୀତିଶିକ୍ଷାର ସଂଯୋଗ କବି ପ୍ରତିଭାର ଗୋଟିଏ ଗୋଟିଏ ଦିଗ । କବି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅର୍ଥାତ 'ଜଟାୟୁ' ଠାରୁ 'ପରିକ୍ରମା' ପର୍ଯ୍ୟନ୍ତ ବିଭିନ୍ନ କବିତାରେ ପ୍ରକୃତିର ନାନା ଭାବୋଦ୍ଦୀପକ ଚିତ୍ର, ମୂଲ୍ୟବାନ ରୂପକଳ୍ପ ଓ ଉପଯୁକ୍ତ ଆଙ୍ଗିକର ପ୍ରୟୋଗ କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ଚିନ୍ତାଧାରାକୁ ବେଦ ଓ ଉପନିଷଦର ନୀତିବାଣୀ ସହିତ ସମନ୍ୱିତ କରିବାରେ ସଫଳକାମ ହୋଇଛନ୍ତି । ତାହା 'ଓଁ ତତ୍‌ସତ୍' । 'ଜ୍ଞାନାଞ୍ଜନ', 'ପରିକ୍ରମା' ପ୍ରଭୃତି କବିତାରେ ସୁସ୍ପଷ୍ଟ ।

ପୁସ୍ତକରେ ସନ୍ନିବିଷ୍ଟ ଜଟାୟୁ, ଲେନିନ୍, ଘଣ୍ଟା, ପଦ୍ମତୋଳା, ଦେବବାଣୀ, ଶ୍ରୀମଦ୍ ଭାଗବତ, ପତାକା, ରାହୁଗ୍ରାସ, ନାଗଭୂଷଣ, ଅନ୍ଧଗଳର ଗାଥା, ସୂର୍ଯ୍ୟୋଦୟ, ବ୍ୟାଘ୍ରୋକ୍ତି, ଆବାହନୀ, କାରାଗାର ଓ ନରନାରାୟଣ ପ୍ରଭୃତି କବିତାଗୁଡ଼ିକ ସାମ୍ୟବାଦୀ ଚିନ୍ତାଧାରର ବ୍ୟାପକ ଅବତାରଣାରେ ଉଦ୍ଦିଷ୍ଟ ମନ୍ତ୍ର । ଉଦାହରଣ ସ୍ୱରୂପ, ପଦ୍ମତୋଳାରେ– 'ରକ୍ତରଙ୍ଗା ଶକ୍ତିପାଦେ ନାଚିବ ସେ ରଚିବ ତାଣ୍ଡବ / ଦୁଷ୍କୃତିର ପରାଜୟ ଦୁର୍ଜୟର ଧ୍ରୁବ ପରାଭବ / ସୃଜିବ ବିସ୍ମୟ / ସେ ଜନ୍ମିବ, ସେ ଆସିବ, ସେ ନାଚିବ / ନିଶ୍ଚୟ ନିଶ୍ଚୟ' (ପୃଷ୍ଠା – ୧୮) କିମ୍ବା 'ଶ୍ରୀମଦ୍ ଭାଗବତ'ରେ ଅକଲ୍ୟାଣ ହେଆଇନ୍ / ସେ ନବକାତକ / ବାସୁକୀର ଫଣାତଳେ ବଢ଼େ ତା'ର ଜୀବନ ଫଳକ / ଝଡ଼ଠାରୁ ବଳି ସେହୁ / ମୃତ୍ୟୁ ତାକୁ ଗୁଡ଼ି ଦିଏ ବାଟ / କଂସର ବଇରି ବଢେ / ଗୋପ ପୁରେ / ଯଶୋଦାର ଗୃହ । ଦେବକୀ ମୁଁ / ମୁଁ ତ ଯୁଗପ୍ରସବିନୀ / ମୁଁ କୃଷ୍ଣ ଜନନୀ / ମୋ ରକ୍ତେ ଦେଖ ଲାଲ ହୁଏ ପାଣି ଯମୁନାର / ହୋସିୟାର, ହୋସିୟାର ··· (ପୃ ୨୪-୨୫) ଅଥବା 'ସୂର୍ଯ୍ୟୋଦୟ'ରେ ''ଉଠରେ ଉଠ ଶୋଇଚ ଯିଏ / ··· ଲାଲ ଟହ ଟହ ସୂର୍ଯ୍ୟ ଉଏଁ / ଶୌର୍ଯ୍ୟ ଭରା ସୂର୍ଯ୍ୟ ସିଏ / ବୀର୍ଯ୍ୟ ଭରା ସୂର୍ଯ୍ୟ ସିଏ / ଆଗାମୀ ଦିନ ଇଶାରା ଦିଏ'' ··· ( ପୃଃ ୯୦ ) ପ୍ରଭୃତି ।

ସେହିଭଳି ଆଧ୍ୟାତ୍ମବାଦ ଓ ମାନବବାଦର ସ୍ୱର ବହନ କରି ରଚିତ କବିତାଗୁଡ଼ିକ ମଧ୍ୟରେ ସଂସାରୋଽସ୍ମି, ସୋଽହଂ, ବାତ୍ସାୟନ, ଦୀପଟିଏ ଜାଳ, ପରିକ୍ରମା ପ୍ରଭୃତି ଅନ୍ୟତମ । କବି ସାମ୍ୟବାଦର ଜୟଗାନ ଭିତରେ ମୁହ୍ୟମାନ ହୋଇଯାଇଥିଲେ ବି ବିଲୀନ ହୋଇଯାଇ ନାହାନ୍ତି । ସେ ଭାରତୀୟ ସଂସ୍କୃତିର ପରମ୍ପରା ତଥା ମହନୀୟତାରେ ଅଭିଭୂତ ମାତ୍ର । ଯଥା :

"ହୃତଜ୍ଞାନ ଆପଣାକୁ କେନ୍ଦ୍ର କରି ଗର୍ଜେ ଅହମିକା / ବିସ୍ମରିଛୁ ସୃଷ୍ଟି ନିସ୍ୱା ଅନାଦିରୁ ଅନନ୍ତ ଭୂମିକା / ଆସକ୍ତି ବିଷୟେ / ଦିବ୍ୟଦୃଷ୍ଟି ଜ୍ଞାନବହ୍ନି ଆହେ / ସ୍ଥୂଳର ପରଳ ଭେଦ ଅନ୍ତରେ ତା' ଆତ୍ମଚେତନାର / ଦୀପଟିଏ ଜାଳ" (ଦୀପଟିଏ ଜାଳ ପୃ ୬୦) କିମ୍ବା "ମୁଁ ଏକଆତ୍ମା / ଦେହ ମୋର କାରାଗାର / ମୋ ମଧ୍ୟରେ ବିରାଜେ / ସେହି ସେ ଯେ ନିରାକାର / ( ସୋଽହଂ-- ପୃ: ୬୨ )

ଆଖ୍ୟାୟିକା ଓ ମିଥ୍‌ଗୁଡ଼ିକୁ ଆଲେଖ୍ୟ କରି ସାମ୍ପ୍ରତିକ ସମାଜରେ ଜାଲ ମେଲିଥିବା ସମସ୍ୟାଗୁଡ଼ିକୁ ଚିତ୍ରଣ କରିବାରେ ଜଟାୟୁ, ପଦ୍ମତୋଳା, ଦେବବାଣୀ, ଶ୍ରୀମଦ୍ ଭାଗବତ, ମୃନ୍ମୟୀ ସ୍ତୁତି, ଓଁ ତତ୍ସତ୍ ଏବଂ ବାସୁକୀ ପ୍ରଭୃତି କବିତା ଉତ୍ତରଣ ଲାଭ କରିଅଛି । ଏ ସମ୍ବନ୍ଧରେ 'ବାସୁକୀ'ରେ "ଜୀବନର ଧାରାବାହେ ଅବିରତ / ଘାତ ପ୍ରତିଘାତେ / ଅସମ୍ପୂର୍ଣ୍ଣ ସେ ନାଟକ / ପରିପୂର୍ଣ୍ଣ ନାନା ପ୍ରଶ୍ନ, ନାନାରଙ୍ଗ / ହର୍ଷ ଓ ବିଷାଦେ / ବାସୁକୀ ତା' ଫଣାପରେ ନେଇଅଛି ସଂସାରର ଭାର / ଯେ ବାସୁକୀ ସେହି ମହାକାଳ /" ( ପୃ: ୧୧୫ ) ଅଥବା 'ମୃନ୍ମୟୀ ସ୍ତୁତି'ରେ ରୁଦ୍ଧ ତ ସେ ହରିଣୀ ଜନତା / ବାକ୍ୟେ ତାର ନଷ୍ଟ ରହି ହୃଦୟର ବ୍ୟଥା / ଚୋଟେ ତ ଛୁଟିଛି ବ୍ୟାଧ ଦଗଦଗ ଘୋଡ଼ା / ସେଇ ରକ୍ତ ମାଂସ ହାଡ଼େ ତାର ସୌଦାଗରି" ( ପୃ: ୪୨ ) କୁ ଉଦାହରଣ ଦିଆଯାଇପାରେ ।

ସାମାଜିକ ଓ ରାଜନୈତିକ ଚେତନାର ସ୍ୱର ବହନ କରିଥିବା କବିତାଗୁଡ଼ିକ ମଧ୍ୟରେ ପୁନର୍ବୃତ୍ତି, ପଦ୍ମତୋଳା, ଊର୍ଣ୍ଣନାଭ, ରାହୁଗ୍ରାସ, ଜ୍ଞାନାଞ୍ଜନ, କବନ୍ଧର କବିତା, ଅନ୍ଧ ଗଳିର ଗାଥା, ଆହ୍ୱାନ, କପୋତାକ୍ଷୀ ଡାକୁଛି, ମାନଚିତ୍ର ଜନତାର, ପରିଆଦ, ପ୍ରବଞ୍ଚନା, ବାସୁକୀ ପ୍ରଭୃତି କବିତା ପାଠକର ଅନ୍ତଃସ୍ଥଳକୁ ସ୍ପର୍ଶ କରେ । ମହର୍ଷି ବାଲ୍ମିକୀଙ୍କର ଆଦିମତମ ସମ୍ବେଦନା ଭଳି ପ୍ରତିଟି କବିତାରେ ନିଷାଦର କୁକର୍ମର ବ୍ୟଞ୍ଜନା, ହତାହତ ଅସଂଖ୍ୟ ନିରୀହର ଯାତନା ଏବଂ ପରିଶେଷରେ ଅଭିଶାପର ଅଗ୍ନିରେ ଅହଂକାରୀର ପତନ— ଏହି କବିତାଗୁଡ଼ିକରେ ସ୍ପଷ୍ଟ । ପ୍ରତ୍ୟେକଟିରେ ନୂତନ ଏକ ରାମରାଜ୍ୟର ରଚନା ପାଇଁ ସଂକଳ୍ପ ନିହିତ । ଯଥା :—

'ସୂର୍ଯ୍ୟ ହେବ ରାହୁମୁକ୍ତ × × / ପୁଣି ସଦ୍ୟସ୍ନାତ ଧରିତ୍ରୀର ପବିତ୍ର ମାଟିରେ / ଫୁଟିବ ଫୁଲର ଆଖି × × / ମାନବର ଝରଣା ପୁଣି ଛୁଟିବରେ ଆଶାସିକ୍ତ ପ୍ରାଣ / କଳକଳ ନାଦେ ପୁଣି ରଙ୍ଗମଞ୍ଚ ହେବ ଉଦ୍‌ଭାସିତ / ଆଲୋକର ସପ୍ତବର୍ଣ୍ଣ / ଏହା ସତ୍ୟ, ସିତ ଏକାନ୍ତ ନିଶ୍ଚିତ / ସୂର୍ଯ୍ୟ ହେବ ରାହୁମୁକ୍ତ ।' (ରାହୁଗ୍ରାସ - ପୃ ୫୨)

ସର୍ବୋଚ୍ଚଭାବେ କବିତାଗୁଡ଼ିକ ଉପରେ ବିହଙ୍ଗମ ଦୃଷ୍ଟି ନିକ୍ଷେପ କଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ କବି ଭାଷା ଓ ଭାବ ଉପରେ ଗୁରୁତ୍ୱ ଆରୋପ କରିବାକୁ ବିସ୍ମରି ଯାଇ ନାହାନ୍ତି । ବାକ୍ ଏବଂ ଅର୍ଥ ଏଇ ଦୁଇଟିର ସଫଳ ରୂପାୟନରେ କବିତାର ସାର୍ଥକତା । ପ୍ରକାଶ ଭଙ୍ଗୀର ସ୍ୱାତନ୍ତ୍ର୍ୟତା ସୃଷ୍ଟିକୁ ମହନୀୟ କରେ । କବିଙ୍କ ଭାଷାରେ 'ଦୂଷିତ ବା ଖଣ୍ଡିତ ବାକ୍‌ର ଅବଲମ୍ବନରେ ଆଡ଼ମ୍ବର ପୂର୍ଣ୍ଣ ଭାଷା ଓ ଛନ୍ଦବଳ ରୂପ ପ୍ରୟୋଗ କରି ସାହିତ୍ୟ ସୃଷ୍ଟି କରିବା, ଦୁଷ୍ଟା ନାୟିକାକୁ ବେଶଭୂଷା କରି ସର୍ବ ସମକ୍ଷରେ ସାଧ୍ୱୀ ବୋଲି ପରିଚିତ କରିବା ସଙ୍ଗେ ତୁଳନୀୟ ।' ତାଙ୍କ ମତରେ 'ପାପପୁଣ୍ୟ, କର୍ମାକର୍ମର ଚରମ ପରିଣତି ପ୍ରକଟ କରୁଥିବା ଗଳ୍ପ ଉପନ୍ୟାସ, ଚିତ୍ତକୁ ଉଦାର କରି ତୋଳୁଥିବା ସ୍ତବ, ଅସ୍ଥିର ମନକୁ ସ୍ଥିର ନିଶ୍ଚିତ କରୁଥିବା ମିଠ ବାକ୍ୟପୂର୍ଣ୍ଣ ସରସ କାହାଣୀ— ଏସବୁ ମାଧ୍ୟମରେ ସତ୍ୟର ସିଂହଦ୍ୱାର ଉଦ୍‌ଘାଟିତ ହୁଏ । ଶ୍ରେୟ ଓ ପ୍ରେୟର ଅନୁଭୂତି ଲାଭକରି ବ୍ୟକ୍ତି ତାର ଚରମ ଉପାସ୍ୟର ନିକଟତମ ହୁଏ । ସେ ବିଶ୍ୱ ସହିତ ନିବିଡ଼ ବନ୍ଧନରେ ବାନ୍ଧି ହୋଇଯାଏ, ପରମକୁ ନିଜ ମଧ୍ୟରେ ଖୋଜି ପାଏ ସୋଽହଂ'' । କବିଙ୍କର ଉକ୍ତ ଚିନ୍ତାଧାରା ସାର୍ଥକ ଭାବେ ତାଙ୍କ କବିତାରେ ପ୍ରତିଫଳିତ ହୋଇଛି ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ସେଇଥିପାଇଁ ବୋଧହୁଏ ସେ ଭାରତୀୟ ସଂସ୍କୃତିର ବର୍ଣ୍ଣାଢ୍ୟ ଭିତ୍ତିଭୂମି ଉପରେ ସାମ୍ୟବାଦର ତୋରଣ ନିର୍ମାଣ କରିବାକୁ ପ୍ରୟାସ କରିଛନ୍ତି ।

କବିଙ୍କର ସାମ୍ୟବାଦୀ ଚିନ୍ତାଧାରା ଓ ଚେତନାରେ ଅବକ୍ଷୟର ଚିହ୍ନ ସ୍ପଷ୍ଟ ହୋଇ ଉଠିଛି କେତୋଟି କବିତାରେ । ସେ ଯେମିତି ଦୋହଲି ଉଠିଛନ୍ତି ··· ଚହଲି ଯାଇଛନ୍ତି । ଯାହା ନିତ୍ୟ, ସନାତନ ଓ ଶାଶ୍ୱତ ତାକୁ ଯେମିତି ସାମ୍ୟବାଦର କୁଠାରାଘାତ ସ୍ପର୍ଶ କରିପାରେ ନାହିଁ । ଏହା ପ୍ରତିପନ୍ନ ହୋଇଛି 'ଓଁ ତତ୍ ସତ୍' କବିତାରେ । କବି ଅନନ୍ତର କୋଳରେ ହଜିଯାଇଛନ୍ତି । 'ଅନନ୍ତ କୋଳେ ହଜିଯାଏ ମୋ ନିଜତ୍ୱ / ମୁଁହି ନାହିଁ ଆଉ / ସୀମାହୀନ ଜଳରାଶି-ମହାସିନ୍ଧୁ / ହେଉ ସେ'ତ / ସେ'ତ ମହାବାହୁ / ଶୁଭେ ଖାଲି ଗମ୍ଭୀର ନିର୍ଘୋଷ / ଆମ୍ଭର ନିର୍ଦ୍ଦେଶ / ମାମେକଂ ଶରଣଂ ବ୍ରଜ / ବିନାଶେନ ମୃତ୍ୟୁଂତୀର୍ତ୍ୱା ସମ୍ଭୂତ୍ୟାମୃତ ମଶ୍ନୁତେ' । (ଓଁ ତତ୍ ସତ୍, ପୃ - ୬୮) ଏଠାରେ ବ୍ୟକ୍ତିର ବିଶ୍ୱାସ କବିର ଭାବାବେଗରେ ପରାସ୍ତ ହୋଇଛି ।

ଫଳରେ କବି ସମାଧାନର ମାର୍ଗ ଖୋଜି ପାଇନାହାନ୍ତି । ତାଙ୍କ ଭାଷାରେ 'ଦିଗନ୍ତ ନୈରାଶ୍ୟରେ ମୁଁ କାତର ହୋଇ ଯାଇଛି' । ତଥାପି ତାଙ୍କର ସାମ୍ୟବାଦୀ ଆଦର୍ଶ ସମ୍ପୂର୍ଣ୍ଣ ମଳିନ ହୋଇ ଯାଇନାହିଁ । ଏଷ୍ଟାବ୍ଲିଶମେଣ୍ଟର ବାବଦୁକମାନଙ୍କ ପ୍ରତି କଟାକ୍ଷ କରିବାରେ ସେ ଦ୍ୱିଗୁଣ ଉତ୍ସାହରେ ଉତ୍ତାନପାଦ ହୋଇଛନ୍ତି ।

କବିତା ଗୁଡ଼ିକର ସାମଗ୍ରିକ ମୂଲ୍ୟାଙ୍କନ କରି ସାରିଲା ପରେ ମୋର ହୃଦ୍‌ବୋଧ ହୋଇଛି ଯେ କବିଙ୍କର 'ମହା ନାଟକ' କବିତାଟି ସର୍ବଶ୍ରେଷ୍ଠ କୃତି । ଏହି କବିତାଟିରେ

'ଓ୍ୱେଷ୍ଟଲ୍ୟାଣ୍ଡ' ଏବଂ 'ହାଲପୁରୁଷ' ପରି ଉଦ୍ଭଟ ଚେତନାର ସ୍ୱର । • ତହିଁରେ ଏହି ଶତାବ୍ଦୀର ସାମାଜିକ ସଙ୍କଟ, ଅନ୍ତର୍ଦ୍ୱନ୍ଦ୍ୱ, ଅନିଶ୍ଚୟ ଏବଂ ଜୀବନଯନ୍ତ୍ରଣା ଜୀବନ୍ତ । ମନ୍ତ୍ରାପ୍ଳୁତ ଏକ ଆବେଗମୟୀ କବିତାରେ ବିବର୍ତ୍ତନର ବର୍ଣ୍ଣନା, ସୃଷ୍ଟିର ସଂଳାପ, ସାମାଜିକ ଦୃଷ୍ଟିର ଚିତ୍ର, ଯୁଗଯୁଗର ବିକୃତ ଚିନ୍ତା-ନିବୃତ୍ତିର ଉପଗ୍ରହ, ମେହୁଭାବର ଆବାହନୀ, କରୁଣାର କୋମଳତା, ମୁକ୍ତିର ଜୟଗୀତ, ସାମ୍ୟମୈତ୍ରୀ ଓ ଭ୍ରାତୃତ୍ୱର ସ୍ୱରଲିପି, ସର୍ବହରାର ବୈଜୟନ୍ତୀ, ସାମ୍ରାଜ୍ୟବାଦର ସଂହାର ନୀତି ଓ ପତିତର ଉଦ୍‌ବର୍ତ୍ତନ ସହିତ ଆର୍ଯ୍ୟସନାତନ ଚେତନାର ସେହି ଆଦିମ ଆହ୍ୱାନ 'ପରମୋଚ୍ଚ ପ୍ରେମ ମର୍ତ୍ତ୍ୟ, ନିତ୍ୟ ତ୍ୱମେବ କେବଳମ୍'ର ଉଦ୍‌ଘୋଷଣ ଯେପରି ଚମତ୍କାର ଶୈଳୀ, ରୁଚିପୂର୍ଣ୍ଣ ବ୍ୟଞ୍ଜନ ଓ ପରିପ୍ଳୁତ ପ୍ରାଣମୟତାରେ ବ୍ୟଞ୍ଜିତ ହୋଇଅଛି — ତାହା ପ୍ରତ୍ୟେକ ପାଠକଙ୍କୁ ଯେ ନିଶ୍ଚୟ ବିମୋହିତ କରିବ, ଏହା ନିଃସନ୍ଦେହ ।

ନାମକରଣ ଦୃଷ୍ଟିରୁ ଦେଖିଲେ 'ପୁନଶ୍ଚ' ଏକ ସାର୍ଥକ ଶିରୋନାମା । କବି ଯେମିତି ଆଶାବାନ ଯେ ପୁଣିଥରେ ସେ ଏହି ଦୁର୍ଗନ୍ଧ ସମାଜକୁ ଅବଲୋକନ କରିବେ ସ୍ୱସ୍ଥ ସମ୍ପୂର୍ଣ୍ଣ ରୂପରେ, ଅତୀତ ଭୂୟସୀ ସଂସ୍କୃତିର ଉପଯୁକ୍ତ ଦାୟାଦ ଭାବରେ । ଏହି ବିଶ୍ୱାସ··· ଏହି ଆଶାବାଦ ନେଇ ସେ ବିଶ୍ୱନିୟନ୍ତାଙ୍କଠାରେ ପ୍ରଣତି ବାଢ଼ିଛନ୍ତି— 'ପ୍ରଭୁ ତୁମେ ବୁଡ଼ିଗଲ ଅତଳ ସାଗରେ / ଉଭାଗଲ ଏ ଧରଣୀ ବକ୍ଷର ଉପରେ / × ଦେଖା ଯେବେ ଫିଙ୍ଗିଦେଇ ସ୍ଥୂଳ ଅଧିବାସ / ଦେହର ବିନାଶେ ସାଧେ ସ୍ୱରୂପ ପ୍ରକାଶ / × ସତ୍ୟଶିବ ସୁନ୍ଦରର ଅଭ୍ରାନ୍ତ ଇସାରା / ସ୍ରଷ୍ଟା ! ହେ ଅର୍କଦେବତା / ତୁମ ପଦେ ସ୍ୱତଃ ନତ ହୋଇଯାଏ ମଥା ।' ('ପରିକ୍ରମା' ପୃ - ୧୨୨-୧୨୩)

ଉପୋଦ୍‌ଘାତରେ ପ୍ରକାଶିକା ରଶ୍ମିତା ଦାସଙ୍କର 'ହରବାଣୀ' ଓ କବିଙ୍କର ଆତ୍ମ ଅଭିବ୍ୟକ୍ତି 'ମୁଁ ଚାଲି ଚାଲିଛି ଯାହା' କବିତାଗୁଡ଼ିକର ସାମଗ୍ରିକ ଦୃଷ୍ଟିଭଙ୍ଗୀ ଓ କବି ପ୍ରାଣର ବିଚକ୍ଷଣତାକୁ ପାଠକ ନିକଟରେ ଉନ୍ମୋଚିତ କରି ଦେବାରେ ଯଥେଷ୍ଟ ସହାୟକ ହୋଇଅଛି ।

□□

# ସଂଗ୍ରାମୀ କବି ରଘୁନାଥ

## ରେଖା ମହାନ୍ତି

ଘଟଣାର ସାମ୍ରାଜ୍ୟରୁ ଇତିହାସର ସୃଷ୍ଟି । ସତ୍ୟ ଘଟଣା ଇତିହାସ ନାମରେ ଅଭିହିତ । ନିଚ୍ଛକ ସତ୍ୟ ଘଟଣା ହେଉଛି କବି ରଘୁନାଥ ଦାସଙ୍କ କବିତାର ଆଧାର । ସ୍ୱାଧୀନତା ପରେ ଭାରତର ସାମାଜିକ, ଅର୍ଥନୈତିକ, ରାଜନୈତିକ କ୍ଷେତ୍ରରେ ଯାହା ସବୁ ଘଟିଯାଇଛି ତାକୁ ଏକ ନିଃସ୍ୱାର୍ଥ ନିରପେକ୍ଷ ଦୃଷ୍ଟିରେ ତଉଲି ତାର ସତ୍ୟଭିତ୍ତିକ ଚିତ୍ର ଦେବାକୁ ସେ ଚେଷ୍ଟା କରିଛନ୍ତି । ତାଙ୍କର ପ୍ରତ୍ୟେକ କବିତା କବି ମନର କଳ୍ପନା ରସରେ ଜାରିତ ନୁହେଁ, ବାସ୍ତବ ଅନୁଭୂତିର ତୀକ୍ଷ୍ଣ ବେଦନାବୋଧରେ ଶାଣିତ ।

ଭାରତର ସ୍ୱାଧୀନତା ସଂଗ୍ରାମରେ କବି ଥିଲେ ଜଣେ ଲଢ଼ୁଆ ସୈନିକ । ଉଜ୍ଜ୍ୱଳ ପ୍ରତିଶ୍ରୁତିମୟ ଭବିଷ୍ୟତକୁ ଅନିଶ୍ଚିତତାର ହାତରେ ଫିଙ୍ଗି ଦେଇ ସେ ଆଗେଇ ଆସିଥିଲେ ଭାରତମାତାକୁ ଶୃଙ୍ଖଳମୁକ୍ତ କରିବାକୁ । ଏହିପରି ସ୍ୱାର୍ଥତ୍ୟାଗୀ ଦେଶପ୍ରେମୀ ବୀରମାନଙ୍କର ସମ୍ମିଳିତ ପ୍ରଚେଷ୍ଟାରେ ଭାରତ ଭୂଇଁରେ ସ୍ୱାଧୀନତାର ସୂର୍ଯ୍ୟ ଉଇଁଲେ । କିନ୍ତୁ ବିଦେଶୀ ଶାସକର କ୍ଷମତା ଲିପ୍ସୁ ମାନସିକତାର ଆତ୍ମାହୁତି ଲବ୍ଧ ସ୍ୱାଧୀନ ଭାରତର ଶାସକଗୋଷ୍ଠୀର ସବୁ ଉଜ୍ଜ୍ୱଳ ଶପଥକୁ ବିକଳାଙ୍ଗ କରିଦେଲା । କ୍ଷମତାର ମୋହ ରାମରାଜ୍ୟ ଓ ସାମ୍ୟବାଦର ସ୍ୱପ୍ନକୁ ବିବର୍ଣ୍ଣ କରିଦେଲା । ସ୍ୱାଧୀନତାର ପ୍ରଥମ ପ୍ରହରରେ କବିଙ୍କର ବୁଦ୍ଧିଦୀପ୍ତ ଚେତନା ଏହି ଆଶଙ୍କାକୁ କବଳିତ କରିଥିଲା । କ୍ରାନ୍ତଦର୍ଶିତାର ଅତି ନିର୍ଭରଶୀଳ ବକ୍ତବ୍ୟଟି ଆମର ଦ୍ରଷ୍ଟବ୍ୟ—

"ଯାତ୍ରୀ ସାବଧାନ !

ତୋର ଏହି ଯାତ୍ରାପଥେ ନୁହେଁ ଏ ଯେ ଅନ୍ତିମ ସୋପାନ

ସଂଗ୍ରାମ ତୋ ସରିନି ଏବେ ବି"—

କବି ଆଗାମୀ କାଳର ଦ୍ରଷ୍ଟା । ସେ ମୁକ୍ତିର ନିଃଶ୍ୱାସକୁ ପ୍ରାଣଭରି ଗ୍ରହଣ କରି ପରିତୃପ୍ତ, କିନ୍ତୁ ନିଦ୍ରିତ ନୁହେଁ ; ସଦା ଜାଗ୍ରତ । ସେଥିପାଇଁ ଜାଗ୍ରତ ଜନତା ମେଳରେ ଆଗେଇବା ପାଇଁ ତା'ର ଆହ୍ୱାନ । କବିଙ୍କର ଏହି ଦୂରଦର୍ଶିତା ଯଦି ସେଦିନର ଭାରତୀୟ ଜନତା ଯଥାର୍ଥ ସମ୍ମାନ ସହକାରେ ହୃଦୟଙ୍ଗମ କରିଥାନ୍ତେ, ତେବେ ଆଜିର ଭାରତ ତାର ଲକ୍ଷ୍ୟପଥରେ ଅନେକଦୂର ଆଗେଇ ଯାଇ ପାରିଥାଆନ୍ତା ।

କବିଙ୍କର 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ଗୁଚ୍ଛଟି ପଢ଼ିଲେ ମନେହେବ ପରାଧୀନତାର ଗ୍ଲାନି ଓ ଅପମାନରେ ଜର୍ଜରିତ କବି ପ୍ରାଣ ମୁକ୍ତିର ସ୍ୱାଦ ଅନୁଭବ କରି ରୋମାଞ୍ଚିତ ହୋଇ ଉଠିଛି । ମୁକ୍ତପ୍ରାଣର ଆନନ୍ଦ ଦ୍ରୁତ ବେଗରେ ସଞ୍ଚରି ଯାଇଛି । କବିର ଆତ୍ମା-ପୁରୁଷ ଯୁଆଡ଼େ ଚାହିଁଛି ସବୁ ଭଲ ଲାଗିଛି— ସବୁ । ଜୀବନ-ଅଭିଜ୍ଞ କବି କହିଛନ୍ତି— ହରିଗିକର ବି ଯଦି ମାଟି ଉପରେ କେହି ସତ୍ୟର ବୀଜ ବୁଣିଦିଏ, ତା' କେବେ ନଷ୍ଟ ହୁଏନାହିଁ, ସେଥିରୁ କୋଟି କୋଟି ସତ୍ୟବୃକ୍ଷ ଜନ୍ମ ନିଏ । ସତ୍ୟ ଆଉ ନ୍ୟାୟ ପାଇଁ ଭାରତବାସୀ ଅହିଂସ ସଂଗ୍ରାମ କରିଥିଲେ । ଅସତ୍ୟ ଅନ୍ୟାୟର ପ୍ରତିବାଦ କରି ଜୀବନ ଉତ୍ସର୍ଗ କରିଗଲେ । ଏ ଦେଶର ଶହୀଦମାନଙ୍କ ଉଦ୍ଦେଶ୍ୟରେ କବି ତାଙ୍କର ଚରମ ପ୍ରୀତିପୂର୍ଣ୍ଣ ବକ୍ତବ୍ୟଟି ବାଢ଼ିଚନ୍ତି ଏକ ବିଶ୍ୱସ୍ତ ପ୍ରତିଲିପିରେ—

'ପୁଣି ଏ ସଂଗ୍ରାମେ ସୈନ୍ୟ ନାହିଁ ମରେ
ବର୍ଚ୍ଛା ଗୁଳି ବକ୍ଷେ ତାର, ସିଦ୍ଧ ସେ ଯେ କେ କରେ ବିଦ୍ଧ
ମରି ସେ ହୁଏ ଅମର, ସ୍ମୃତି ଦୀପ୍ତ, ସେ ହୁଏ ଶହୀଦ ।'

କୋଟିଏ ମୁକ୍ତ ସ୍ୱାଧୀନ ପ୍ରାଣର କି ଅସରନ୍ତି ଆଶା ଆଉ ବିଶ୍ୱାସଭରା ଆନନ୍ଦ—ଉଚ୍ଛଳ ଅଭିବ୍ୟକ୍ତି ? ୧୯୪୭ର ଅଗଷ୍ଟ ପନ୍ଦରକୁ କେତେ ଉଜ୍ଜ୍ୱଳ, କୋମଳ ମନ ନେଇ ସେ ସ୍ୱାଗତ କରିଛନ୍ତି । ଯେମିତି ସବୁ ନିଷ୍ଫଳତା ସଫଳ କରିଦେବ ଏ ସ୍ୱାଧୀନତା । ସବୁ ଅନ୍ଧକାରକୁ ଉଜାଳି କରିଦେବ ସ୍ୱାଧୀନ ମଣିଷର ଦୀପ୍ତ ନୟନ । ଉଷର ଭୂମିରେ ମଳୟର ସୁରଭି ଖେଳେଇ ଦେବ ସ୍ୱାଧୀନ ମଣିଷର ପ୍ରତିଟି ନିଃଶ୍ୱାସ । ସତ୍ୟ, ଶାନ୍ତି ପୂର୍ଣ୍ଣତାର ପ୍ରତିଷ୍ଠାରେ କବିର ସ୍ୱପ୍ନ ହେବ ସଫଳ । କିନ୍ତୁ ଭଲ ଲାଗିବାର, ବିଶ୍ୱାସର ପାଖୁଡ଼ା ଗୁଡ଼ିକ ଧୀରେ ଧୀରେ ଝରି ପଡ଼ୁଛି ଦୁରାଚାରୀର ବିଷବାଷ୍ପରେ । କଳ୍ପିତ ସମ୍ଭୃତ ବଞ୍ଚନାର ସେଇ ରୋମନ୍ଥିତ ଦୃଶ୍ୟରେ କବି ଅଣନିଃଶ୍ୱାସୀ ହୋଇ ପଡ଼ିଛନ୍ତି । ନିରଳସ ସଂଗ୍ରାମ ଆଉ ନିଃସ୍ୱାର୍ଥ ତ୍ୟାଗରେ ମନ୍ତ୍ରପୂତ ମଣିଷର ସବୁ ସଂଗ୍ରାମ, ସବୁ ତ୍ୟାଗ ବ୍ୟର୍ଥ ହୋଇଗଲା କ୍ଷମତାଲିପ୍ତ ମଣିଷର ସର୍ବଗ୍ରାସୀ ପ୍ରଲୋଭନରେ ।

ଅଗଷ୍ଟ ପନ୍ଦର—୧୯୪୮ରେ କବିଙ୍କର ସ୍ୱର ପରିବର୍ତ୍ତିତ । ସ୍ୱାଧୀନ ମଣିଷର ସ୍ୱପ୍ନ ଆଉ ବାସ୍ତବ ଭିତରେ ସଂଘର୍ଷ—ପରିଣାମରେ କବି-ଆତ୍ମାରେ ଦହନର ସ୍ୱାକ୍ଷର ଅତି ସ୍ପଷ୍ଟ । ବିକଳାଙ୍ଗ ଚିନ୍ତାଧାରା, ହୀନମନ୍ୟତା ଓ ଦାସତ୍ୱଭାବ ଦୂରୀଭୂତ କରି ଏକ ଜ୍ୱଳନ୍ତ ଜୀବନର ଜ୍ୟୋତି ଫୁଟାଇ ସମଗ୍ର ଜୀବନକୁ ମୁକ୍ତିର ମନ୍ତ୍ରରେ, ଚିନ୍ତାରେ ତଥା କାର୍ଯ୍ୟରେ ଦୀକ୍ଷିତ ହେବାକୁ କବି ଆହ୍ୱାନ ଦେଇଛନ୍ତି । ଦୁଃସ୍ୱପ୍ନକୁ ଦୁଇ ସବଳ ହାତରେ ଦୃଢ଼ ଭାବରେ ଦୂରେଇ ଦେଇ ସୁଖ-ଶାନ୍ତିପୂର୍ଣ୍ଣ, ହିଂସା-ଦ୍ୱେଷହୀନ, କର୍ମମୁଖର ବିଶୁଦ୍ଧ ଜୀବନର ସ୍ୱପ୍ନ ଦେଖିଛନ୍ତି । ଭାରତ ମୁକ୍ତି ଚାହିଁଥିଲା, ବୌଦ୍ଧିକ ଚିନ୍ତାରେ, ସାମାଜିକ ଶୃଙ୍ଖଳାରେ—

କେବଳ ରାଜନୈତିକ ମୁକ୍ତି ଚାହିଁନଥିଲା । ଚାଷୀ-ମୂଲିଆର ଜୀବନରୁ ହୀନମନ୍ୟତା, ଅଭାବ ଓ ଦାସତ୍ୱର ଆବର୍ଜନାକୁ ଧ୍ୱଂସ କରି ତାକୁ ଏକ ମର୍ଯ୍ୟାଦାବନ୍ତ ନାଗରିକର ସମ୍ମାନ ଓ ସ୍ୱୀକୃତି ଦେବାକୁ କବି ପ୍ରାଣ ବ୍ୟଗ୍ର ଉନ୍ମୁଖ ହୋଇପଡ଼ିଛି । କିନ୍ତୁ ଏସବୁ ଖାଲି ପୋଥିପତ୍ରରେ ରହିଗଲା । ସ୍ୱାର୍ଥକାମୀ ଅତ୍ୟାଚାରୀର ସିଂହାସନ ସୁରକ୍ଷିତ, ସାଧାରଣ ଜନତା ସେଇମିତି ଦରିଦ୍ର, ଅସହାୟ, କାକୁସ୍ଥ । ଅଗଷ୍ଟ ପନ୍ଦର — ୧୯୪୭, ୧୯୪୮, ୧୯୪୯ରେ ଭାରତର ମୁକ୍ତି ଆନ୍ଦୋଳନର ଇତିହାସ ଓ ତାର ପରବର୍ତ୍ତୀ ଚିତ୍ର ଅଙ୍କିତ । କବି ଚେତନାରେ ଶ୍ରମିକ, କୃଷକ ଓ ବଞ୍ଚିତମାନେ ହେଲେ ସ୍ୱାଧୀନତା ଆନ୍ଦୋଳନର ପ୍ରକୃତ ସୈନିକ । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ଏମାନେ ଅବହେଳିତ ହୋଇ ରହିଗଲେ । ଇତିହାସ ଏମାନଙ୍କୁ ସ୍ୱୀକୃତି ଦେଲନାହିଁ— ଏମାନଙ୍କ ତ୍ୟାଗର ମୂଲ୍ୟାଙ୍କନ ପାଇଁ କୌଣସି ପ୍ରୟାସ କରାଗଲା ନାହିଁ । ସଂଗ୍ରାମୀ କବି ଏଇମାନଙ୍କୁ ସ୍ୱକାଳର କଳଙ୍କ ଭିତରୁ ଉଦ୍ଧାର କରି ଭାବୀକାଳରେ ପ୍ରତିଷ୍ଠା କରିବାକୁ ଆନ୍ତରିକ ଭାବରେ ଚାହିଁଥିଲେ । ସେଇଥିପାଇଁ ତାଙ୍କ ଭାଷାରେ ପ୍ରଳୟର ଅଗ୍ନିକଣା—

"ଇଚ୍ଛା ହୁଏ
ଉଲ୍କା ସମ ଜାଳିବି ମୁଁ, ଜାଳିଦେବି ଯେତେ ଅମଙ୍ଗଳ
ନିଶ୍ଚିହ୍ନ କରିବି କ୍ଲୀବ, ମାରାତ୍ମକ ପଙ୍ଗପାଳ ଦଳ !"

କି ପ୍ରଚଣ୍ଡ ପୌରୁଷଦୀପ୍ତ ଶପଥନିଷ୍ଠ କାମନା ! ଏ ଇଚ୍ଛାର ମୃତ୍ୟୁ ନାହିଁ । ପ୍ରତ୍ୟେକ ଚାଷୀ ଶ୍ରମିକ ପାଇଁ କବି ପ୍ରାଣରେ ଉନ୍ମୁଖ ସମ୍ବେଦନଶୀଳତା, ଅସରନ୍ତି ମମତାର ସ୍ନେହସିକ୍ତ ଢେଉ ! ଶ୍ରମଜୀବୀ ମଣିଷ ସମ୍ଭ୍ରାନ୍ତ ସମ୍ମାନିତ ହେବାର ଅଙ୍ଗୀକାର ଫଳବତୀ ହେଲନାହିଁ । ଦୈନ୍ୟର କଷାଘାତରେ, ଅଭାବର ପୀଡ଼ନରେ ଅକାଳରେ ବୃନ୍ତଚ୍ୟୁତ ଯେଉଁ ଶ୍ରାନ୍ତ ମଣିଷଟିକୁ ଦେଖି—

"ପ୍ରାଣ ମୋର ଦଗ୍‌ଧ ହୁଏ କ୍ଷୋଭ ଭରେ, ଉତ୍ତପ୍ତ ରାଗେ ।"

କବି ସାଜବାର ମୋହ ଅପେକ୍ଷା ଅନ୍ତର ନିଗିଡ଼ା କୋହ ଉଦ୍‌ଗୀରଣ କରିବାର ଇଚ୍ଛା ଏଠି ଅନିବାର୍ଯ୍ୟ । ଜମିଦାର, ପୁଞ୍ଜିପତି, ମୁନାଫାଖୋର ବ୍ୟକ୍ତିଙ୍କ ସ୍ଥାନ ତ ବାନ୍ତ ବିଦେଶୀର ନିଷ୍ଠୁର ଶାସନଠାରୁ କିଛି ମାତ୍ର ଭିନ୍ନ ନୁହେଁ । ତେଣୁ କବିଦୃଷ୍ଟିରେ ଏ ସ୍ୱାଧୀନତା ଜନତାର ସ୍ୱାଧୀନତା ନୁହେଁ— ଦାଆ ଓ ହାତୁଡ଼ିର ପ୍ରାଣଚଞ୍ଚଳ ମଧୁର ଝଙ୍କାର ନୁହେଁ । ତଥାପି କବିଙ୍କର ବିଶ୍ୱାସ ମଉଳି ନାହିଁ । ବିଶ୍ୱାସର ପ୍ରଚଣ୍ଡ ରୌଦ୍ର ତେଜରେ କବି ଜ୍ୟୋତିଷ୍ମାନ ହୋଇ ମୁକ୍ତି ଜନତାକୁ ସତ୍ୟର ମହାର୍ଘ ପଥର ସନ୍ଧାନ ଦେଇଛନ୍ତି— 'ସୃଷ୍ଟିର କଲ୍ୟାଣ'ର ଜନ୍ମ ଅବଶ୍ୟମ୍ଭାବୀ । ଗଭୀର ଅନ୍ଧକାର ଭିତରେ ସତ୍ୟର ତଡ଼ିତ୍ ହେବ ପଥ ପ୍ରଦର୍ଶକ । ଅବହେଳିତ ଜନତାର ସମ୍ମିଳିତ ଶକ୍ତି ସଙ୍କଳ୍ପବଦ୍ଧ ହୋଇ

ଜ୍ୱଳନ୍ତ ଜୀବନର ନେତୃତ୍ୱ ବିଚ୍ଛୁରଣ କରିବ । ସେ ନିଜେ ହେବ ତାର ମୁକ୍ତିର ମନ୍ତ୍ର ଆବାହକ । ସାମ୍ୟବାଦର ପ୍ରତିଷ୍ଠା ପାଇଁ କବି ନେଇଛି ମରଣ ଶପଥ । ତାଙ୍କର ଅଗ୍ନି ସ୍ନାତ ଲେଖନୀ ଜାଗୃତିର ଝଙ୍କାର ତୋଳିଛି ।

'ପଦଧ୍ୱନି', 'ମୃତ୍ୟୁଞ୍ଜୟ', 'କୋରିଆ' ପ୍ରଭୃତି କବିତାରେ ସାମ୍ରାଜ୍ୟବାଦୀ ବିଷାକ୍ତ ମନୋଭାବ ପ୍ରତି କବିଆତ୍ମାର ବିଦ୍ୱେଷ ଫେନାୟିତ ହୋଇ ଉଠିଛି । କବି ମନ-ପ୍ରାଣରେ ସାମ୍ୟବାଦୀ । ସବୁ ମଣିଷକୁ ବଞ୍ଚିବାର ସମାନ ଅଧିକାର ଦେବା ପାଇଁ ସେ ଯେମିତି ତାଙ୍କର ଉଦାର କବି ହୃଦୟକୁ ଅଜାଡ଼ି ଦେଇଛନ୍ତି । ଅତ୍ୟାଚାରିତ ମୃତ୍ୟୁଞ୍ଜୟୀ । ତାର କବଳରୁ ଅତ୍ୟାଚାରୀର ମୁକ୍ତି ନାହିଁ – ଏଇ ଆତ୍ମବିଶ୍ୱାସ ସାଙ୍ଗକୁ ପ୍ରତ୍ୟେକ କବିତାରେ ଛନ୍ଦ ବିନ୍ୟାସ ଓ କଠୋର ପ୍ରାଣର ଭାଷା ପାଠକହୃଦୟରେ ଉଷ୍ମ ଉତ୍ତାପ ସୃଷ୍ଟି କରେ ।

ସ୍ୱାଧୀନତା ଆନ୍ଦୋଳନର ବିଶାଳ ଚିତ୍ରପଟଟି ଫୁଟି ଉଠିଛି କବିର କାବ୍ୟଶିଳ୍ପରେ । ଅତି ଯତ୍ନରେ ସେ ଗୁନ୍ଥି ଦେଇଛନ୍ତି ଅତୀତର ଦୀର୍ଘ ଇତିହାସର ମର୍ମଗାଥା ।

ସତ୍ୟଗୁରିଣ୍ଟି ସାହିତ୍ୟକୁ କାଳଜୟୀ ମର୍ଯ୍ୟାଦା ଦାନ କରେ । ମନକୁ ନିଃସଙ୍କୋଚରେ ଅଭିବ୍ୟକ୍ତ କରିବାର ସତ୍ସାହସ ସବୁ କବିର ନାହିଁ । ତାଛଡ଼ା **Every poet must bite off as much life as he can chew** – ସତ୍ ଶିଳ୍ପୀର ଏଇ ଧର୍ମ ବିଶ୍ୱସ୍ତ ଭାବରେ 'ପୂନଶ୍ଚ'ରେ ଅନୁସୃତ । ତେବେ କବିର ଦୃଷ୍ଟିଭଙ୍ଗୀ ଜୀବନର ଏକ ନିର୍ଦ୍ଦିଷ୍ଟ ଦିଗ ପ୍ରତି ପ୍ରସାରିତ । 'ପୂନଶ୍ଚ'ରେ ସଂକଳିତ କବିତାଗୁଡ଼ିକରେ ଏକ ସ୍ୱାଧୀନଚେତା ନିର୍ଭୀକ ଆତ୍ମାର ସ୍ୱର ଉଚ୍ଚାରିତ—

"ମୁଁ ରହିବ ଯୁଗେ ଯୁଗେ ଯୁଯୁତ୍ସୁର ଜ୍ୱଳନ୍ତ ପ୍ରେରଣା" (ଜଟାୟୁ)

କବିଙ୍କର ସଂଗ୍ରାମୀ ଆତ୍ମାର ଆଦର୍ଶ ହେଉଛି ଜଟାୟୁ ପକ୍ଷୀ । ପୁରାଣ ପୃଷ୍ଠାରେ ରାବଣ ପରି ଦୁର୍ଦ୍ଦାନ୍ତ ବୀର ବିରୋଧରେ ସାମାନ୍ୟ ଶକ୍ତି ବିଶିଷ୍ଟ ପକ୍ଷୀଟିଏ ଏକାକୀ ଯୁଦ୍ଧ କରିଥିଲା— ସତ୍ୟ ଆଉ ନ୍ୟାୟ ପାଇଁ । କବି ନିଜକୁ ଚିହ୍ନିତ କରିଛନ୍ତି ଜଟାୟୁ ସହିତ । 'ଜଟାୟୁ' ଛଦ୍ମନାମଟି ସେ ବାଛି ନେଇଥିଲେ ନିଜ ପାଇଁ । କବିଙ୍କର କାବ୍ୟପୁରୁଷକୁ ଚିହ୍ନାଇଦେବା ପାଇଁ ଜଟାୟୁର ଉକ୍ତି ଅତି ପ୍ରଶସ୍ତ । ଅନ୍ୟାୟ ବିରୋଧରେ ସଂଗ୍ରାମର ଆହ୍ୱାନ ଦେବା ପାଇଁ ଅମିତ ଶକ୍ତିର ପ୍ରୟୋଜନ ନାହିଁ, ପ୍ରୟୋଜନ ଅନୀତିକୁ ବୋଧ କରିବା ପାଇଁ ଦୃଢ଼ ସଂକଳ୍ପର, ପ୍ରଚଣ୍ଡ ଅଭିଳାଷର । ସତ୍ୟ ଆଉ ନ୍ୟାୟ ପାଇଁ ଯେ ଯୁଦ୍ଧ କରେ ସେ ପରାଜିତ ହେଲେ ବି ତାର ଦୁର୍ଦ୍ଦମନୀୟ ସାହସ ଓ ଦୁର୍ବୃତ୍ତକୁ ପ୍ରତିରୋଧ କରିବାର ପ୍ରୟାସ ଯୁଗେ ଯୁଗେ ଅଭିନନ୍ଦନୀୟ । ଜୟ ପରାଜୟ ଜୀବନ ପାଇଁ, ଆଦର୍ଶର ବ୍ୟୂହ ରଚନା

ପାଇଁ ଏକାନ୍ତ କାମ୍ୟ ନୁହେଁ ; ଲେଡ଼ା ଅନ୍ୟାୟର ପ୍ରତିକାର ପାଇଁ ନିର୍ଭୀକ ପ୍ରୟାସ । ନିର୍ବିକାର ଦର୍ଶକ ହେବା କ୍ଳୀବତ୍ୱର ଲକ୍ଷଣ । ଏହାହିଁ କବିତାର ବକ୍ତବ୍ୟ ।

ପ୍ରବଞ୍ଚନାର ମୂଳୋତ୍ପାଟନ ବ୍ୟତିରେକେ ପୀଡ଼ିତ ସମାଜର ଯେମିତି ରକ୍ଷା ନାହିଁ, ପ୍ରବଞ୍ଚକର ସେମିତି ମୁକ୍ତି ନାହିଁ । ରାଜନୈତିକ ନେତାମାନେ ଯେଉଁ ପ୍ରବଞ୍ଚନାର ଧୂଆଁବାଣ ଓ ମିଥ୍ୟା ପ୍ରତିଶ୍ରୁତିରେ ଜନତାକୁ ପ୍ରବଞ୍ଚିତ କରିଛନ୍ତି । ବଞ୍ଚନାର ସେଇ ଦୈତ୍ୟ ଦିନେ ଓଲଟି ପଡ଼ି ତାଙ୍କୁଇ ଗ୍ରାସ କରିବାକୁ ଉଦ୍ୟତମୁଖ ହେବ । ସମାଜବାଦ ପରିବର୍ତ୍ତେ ସାମ୍ରାଜ୍ୟବାଦ, ନିର୍ମଳ ଶାସନ ନାମରେ ସବୁ ଆବିଳତା, ଆବର୍ଜନାକୁ ପ୍ରଶ୍ରୟ ଦେଇଥିବା ନେତାଙ୍କର ପତନ ଅନିବାର୍ଯ୍ୟ । ତେଣୁ ସେମାନଙ୍କ କଣ୍ଠରେ ବିକଳ ଆହ୍ୱାନ—

"ରକ୍ଷାକର ରକ୍ଷାକର
ମୋତେ ଗୋଡ଼ାଇଛି ମୋର ଦୈତ୍ୟ ଭୟଙ୍କର ।" ( ପ୍ରବଞ୍ଚନା )

କବିଙ୍କର ବୌଦ୍ଧିକ ମନର ସୂକ୍ଷ୍ମ ଚିନ୍ତା ଧରାଦେଇଛି ଏଇ ପଦଟିର ଉଚ୍ଚାରଣରେ । ପ୍ରତି ପଦର ଶେଷ ପଂକ୍ତିରେ ଏଇ କଥାଟି ବାରମ୍ବାର ଉଚ୍ଚାରିତ ହୋଇ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ବ୍ୟାକୁଳ ନେତୃବର୍ଗଙ୍କୁ ସଚେତନ କରିଦେଇଛି । ସେ ଆମକୁ ବିପ୍ଳବୀ ହେବାକୁ ଇନ୍ଧନ ଯୋଗାଇ ନାହାନ୍ତି, ସେ ନିଜେ ଇନ୍ଧନ ହୋଇ ଆଲୋକର ତେଜରେ ଦୁର୍ଗତିର ସମ୍ପୂର୍ଣ୍ଣ ସୁସ୍ପଷ୍ଟ ଚିତ୍ରଟି ଆମ ଆଗରେ ଥୋଇ ଦେଇଛନ୍ତି । ଶାସକବର୍ଗର ଅସହାୟତାର ବାସ୍ତବ ରୂପଟି ଆଙ୍କି ଦେଇ ତାଙ୍କର ପ୍ରସାରିତ ଦୃଷ୍ଟି ଓ ତୀକ୍ଷ୍ଣ ବିଚାରବୋଧର ପରିଚୟ ଦେଇଛନ୍ତି ।

'ଆବାହନୀ'ରେ କବି ଗଣମନର ପଙ୍ଗୁତା, ଜଡ଼ତାକୁ ଧ୍ୱଂସ କରିବାର ମନ୍ତ୍ରପାଠ କରିଛନ୍ତି । ଝଡ଼ ବିପ୍ଳବର ସଙ୍କେତ । ଏ ବିପ୍ଳବ ଯେ ସବୁବେଳେ ଠିକ୍ ବାଟରେ ଠିକ୍ ଲକ୍ଷ୍ୟରେ ଆଗେଇ ଯାଉଛି ତା' ନୁହେଁ ; ଅନେକ ଭୁଲଭ୍ରାନ୍ତି ଓ ତ୍ରୁଟିବିଚ୍ୟୁତି ରହୁଛି । ତଥାପି କବି ତାକୁ ସ୍ୱାଗତ କରିଛନ୍ତି । ଏଇମିତି ଝଡ଼ ମାନସିକ ଚିନ୍ତାରେ, ସଂସ୍କୃତିଗତ ଭାବଧାରାରେ ପରିବର୍ତ୍ତନ ଆଣି ମୁକ୍ତିର ଦୁଆର ଖୋଲିଦିଏ ।

ସାମ୍ୟବାଦର ଅମୃତଧାରା ପାଇଁ କବିଆତ୍ମା ବ୍ୟାକୁଳ ହୋଇଉଠିଛି । ଲେନିନଙ୍କର ମହାନ୍ ଚିନ୍ତାଧାରା ପ୍ରତି ସଶ୍ରଦ୍ଧ ଅଞ୍ଜଳି ବାଢ଼ି ଦେଇଛନ୍ତି—ପ୍ରତ୍ୟେକେ ନିଜ କର୍ମରେ ପ୍ରତିଷ୍ଠିତ ହୁଅନ୍ତୁ । ମଣିଷ ଭିତରୁ ତାମସିକ ଭାବ ବା ପଶୁତ୍ୱର ବିନାଶ ହୋଇ ସେ ମଣିଷ ଭଳି ନିଜକୁ ଗଢ଼ିବାର ଶପଥ ନେଉ ।

ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ଯେଉଁ ଆକାଶୀ ବ୍ୟବଧାନ ତାର ବାସ୍ତବ ଚିତ୍ରପଟ ଆଙ୍କିଛନ୍ତି ମିଥ୍‌ର ସଫଳ ପ୍ରୟୋଗରେ । ସେଦିନ ହରିଣୀ ହୋଇଥିଲା ବ୍ୟାଧର ଶିକାର,

ଅଜି ମଣିଷ ହୋଇଛି ମଣିଷର ଶିକାର । ସ୍ୱେଚ୍ଛାଚାରୀ, ପୋଲିସର ବର୍ବରତାର ଅତ୍ୟାଚାର, ବେକାରୀ ସମସ୍ୟା ଆଉ 'ମିଶା' ଆଇନର ଅପପ୍ରୟୋଗ ଅନ୍ଧାରି ରାଜତ୍ୱର ଯେଉଁ ଆତଙ୍କ ସୃଷ୍ଟି କରିଛି ତା' ବିରୋଧରେ କବିଆତ୍ମା ଯନ୍ତ୍ରଣାରେ କାତର ହୋଇ ପଡ଼ିଛି । ସ୍ୱାଧୀନତା ଲଭର ଦୀର୍ଘ ତିରିଶ ବର୍ଷ ପରେବି ଏ ଦେଶ ଅତ୍ୟାଚାରର କବଳରୁ ମୁକ୍ତ ପାଇନି । ଗୋଟାଏ ଦେଶ ଗୋଟାଏ ଜାତିର ଅଧଃପତନର ଇତିହାସ କବି ଲେଖିଦେଲେ ପଦେ କଥାରେ – 'ମଣିଷ କରୁଛି ମଣିଷ ଶିକାର' କବିକୃତିର ଏକ ବିଶିଷ୍ଟ ଚେତନା ଏଥିରେ ମୂର୍ଚ୍ଛିତ ।

କବି-ହୃଦୟରେ କି ଗଭୀର ବିଶ୍ୱାସ, ପ୍ରଚଣ୍ଡ ପ୍ରତ୍ୟୟ ମେହନତି ଜନତାର ଉଜ୍ଜ୍ୱଳ ପ୍ରତିଶ୍ରୁତିମୟ ଭବିଷ୍ୟତ ଲାଗି ! ସାମ୍ରାଜ୍ୟବାଦୀ ଏକଚ୍ଛତ୍ର ଶାସନର ଆୟୁ ପୂରିଯିବ, ଶୋଷଣର ଇତିହାସରେ ପୂର୍ଣ୍ଣଚ୍ଛେଦ ପଡ଼ିବ, ଦୁର୍ବଳକୁ ଲୁଣ୍ଠନ କରିବାର ଅନ୍ଧାର ରାତି ପାହିବ । ଲୁହ ଲହୁର ସ୍ରୋତ ବୁହାଇ ଯେଉଁ ସ୍ୱାଧୀନତା ଆମେ ପାଇଛୁ ତାକୁ ରକ୍ଷା କରିବାକୁ ହେବ । ସେଥିପାଇଁ କବିର ମନ୍ତ୍ର ହେଲା— ସାମ୍ୟବାଦର ଅମୃତ ଅନୁଭବ । ଆତ୍ମକୈନ୍ଦ୍ରିକ ସ୍ୱାର୍ଥ ସର୍ବସ୍ୱ ମଣିଷ ଜାତିର କବର ଉପରେ ଜୈତ୍ରକେତନ ଉଡ଼ାଇବାକୁ ହେବ । କବି ରଘୁନାଥ ଏ ସବୁର କାଳ୍ପନିକ ଚିତ୍ରପଟ ଆଙ୍କି ନାହାନ୍ତି । ସାମ୍ୟବାଦୀ ଶାସନନୀତିକୁ ଆଦର୍ଶ ରୂପେ ସ୍ୱୀକୃତି ଦେଇ ଦୈନ୍ୟ ସାଥିରେ ଲଢ଼ିବା ପାଇଁ ଶକ୍ତି ସଞ୍ଚୟ କରିବାର ପ୍ରଶସ୍ତ ମାର୍ଗ ଦେଖାଇ ଦେଇଛନ୍ତି ।

ସମୟର ଆହ୍ୱାନ — ବଳିଷ୍ଠ ଆହ୍ୱାନ ପ୍ରତି ସେ ଶାସକ ଗୋଷ୍ଠୀର ଅନ୍ଧ ଶାସନ ବିରୋଧରେ ନିର୍ମମ ଓ କଠିନ ସ୍ୱର ତୋଳିଛନ୍ତି । ରୋମ ସାମ୍ରାଜ୍ୟର ରାଜତନ୍ତ୍ର ଶାସନର ସବୁ ଦମ୍ଭ ଓ ସ୍ପର୍ଦ୍ଧିତ ଅହଙ୍କାର ମାଟିରେ ମିଶିଗଲା. କାଳଚକ୍ରର ଆବର୍ତ୍ତିରେ । ଫରାସୀ ଶାସକ ଗୋଷ୍ଠୀର ଅମାନୁଷିକ ଅତ୍ୟାଚାର ଓ ବିଳାସ-ବ୍ୟସନର ଚୂଡ଼ାନ୍ତ ପର୍ବ କେତେ ଅସହାୟ ଭାବରେ ଶେଷ ହୋଇଗଲା । ଆଜିର ଏଇ ଅନ୍ଧାରି ଶାସନ ଆତଙ୍କରାଜର ବି ଦିନେ ଅବସାନ ଘଟିବ । ବିଶ୍ୱାସର ଏଇ ବଳିଷ୍ଠ ପ୍ରକାଶହିଁ ମଣିଷ ସମାଜକୁ ବଞ୍ଚିବାର ନୂତନ ସ୍ୱାଦ ଚଖାଏ । ଦୁର୍ଭିକ୍ଷ, ବାତ୍ୟା, ବନ୍ୟା, ମରୁଡ଼ିର ଦୈବ ଦୁର୍ବିପାକରେ ମଣିଷ ପେଷି ହୋଇଗଲା ବେଳେ ; ଅନାହାର, ଅବିଚାର ଓ ଅତ୍ୟାଚାର ଭସ୍ମରାଶି ତଳେ ଲିଭିଗଲା ବେଳେ କବି କଣ୍ଠରୁ ଝରିଛି ଆଶ୍ୱାସନାର ଉଦ୍ଦୀପ୍ତ ଧ୍ୱନି— ଆସିବ ସୁଦିନ, ସୁବିଚାର ଓ ସୁଫଳା ଶସ୍ୟଶ୍ୟାମଳା ଧରଣୀର ସବୁଜ ସମ୍ପଦ ।

ମଣିଷ ଭିତରେ ରାକ୍ଷସର ନାରକୀୟ ପ୍ରବୃତ୍ତି ପୁଣି ଦେବତ୍ୱର ମହୋତ୍ସବ—ଜୀବନ-ଦର୍ଶନର ବହୁ ଜ୍ଞାତ ଅଥଚ ସଦା ବିସ୍ମୃତ ଗୂଢ଼ତତ୍ତ୍ୱଟିକୁ ପରିବେଷଣ କରିଛନ୍ତି ଦାର୍ଶନିକର ଗାମ୍ଭୀର୍ଯ୍ୟ ଭିତରେ । ମଣିଷ ଭିତରେ ପ୍ରଚଣ୍ଡ ଶକ୍ତି ନିହିତ । ଅପୂର୍ଣ୍ଣ, ଖଣ୍ଡିତ ଭଗ୍ନାଂଶ ଭିତରେ ପୂର୍ଣ୍ଣତାର, ବିରାଟର-ଅନନ୍ତର ଅନୁଭବ ବିରାଜିତ— ଏଇ ଅସ୍ମି ଅର୍ଥବୋଧ ନ ଆସିଲେ ଜୀବନ ହୁଏ ଜୀର୍ଣ୍ଣ ।

ମଣିଷର ପ୍ରବୃତ୍ତି ବଡ଼ ଧର୍ମ କା ଗୁଣ ମଣିଷକୁ ଭଲପାଇବା । ରଘୁବାବୁଙ୍କ ଭିତରେ ଏଇ ଗୁଣଟି ଭରପୂର ହୋଇଥିଲା । ଆଜିର ବିପନ୍ନା କବି ରବି ସିଂଙ୍କୁ ଯେତେବେଳେ କେତେକ ସ୍ୱାର୍ଥାନ୍ୱେଷୀ ନିଜ ନିଜ ସ୍ୱାର୍ଥରେ ନିୟୋଜିତ କରି ତାଙ୍କର ଆତ୍ମଶକ୍ତିକୁ ଲୁଣ୍ଠନ କରିବାକୁ ଚେଷ୍ଟା କରିଛନ୍ତି, ସେହି ଅସହାୟ ଲଗ୍ନରେ କବି ରଘୁନାଥ ତାଙ୍କୁ ଅଭୟ ହସ୍ତ ଦେଇଛନ୍ତି, ସହାନୁଭୂତିରେ ତାଙ୍କୁ ବଞ୍ଚିବାର ପ୍ରେରଣା ଦେଇଛନ୍ତି । କବି ରଘୁନାଥ ରବି ସିଂଙ୍କୁ ଭଲପାଇ ନଥିଲେ, ଭଲ ପାଇଥିଲେ ଅସହାୟ ମଣିଷଟିକୁ, ତାଙ୍କ ପ୍ରତିଭାକୁ । ଯେଉଁଠି ଦେଖିଛନ୍ତି ଅସହାୟର ନିର୍ଯାତନା, ସେଇଠି ତାଙ୍କ କାବ୍ୟ ପୁରୁଷ ବିଦ୍ରୋହରେ ଗର୍ଜି ଉଠିଛି । ପୁଣି ଅସହାୟ, ନିରାହ, ଭୀରୁ ଜନତା ପାଇଁ ଯିଏ ଲଢ଼ିବାକୁ ଆଗେଇ ଆସିଛି କବିଚିତ୍ତ ବିଗଳିତ ହୋଇ ଆଉଜି ଯାଇଛି ତାରି ଆଡ଼କୁ । ବିପ୍ଳବୀ ଆତ୍ମା ନାଗଭୂଷଣ କବିଚିତ୍ତକୁ ଆପ୍ଳୁତ କରିଛି । ନାଗଭୂଷଣ ତାଙ୍କ ପାଇଁ ବ୍ୟକ୍ତ ହୋଇ ରହିନାହିଁ ପାଲଟିଛି 'ଶକ୍ତି' । ସବୁ ଦୁଷ୍ଟ ବୃତ୍ତି, ଅବିଚାରକୁ ନିଃଶେଷ କରିବାକୁ ତାର ଜନ୍ମ । ଶୋଷଣପ୍ରଥା, ମୁନାଫାଖୋର ମନୋବୃତ୍ତି, ମହାଜନର ଲୋଲୁପତା ଓ ହୃଦୟହୀନତାକୁ ଧ୍ୱଂସ କରି ସେ ସୃଜିବ ମଣିଷ ଭିତରେ ଭଲପାଇବାର ସ୍ୱକଣ୍ଠି ସୁରଭି । ଆଇନ ଆଖିରେ ସେ ଦୋଷୀ, କାରଣ—

> "ଯମ୍ଭୁ ମୋର ଭଲପାଏ ମଣିଷ ସଭିଙ୍କି
> ଅନାହାରେ ଉପାସିଆ ଯେତେ ଦୁଃଖୀ ରଙ୍କି ।"

ମଣିଷକୁ ଭଲପାଇବାର ଅପରାଧରେ ସେ ଅପରାଧୀ ।

କବି ରଘୁନାଥଙ୍କ କବିତାର ମୂଳ ବକ୍ତବ୍ୟ— ମଣିଷ ପ୍ରତି ମଣିଷର ସମ୍ବେଦନଶୀଳତା, ଆନ୍ତରିକ ମମତ୍ୱବୋଧ, ଆଉ ନିଃସ୍ୱାର୍ଥ କର୍ମଯୋଜନା । ତାଙ୍କ ରଚନାରେ ଏକ ସ୍ୱଭାବସିଦ୍ଧ ସଂଯମ ଓ ନିର୍ଦ୍ଦିଷ୍ଟ ଅଭିମୁଖ୍ୟ ଲକ୍ଷଣୀୟ । ଜାତି ପାଇଁ, ଦେଶ ପାଇଁ ଶତାବ୍ଦୀ ପାଇଁ ତାଙ୍କ କବିତା ଏକ ଜ୍ୱାଳାମୟୀ ଲେଲିହାନ ଦୀପଶିଖା । ସେ ଦେଶର ଦୁର୍ଗତିର ଚିତ୍ରକୁ ବିଭିନ୍ନ ଖଣ୍ଡକାବ୍ୟରେ ଯେପରି ଅନୁଭୂତିସିକ୍ତ ଭାଷାରେ ବର୍ଣ୍ଣନା କରିଛନ୍ତି ତାହାହିଁ ତାଙ୍କର କବିକୀର୍ତ୍ତି ।



# ବିସ୍ମୃତ କବି ରଘୁନାଥ ଦାସ ଓ ପ୍ରଗତିଧର୍ମୀ ଓଡ଼ିଆ ଗଦ୍ୟ-ସାହିତ୍ୟ

**ପଠାଣି ପଟ୍ଟନାୟକ**

ରଘୁନାଥ ଦାସ ସ୍ୱଭାବତଃ ଜଣେ କବି । ତାଙ୍କର କାବ୍ୟ ସାଧନା ଥିଲା ସମ୍ପୂର୍ଣ୍ଣ ଭାବରେ ଏକ ନିର୍ଦ୍ଦିଷ୍ଟ ଆଦର୍ଶ ଓ ବିପ୍ଳବର ପରିପୂରକ । ସେ ଥିଲେ ଏକାନ୍ତ ଭାବରେ ସମାଜ ସଚେତନ ଏବଂ ତାଙ୍କର ବିଶ୍ୱାସ ଥିଲା— ସେହି ସମାଜର ପରିବର୍ତ୍ତନ ଏବଂ ପ୍ରଗତି ଉଦ୍ଦେଶ୍ୟରେ ସାହିତ୍ୟ ସଂଗ୍ରାମଶୀଳ ହେବା ଆବଶ୍ୟକ । ତେଣୁ ସେ ଯାହା କିଛି ଲେଖିଛନ୍ତି, ତାହା ଥିଲା ଏକ ଅଙ୍ଗୀକାର-ବଦ୍ଧ ସାଧନା । ତାଙ୍କ ସାରସ୍ୱତ ସାଧନାର ସମୟ ଅତ୍ୟନ୍ତ ଅଳ୍ପ ଥିଲା । କାହିଁକି ତାଙ୍କର ଲେଖନୀ ମଝିରେ ନୀରବ ରହିଗଲା, ତାହା ଏବେ ମଧ୍ୟ ରହସ୍ୟାବୃତ । ମାତ୍ର ଯେତିକି ଲେଖିଛନ୍ତି, ତହିଁରେ ତାଙ୍କର ନିଷ୍ଠା, ବିଶ୍ୱାସ ଏବଂ ପ୍ରାଣପ୍ରଚୋଦନା ଛତ୍ରେ ଛତ୍ରେ ଅନୁଭୂତ ହୋଇଛି ।

ସେ ସୌଖୀନଧର୍ମୀ କବି ନଥିଲେ । ପଶ୍ମମଣ୍ଡଳର ମିନାର ମଧ୍ୟରେ ସ୍ୱପ୍ନଜୀବୀ ହୋଇ ଆତ୍ମଗୋପନ କରିବା ପାଇଁ ତାଙ୍କର ଆଦୌ ଆଗ୍ରହ ନଥିଲା । ଅଥବା କୌଣସି ରାଜନୈତିକ ମତବାଦର ପ୍ରଚାର ପାଇଁ ମଧ୍ୟ ସେ ଚେଷ୍ଟିତ ନଥିଲେ । ସେ ଥିଲେ ଜନଗଣର କବି । ମାନବଧର୍ମୀ ସମ୍ବେଦନଶୀଳତା ତାଙ୍କୁ ପଦେ ପଦେ ବିଚଳିତ କରି ରଖିଥିଲା । ଜାତୀୟ ଏବଂ ଆନ୍ତର୍ଜାତୀୟ ସାମାଜିକ ପରିବର୍ତ୍ତନ ମଧ୍ୟରେ ସେ ଖୋଜି ବୁଲିଥିଲେ ଦଳିତ ଏବଂ ସର୍ବହରାର ମୁକ୍ତି । ଜନଗଣର ଜାଗୃତି ପାଇଁ, ତାର ମାନସିକ ଅଭାବବୋଧକୁ ଉପଯୁକ୍ତ ଖୋରାକ ଦେବାପାଇଁ ସେ ଗଦ୍ୟଲେଖାର ଆଶ୍ରୟ ଗ୍ରହଣ କରିଥିଲେ । ରଘୁନାଥଙ୍କର ଗଦ୍ୟଲେଖାର ପରିମାଣ ଅତ୍ୟନ୍ତ ଅଳ୍ପ । ତାହା ଅଳ୍ପ କେତୋଟି ପ୍ରବନ୍ଧ ଏବଂ ଗୋଟିଏ ଦୁଇଟି କ୍ଷୁଦ୍ର ପୁସ୍ତକରେ ସୀମାବଦ୍ଧ । ମାତ୍ର ତାହାର ମଧ୍ୟରେ ତାଙ୍କର ସୀମାହୀନ ବ୍ୟାକୁଳତା ଏବଂ ସୁଦୂର ପ୍ରସାରୀ ଅନୁଚିନ୍ତା ଧରାପଡ଼ିଯାଏ ।

କିଶୋର ରଘୁନାଥ ଗାନ୍ଧିଜୀଙ୍କ ଆହ୍ୱାନରେ ବାନର ସେନା ଭାବରେ ଜେଲ ବରଣ କରିଥିଲେ ସ୍ୱଳ୍ପକାଳ ପାଇଁ । ସେ ବିଶ୍ୱାସ କରିଥିଲେ ଦୀର୍ଘକାଳର ପରାଧୀନତା ପରେ ସ୍ୱାଧୀନତା ଆଣିଦେବ ସମାଜ ଜୀବନରେ ନୂତନ ପ୍ରତ୍ୟୟ, ଆତ୍ମବିଶ୍ୱାସ ଏବଂ ଅଭାବନୀୟ ସାଂସ୍କୃତିକ ଓ ଅର୍ଥନୈତିକ ପରିବର୍ତ୍ତନ । ପ୍ରଚଳିତ ଶୋଷଣବାଦୀ ସମାଜ ଭାଙ୍ଗି ପଡ଼ିବ ଏବଂ ତାହାର ସ୍ଥାନରେ ଏକ ନୂତନ ଆଲୋକର ସନ୍ଧାନ ପାଇବେ ସାଧାରଣ ଖଟିଖିଆ

ମଣିଷ । ନବ ଧର୍ମ ଏବଂ କର୍ମୀଙ୍କରେ ସେମାନେ ହେବେ ଉଦ୍ଭାସିତ ଏବଂ ଏକ ଶୋଷଣମୁକ୍ତ ସମାଜର ସେମାନେ ହେବେ ମଙ୍ଗ ଆଳ । ଏହିପରି ପରିକଳ୍ପନା ମଧ୍ୟରେ ସ୍ୱାଧୀନତାର ଗୋଟିଏ ବର୍ଷ ବିତିଗଲା । ଆନନ୍ଦ ଉତ୍ସବ ମୁଖରେ ବର୍ଷେଟିଏ ବିତିଗଲା ସତ୍ୟ, କୌଣସି ମୂଲ୍ୟବୋଧର ପରିବର୍ତ୍ତନ ଜନଗଣଙ୍କୁ ସ୍ପର୍ଶ କରିପାରିଲା ନାହିଁ । ତେଣୁ ବିପ୍ଳବୀ କବି ରଘୁନାଥ ସ୍ମରଣ କରାଇଦେଲେ— 'ଅଗଷ୍ଟ ପନ୍ଦର - ୧୯୪୮' କବିତାରେ ଏହିପରି—

"ଯାତ୍ରୀ ସାବଧାନ !
ତୋର ଏହି ଯାତ୍ରା ପଥେ ନୁହେଁ ଏହେ ଅନ୍ତିମ ସୋପାନ ।
ସଂଗ୍ରାମ ତୋ ସରିନି ଏବେ ବି ।
ଏବେ ମଧ୍ୟ ଉଭେଁ ତୋର ଜନତାର ରକ୍ତମାଂସ ଲେଖି
ଗୃଧ୍ର ପଲ ଚକ୍ର ମାରେ, ଝାମ୍ପି ନିଏ ଶ୍ରମିକର ଅଂଶୁ
ଏବେ ମଧ୍ୟ ଭାତ ଥାଳ ଭାଗ କରେ ମାଲିକ ଓ ସାହୁ ।
ଆଜି ମଧ୍ୟ ଭାରତର ଗ୍ରାମବାସୀ ଶୋଇବ ଉପାସେ,
କାଲି ସେ ହୋଇବ ଛିନ୍ନ ପ୍ରାଣନାଶୀ କାଳନାଗ ଫାଶେ ।"

୧୯୪୭ ଅଗଷ୍ଟ ପନ୍ଦର ରାଜନୈତିକ ସ୍ୱାଧୀନତା ଆଣିଦେଲା ସତ୍ୟ, କିନ୍ତୁ ସମାଜରେ ଜନଗଣର ମୁକ୍ତି ପାଇଁ ତାହା ଯଥେଷ୍ଟ ନଥିଲା । ଏ ସଂଗ୍ରାମ ଅବ୍ୟାହତ ରଖିବାକୁ ହେବ ପ୍ରତିକ୍ରିୟାଶୀଳ ଶକ୍ତି ବିରୋଧରେ, ଯେଉଁମାନେକି ସ୍ୱାଧୀନ ସରକାରରେ ନିଂସ୍ୱାର୍ଥଗୋଷ୍ଠୀ ଭାବରେ ବହୁ ସୁଯୋଗର ଅଧିକାରୀ ହୋଇ ଜନତା-ଜନାର୍ଦ୍ଦନଙ୍କୁ ବଦଳିତ କରିବାରେ ଲଗି ପଡ଼ିଛନ୍ତି । ତେଣୁ ସ୍ୱାଧୀନତାର ଦ୍ୱିତୀୟ ବାର୍ଷିକ ଉତ୍ସବରେ କବି ନିଜର ବୈପ୍ଳବିକ ଲେଖନୀ ଜରିଆରେ ଘୋଷଣା କରିଗଲେ—

"ଆଜ ଥରେ ସେଇ ଡାକ ଶୁଣିଯାଅ, ମୃତ୍ୟୁର ବଣିକ
ଶୁଣିଯାଅ ଖଣି ଗର୍ଭେ ଶ୍ରମଜୀବୀ ଅସ୍ପୃଶ୍ୟ ସୈନିକ ।
ନବଜାତ ଜୀବନର ଜୟନାଦ ତୋଳିଛୁ ଗର୍ଜରେ,
ସାମ୍ୟର ସବୁଜଗାନ ଖେଳିଯାଏ ଲହରୀ ପର୍ବରେ ।
ଝଡ଼ ଯେ ଉଠିଛି ଫୁଲି ସିନ୍ଧୁ ଗର୍ଭେ, ଆଲପସର ଉଚ୍ଚେ
ଭଲ୍‌ଗୋଟୀନ ଆଖି ଖେଳେ, ଭେର୍‌ନାମ ଘନ ବେତ କୁଞ୍ଜେ ।
ସ୍ଥାନେ ସ୍ଥାନେ ସ୍ଥାନେ
ମାନବ ଛୁଟିଛି ଆଜି ଦୃପ୍ତ ପଦେ ମୁକ୍ତିର ସନ୍ଧାନେ ।
ଅଦୂରେ ଯେ ଦେଖାଯାଏ, ନୂଆ ସୀମା, ଶୃଙ୍ଖଳର ଶେଷ
ବସ୍ତୁର ପ୍ରାଚୂର୍ଯ୍ୟ ମଧ୍ୟେ ଯହିଁ ହୁଏ ପ୍ରାଣର ଉନ୍ମେଷ ।"
( ଅଗଷ୍ଟ ପନ୍ଦର - ୧୯୪୯ )

## ରଘୁନାଥଙ୍କ ଗଦ୍ୟ ଲେଖାର ଆଭିମୁଖ୍ୟ :

ଲେଖକ ୧୯୪୮ ଖ୍ରୀଷ୍ଟାବ୍ଦରେ "ରାଜନୀତି ଆଉ ଆମେ" ଶୀର୍ଷକ ଏକ ଗଦ୍ୟଗ୍ରନ୍ଥ ପ୍ରକାଶ କରିଥିଲେ । ତାପରେ ୧୯୫୩ ସାଲରେ "ସଭ୍ୟତାର ଆଗେ" ଶୀର୍ଷକ ଆଉ ଏକ ଗଦ୍ୟ ପୁସ୍ତକ ପ୍ରକାଶିତ ହୋଇଥିଲା । ଏତଦ୍ ବ୍ୟତୀତ ନିଜ ନାମରେ ଅଥବା "ହେଲାଲ ସେଣ" ଛଦ୍ମନାମରେ "ବିପ୍ଳବର ଇତିହାସ", "ଓଡ଼ିଆ ବୋଲି ଏକ ଜାତି ଥିଲା— ତାହାର ବି ଏକ ଭାଷା ଥିଲା", "ସାମାଜିକ ଚେତନା ସୃଷ୍ଟିରେ ସାହିତ୍ୟର ଭୂମିକା", "ଶ୍ରେଣୀ ଚେତନା", "ଶ୍ରେଣୀ ବିଚାର", "ଚତୁର୍ବର୍ଣ୍ଣଂ ମୟାସୃଷ୍ଟ", "କଃ ପନ୍ଥା", "ଅରସିକେଷୁ", "ବିପ୍ଳବୀ ସାହିତ୍ୟ", "ମଧ୍ୟବିତ୍ତର ଭୂମିକା", "ସାହିତ୍ୟିକ ଅପରାଧ ବିଚାର" ପ୍ରଭୃତି ଅଳ୍ପ କେତୋଟି ପ୍ରବନ୍ଧ ତାଙ୍କର ଗଦ୍ୟ ଲେଖାର ସୃଷ୍ଟି ମାତ୍ର ।

ସେ ବିଶ୍ୱାସ କରୁଥିଲେ ଯେ ଆମର ଯେଉଁ ଶିକ୍ଷା ବ୍ୟବସ୍ଥା ରହିଛି, ସେଥିରେ ସାଧାରଣ ଜନତାର ଅନ୍ଧାନୁସରଣ ଦୂର ହେବାପାଇଁ କୌଣସି ସଚେତନ ପ୍ରୟାସ ନାହିଁ । ଦେଶର ଜାତୀୟ ସାହିତ୍ୟ କହିଲେ ଯାହା ହେବା ଉଚିତ, ପରାଧୀନ ଭାରତରେ ନ ହେଉ ପଛକେ, ସ୍ୱାଧୀନ ଭାରତରେ ସେପରି ସାହିତ୍ୟର ଅଗ୍ରୁମାରମ୍ଭ ହେଉନାହିଁ । ସାହିତ୍ୟ କହିଲେ କେବଳ ବୁଝାଉଛି ରୋମାଣ୍ଟିକ ଧର୍ମୀ କବିତା, ଦେହବାଦୀ ଉପନ୍ୟାସ ଏବଂ ସୌଖୀନ ନାଟ୍ୟସାହିତ୍ୟ । ଏହା ଦ୍ୱାରା କଣ କୌଣସି ଜାତିର ଜୀବନରେ ବିପ୍ଳବ ସମ୍ଭବ ହୋଇପାରିବ ? ରଘୁନାଥ ଏହିପ୍ରକାର ଏକ ସାହିତ୍ୟ ହେବାପାଇଁ କାମନା କରୁଥିଲେ, ଯାହା ଆଣିଦେବ ଲୋକ ସାଧାରଣଙ୍କ ମନରେ ଅପୂର୍ବ ଜାଗରଣ, ବିଭିନ୍ନ ଜଟିଳ ସମସ୍ୟା ସମ୍ପର୍କରେ ପ୍ରକୃତ ଅବଧାରଣ ଏବଂ ଦୂର କରିଦେବ ଅନ୍ଧାନୁସରଣ । ସାହିତ୍ୟ ଜରିଆରେ ଦେଶ, ଜାତି ଓ ସମାଜର ବିଭିନ୍ନ ସମସ୍ୟାର ବୈଜ୍ଞାନିକ ଆଲୋଚନା ପାଇଁ ରଘୁବାବୁ ଲେଖିଲେ 'ରାଜନୀତି ଆଉ ଆମେ', 'ସଭ୍ୟତାର ଆଗେ' ଏବଂ 'ପ୍ରାଚୀନ କାଳରେ' । ଷୁଦ୍ରାବୟବ ଏହି ପୁସ୍ତକଗୁଡ଼ିକର ଗଦ୍ୟଶୈଳୀ ଥିଲା ଅତ୍ୟନ୍ତ ସାବଲୀଳ ଓ ପ୍ରାଣବନ୍ତ । ସହଜ ସୁବୋଧ ଲୋକକଥିକ ଭାଷାରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଗୁଡ଼ିକର ବିଚାର-ବିଶ୍ଳେଷଣ କରାଯାଇଥିଲା । ଲୋକଶିକ୍ଷା ଥିଲା ତାଙ୍କର ଗଦ୍ୟଲେଖାର ପ୍ରଧାନ ଆଭିମୁଖ୍ୟ । ସେ ସମ୍ପୂର୍ଣ୍ଣ ନୂତନ ଦୃଷ୍ଟିକୋଣରୁ ବିଭିନ୍ନ ସମସ୍ୟାର ଆଲୋଚନା କରୁଥିଲେ । ସେ କାଳରେ ସେହି ପ୍ରକାର ଲେଖା ଥିଲା ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ଅଭିନବ । 'ରାଜନୀତି ଆଉ ଆମେ' ପୁସ୍ତକର ଉପସଂହାରରେ ସେଥିପାଇଁ ଲେଖକ ଲେଖିଥିଲେ—

"ଶ୍ଳେଷ ବହି । ଏହାର ଅଳ୍ପ କେତୋଟି ପୃଷ୍ଠା ଭିତରେ ବହୁତ ଗୁଡ଼ିଏ କଥା କହିଗଲି । କହିବାକୁ ରହିଗଲା କିନ୍ତୁ ଅନେକ କଥା । ସେହି ଅକୁହା କଥାଗୁଡ଼ାକ

ଶୁଣିବା ଲାଗି ନିଜକୁ ପ୍ରସ୍ତୁତ କରି ରଖ .. କାରଣ ଯାହା ଶୁଣାଯାଇ ନାହିଁ ତା ଶୁଣାଯିବ, ଯାହା ଦେଖାଯାଇ ନାହିଁ ତା ଦେଖାଯିବ, ଯାହା ହୋଇନାହିଁ ତାହା ହେବ । ଏହା ଈଶ୍ୱରଙ୍କର ଆଜ୍ଞା ନୁହେଁ, ଜଗତର ନିୟମ .. ସୃଷ୍ଟିର ଛନ୍ଦ ଜୀବନ ।"

'ରାଜନୀତି ଆଉ ଆଜମ' (୧୯୪୮)

ଗଳ୍ପ କହିବା ଶୈଳୀରେ ମଣିଷ ଜାତିର ବିବର୍ତ୍ତନର ଇତିହାସ ଏହି ପୁସ୍ତକରେ ସ୍ଥାନ ପାଇଛି । ବାସ୍ତବିକ ଆମ ସାହିତ୍ୟରେ ଏହି ପ୍ରକାର ଉଦ୍ୟମ ବିଶେଷ ହୋଇନାହିଁ । ସମୁଦାୟ ନଅଟି ବିଭାଗରେ ଲେଖକ ଏହି ବିବର୍ତ୍ତନର ଇତିହାସକୁ ବିଭକ୍ତ କରିଛନ୍ତି । ତାହାହେଲା— ୧) ମଣିଷର ଇତିହାସ, ୨) ଧନସମ୍ପତ୍ତି, ୩) ରଜାମୁଳକ, ୪) ଗଣତନ୍ତ୍ର, ୫) ପୁଞ୍ଜିବାଦ, ୬) ସାମ୍ରାଜ୍ୟବାଦ, ୭) ଗାନ୍ଧିବାଦ, ୮) କମ୍ୟୁନିଜମ, ୯) ପ୍ରଗତି ।

ମଣିଷ ଜାତିର ଇତିହାସ ଅତ୍ୟନ୍ତ ରହସ୍ୟମୟ ଏବଂ ବର୍ଣ୍ଣବୈଚିତ୍ର୍ୟରେ ପରିପୂର୍ଣ୍ଣ । ପ୍ରଥମ କାଳରେ ମନୁଷ୍ୟ ଯେଉଁ ପ୍ରକାର ସମାଜ ଜୀବନ ଗଢିଥିଲା, ତାହା ଥିଲା ଏକପ୍ରକାର ସମାଜବାଦୀ ପରିବାର । ଯଦିଓ ଆଧୁନିକ ଅର୍ଥରେ ସେ କାଳର କୌଣସି ପ୍ରକାର ରାଜନୈତିକ ଚେତନା ଅଥବା ଭାବ ବିନିମୟ ନଥିଲା, ସ୍ୱତଃସ୍ଫୁର୍ତ୍ତି ଭାବରେ ମଣିଷର ଦଳ ସେହିପରି ଜୀବନ ଯାପନ କରୁଥିଲେ । ସେମାନେ ଧୀରେ ଧୀରେ ସଭ୍ୟତାର କ୍ରମପରିଣତି ପଥରେ ଅଗ୍ରସର ହୋଇ ଆସି ପହଞ୍ଚିଲେ ଶିଳ୍ପ ଯୁଗରେ । ଆଧୁନିକ ଜୀବନର ସମସ୍ତ ଐଶ୍ୱର୍ଯ୍ୟ ସେହି ମଣିଷ ସମାଜ ଉପଭୋଗ କଲାବେଳେ ଲେଖକ ସୂଚନା ଦେଇଛନ୍ତି କିପରି ଧୀରେ ଧୀରେ ସେହି ଆଦିମ ସମାଜ ତାର ଜାତି ଗଠନ କଲା, ଗ୍ରାମୀଣ ସଭ୍ୟତାର ପ୍ରାଣ ପ୍ରତିଷ୍ଠା କଲା ଏବଂ ତାହାପରେ ସେହି ସ୍ଥାନରେ ପ୍ରାଧାନ୍ୟ ବିସ୍ତାର କଲା ନାଗରିକ ସଭ୍ୟତା । ଆଦିମ ସମାଜରେ ସମ୍ପତ୍ତି କାହାର ବ୍ୟକ୍ତିଗତ ଅଧିକାରରେ ନଥିଲା । ଅଥଚ ପରେ ପରେ ସମାଜର ଏହି କୋଠ ସମ୍ପତ୍ତି କିପରି ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଅକ୍ତିଆରକୁ ଚାଲିଆସିଲା, ତାହାର ଚମତ୍କାର ବିବରଣୀ ପ୍ରଦାନ କରିଛନ୍ତି ଲେଖକ । ସେହି ଆଦିମ ସମଭାଗୀ କିପରି ପରେ ବ୍ୟକ୍ତିକୈନ୍ଦ୍ରିକ ସ୍ୱାର୍ଥସର୍ବସ୍ୱ ସମାଜରେ ପରିଣତ ହୋଇଗଲା, ତାହାର ଐତିହାସିକ ବିଶ୍ଳେଷଣ ଏହି ପୁସ୍ତକର ପ୍ରଥମ ଅଧ୍ୟାୟର କଥାବସ୍ତୁ ।

ଦ୍ୱିତୀୟ ଅଧ୍ୟାୟ ହେଲା ଧନ ସମ୍ପତ୍ତି । ଇଜମାଲି ସମ୍ପତ୍ତିରେ ସମସ୍ତେ ଦାୟୀ ଥିଲେ । ସମସ୍ତେ ଖଟୁଥିଲେ, ସମସ୍ତେ ଭୋଗ କରୁଥିଲେ ଏବଂ ସମସ୍ତେ ତହିଁରେ ମିହନ୍ତ କରୁଥିଲେ । ବ୍ୟକ୍ତିଗତ ମାଲିକାନା ଆସିଗଲା ପରେ ଏହି ଭାବ ବଦଳିଗଲା । କାଳକ୍ରମେ

ମଣିଷ ମୁଦ୍ରା ବା ଧନର ଉଦ୍ଭାବନ କଲା । ଅବଶ୍ୟ ସବୁର ମୂଳରେ ରହିଲା ମଣିଷର ପରିଶ୍ରମ । ସେ ମିହନ୍ତ କରି ଏହି ଧନର ବିକାଶ କରିବାକୁ ଲାଗିଲା । ଲେଖକଙ୍କ ନିଜ ଭାଷାରେ—

"ମିହନ୍ତ କରି ମଣିଷ ପଡ଼ିଆ ଭୂଇଁରେ ଫସଲ ଉଠାଏ । ଅସନା ଥାନକୁ ସୁନ୍ଦର କରେ । ପିଲାଟିର କିଛି ନ ଜାଣିଲା ମୁଣ୍ଡରେ ବାହାଆଡ଼ର ଖବର ଅନ୍ତର ଭର୍ତ୍ତି କରି ତାକୁ ପାଠୁଆ କରେ । ମିହନ୍ତ ଫଳରେ ଆମେ ବଞ୍ଚି ରହିଛୁଁ, ସଂସାରର ଯାବତ ଉପଭୋଗ କରିପାରୁଛୁଁ । ସମାଜରେ ଯେତେ ଉତ୍ପାଦନ, ଦୁନିଆର ଯାବତ ଧନ, ସୁନା, ଟଙ୍କା ଯାଏ - ସବୁର ପଛରେ ଅଛି ମଣିଷର ମିହନ୍ତ ।" ( ପୃ ୫୩-୫୪ )

ଧନର ଉଦ୍ଭାବନ ସଙ୍ଗେ ସଙ୍ଗେ ସମାଜରେ ସୃଷ୍ଟି ହେଲେ ଦୁଇଟି ଗୋଷ୍ଠୀ— ଖଟିଖିଆ ଓ ଲୁଟିଖିଆ । ଏହି ଇତିହାସ ଲେଖକ ବର୍ଣ୍ଣନାରେ ଅତ୍ୟନ୍ତ ଆକର୍ଷଣୀୟ ହୋଇଅଛି । ସମାଜରେ ବିଭିନ୍ନ ନାମଧାରୀ ପ୍ରଜା, ରଇତ, କୁଲି, କାରିଗର, କର୍ମଚାରୀ ସମସ୍ତେ ମିଳିମିଶି କମି ନିଜ ନିଜ କ୍ଷେତ୍ରରେ ପରିଶ୍ରମ କରି ଉତ୍ପାଦନ ବୃଦ୍ଧି କଲେ ମଣିଷ ସଂସାରର ଉପଭୋଗ ପାଇଁ । ଅଥଚ ଯେଉଁମାନେ ମିହନ୍ତ କରି ସମାଜକୁ ସୁଖ ଦିଅନ୍ତି, ସେମାନଙ୍କ ସୁଖକୁ ଅପହରଣ କରି ନିଅନ୍ତି ଲୁଟିଖିଆ ମୁଷ୍ଟିମେୟ ଲୋକେ । ସେହିମାନଙ୍କ ବିଷୟରେ ଲେଖକଙ୍କର ମତ ହେଲା—

"ଆମେ ଯାହା କିଛି ସୁଖ ଭୋଗ କରୁଛୁ, ସବୁ ସେମାନଙ୍କ ଝାଳରେ ଓଦା ; ତାଙ୍କର ରକ୍ତରେ ଭିଜା । ହେଲେ ଆମ ସମାଜର ବ୍ୟବସ୍ଥା ଏଭଳି ଯେ ଖଟିଲା ଲୋକ ( ଉତ୍ପାଦନକାରୀ ) ଭାଗରେ ଅର୍ଜିଲା ଧନରୁ ଛିଟିକାଏ ପଡ଼େ ତୋଟକ ପିଇ ଦଣ୍ଡେ ଜିଇଲା ଭଳି । ବାକତକ ମାଡ଼ିଦିଅନ୍ତି ଯେଉଁମାନେ ଅଳସୁଆ ହୋଇ ବସିଥାନ୍ତି - ରଜା, ଜମିଦାର, କଳ ମାଲିକ, ମହାଜନ । ଏମାନଙ୍କୁ ଅଳସୁଆ କହୁଛି, କାରଣ ଜିନିଷ ଆମଦାନି କରିବାରେ ( ତାକୁ ଉତ୍ପାଦନ କହନ୍ତି ) ଏମାନଙ୍କର ମିହନ୍ତ ଢାଳେ ବୋଲି ନାହିଁ ।" ( ପୃ ୫୪-୫୫ )

ପୁଞ୍ଜିବାଦର ଇତିହାସ ବର୍ଣ୍ଣନା କାଳରେ ଲେଖକ ଶୋଷଣବାଦର କିପରି ପ୍ରତିଷ୍ଠା ହେଲା, ତାହା ଲିପିବଦ୍ଧ କରିଛନ୍ତି । ଶୋଷଣ କରି ପୁଞ୍ଜିପତି ହେଲେ ଶକ୍ତିଶାଳୀ ଏବଂ ଶୋଷଣକୁ ଅଧିକ ସହଜ, ସୁଗମ ଏବଂ ନିରଙ୍କୁଶ କରିବାପାଇଁ ସେ ତିଆରି କଲେ ଆଇନ । ଆଇନର ଚର୍ମତଳେ ପୁଞ୍ଜିପତି ଶୋଷଣ କରି ଚାଲିଲେ ଖଟିଖିଆ ଗୋଷ୍ଠୀଙ୍କୁ । ପୁଞ୍ଜିବାଦ ମଧ୍ୟ ଜନ୍ମ ଦେଲା ସର୍ବହରା ଶ୍ରେଣୀ, ବୁର୍ଜୁଆ ଶ୍ରେଣୀ ଏବଂ ମଧ୍ୟବିତ୍ତ ଶ୍ରେଣୀଙ୍କୁ । ପ୍ରତିଦ୍ୱନ୍ଦ୍ୱୀ ହେଲା ଶ୍ରେଣୀ ସଂଘର୍ଷ । ପୁଞ୍ଜିବାଦର ଉଗ୍ରରୂପ ହେଉଛି ଆଧୁନିକ କାଳର ଫାସିଜିମ୍ ଏବଂ ନାଜିବାଦ ।

ଆଜି ଗଣତନ୍ତ୍ର କଥାଟି ଅତ୍ୟନ୍ତ ପରିଚିତ । ସବୁରି ମୁହଁରେ ଗଣତନ୍ତ୍ରର ଆଲୋଚନା । ଲେଖକ ଗଣତନ୍ତ୍ରର ବ୍ୟାଖ୍ୟା କରିଛନ୍ତି ଏହିପରି—

“ଗଣତନ୍ତ୍ରରେ ଜଣେ ନାଗରିକର ଯେତିକି ଅଧିକାର ଅଛି, ଅନ୍ୟ ଜଣକର ସେହି ଅଧିକାର ଅଛି । ସାମନ୍ତ ସାମନ୍ତଙ୍କ ମଧ୍ୟରେ, ରାଜା ରାଜା ମଧ୍ୟରେ ଯେଉଁ ସ୍ଥାନ କଳି ଚକଚାଲ ଈର୍ଷା ଦ୍ୱେଷ ଦ୍ୱାରା ସମାଜ ଭିତରେ ହଜାର ଫାଙ୍କ ଓ ଦଳ ଦେଖା ଯାଉଥିଲା— ତାହା ଏଣିକି ଲୋପ ପାଇବ । ସମସ୍ତେ ସମାନ ଆସନରେ ବସିବେ ସମସ୍ତେ ପରସ୍ପରର ଭାଇ ମନୁଷ୍ୟ ମନୁଷ୍ୟ ମଧ୍ୟରେ କୌଣସି ବିରୋଧ ନାହିଁ ବିପଦ ନାହିଁ । ସମସ୍ତେ ଏକ ମୈତ୍ରୀ ସୂତ୍ରରେ ବଦ୍ଧ । ଏହି ନୀତି ହେଲା ଗଣତନ୍ତ୍ରର ମୌଳିକ ଆଦର୍ଶ ।” (ପୃ ୩୫)

ବାହ୍ୟତଃ ଗଣତନ୍ତ୍ର ଲୋକଙ୍କର ଶାସନ ବୋଲି ପ୍ରତିପାଦିତ ହେଉଥିଲେ ହେଁ ତାହା ପ୍ରକୃତରେ ହେଲା ଜମିଦାର ଏବଂ ପୁଞ୍ଜିପତିମାନଙ୍କର ଶାସନ । ସେହିମାନେ ହୋଇଗଲେ ଶାସକଗୋଷ୍ଠୀ ଏବଂ ଶାସନ ନାମରେ ଶୋଷଣ କରି ଚାଲିଲେ ଶାସିତଗୋଷ୍ଠୀଙ୍କୁ ।

ଗଣତନ୍ତ୍ର ଯଦିଓ ସବୁଶ୍ରେଣୀର ଲୋକଙ୍କୁ ସମାନ ଅଧିକାର ପ୍ରଦାନ କରିଥିଲା, ପୁଞ୍ଜିପତିମାନେ ଏହି ଅଧିକାରକୁ ଅଧିକ ଭୋଗ କରିବାର ସୁଯୋଗ ଗ୍ରହଣ କଲେ । ଲେଖକ ପ୍ରତିପାଦନ କରିଛନ୍ତି ଯେ କେବଳ ଅଧିକାରରେ ସାମ୍ୟ ରଖିଲେ ଲାଭ ନାହିଁ, ଯଦି ସମସ୍ତଙ୍କୁ ସତ ସାମ୍ୟ, ମୈତ୍ରୀ ଏବଂ ମୁକ୍ତିର ସୁଯୋଗ ମିଳୁନାହିଁ ।

ପୁଞ୍ଜିପତିମାନଙ୍କର ମୁଖା ଖୋଲିଦେଇ ଲେଖକ ଲେଖିଛନ୍ତି— “ପୁଞ୍ଜିପତିମାନେ ଜାତୀୟତା ନାମରେ ଯୁଦ୍ଧ ଚଳାନ୍ତି, ସାମ୍ରାଜ୍ୟ ଗଢ଼ନ୍ତି, ଅନ୍ୟ ଦେଶର ଲୋକଙ୍କୁ ଶୋଷଣ କରି ନିଜ ଦେଶରେ ସାମ୍ରାଜ୍ୟର ଗର୍ବ କରନ୍ତି । ଉଭୟ ଦେଶର ଚାଷୀ ଏବଂ ମୂଲିଆଙ୍କର କିନ୍ତୁ ଦଶା ଏକା .. ଉଭୟେ ଶୋଷିତ । ସେମାନଙ୍କ ଭିତରେ ବିରୋଧ କିଛି ନାହିଁ .. କେହି କାହାର ଲୋକସାନ କରେ ନାହିଁ .. ସେମାନେ ଖଟିକରି ଆପଣା ପେଟ ପୋଷନ୍ତି . ସେମାନେ ପରସ୍ପରର ଭାଇ .. ପୁଞ୍ଜିପତିମାନେ କେବଳ ନିଜ ଜାତିର ମଙ୍ଗଳରେ ନଥାନ୍ତି ; ସେମାନେ ଅର୍ଥ ପିଶାଚ । ଖାଲି ନିଜେ କିପରି ବେଶି ଲାଭ କରିବେ ତାହାହିଁ ତାଙ୍କର ଏକମାତ୍ର ଚିନ୍ତା ।” (ପୃ - ୫୮)

ଲେଖକ ‘ସାମ୍ୟବାଦ’କୁ ଏକ ବିପ୍ଳବ ବୋଲି ଆଖ୍ୟାତ କରିଛନ୍ତି । କେତେ ଉତ୍ଥାନ ପତନ ଅତିକ୍ରମ କରି ଆଧୁନିକ ସମାଜରେ ସାମ୍ୟବାଦୀ ଦର୍ଶନ ସ୍ୱୀକୃତି ଲାଭ କରିଛି । ସାମ୍ୟବାଦ ହେଉଛି ପତିତ, ପୀଡ଼ିତ, ମେହନତି ମଣିଷ ପାଇଁ ଏକ ରକ୍ଷା-କବଚ । ଶୋଷଣ ବିରୋଧରେ ଏହା ଏକ ପ୍ରବଳ ପ୍ରତିବାଦ । ଲେଖକଙ୍କ ଭାଷାରେ— “ସାମ୍ୟବାଦ ମଣିଷ ମାରିବା ପାଇଁ ନୁହେଁ, ମଣିଷକୁ ବଞ୍ଚେଇବା ଲାଗି ବ୍ୟବସ୍ଥା ।

ରଜାଠୁ ରାଜ୍ୟ ଛଡ଼ାଇ ନେଇଗଲେ, ଜମିଦାରର ଜମିତକ ଚାଷୀକୁ ଦେଇଦେଲେ, କଳକାରଖାନାକୁ ସରକାରୀ କରିଦେଲେ , ରଜା ଆଉ ରଜା ହୋଇ ନଥିବେ, ଜମିଦାର ଓ ପୁଞ୍ଜିପତି ବୋଲି ଆଉ ଦଳେ ନଥିବେ । ରାଜ୍ୟଯାକ ହୋଇଥିବେ ଖଟିଖିଆ… ଶ୍ରେଣୀହୀନ ସମାଜ । ସେ ଗୋଟାଏ ନୂଆ ଛାଞ୍ଚରେ ସମାଜ ଗଢ଼ା ହୋଇଥିବ… ଯାହାକୁ କୁହାଯାଏ ବିପ୍ଳବ ।" (ପୃ - ୬୧)

ଦିନେ ଲେଖକ ଗାନ୍ଧୀଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବାନରସେନାରେ ଯୋଗଦେଇ ଜେଲ ବରଣ କରିଥିଲେ । ମାତ୍ର ସେ ଗାନ୍ଧୀବାଦର ଅନ୍ଧସ୍ତାବକ ହୋଇ ନଥିଲେ । ନିଜର ଜ୍ଞାନର ପରିସର ବୃଦ୍ଧି ସଙ୍ଗେ ସଙ୍ଗେ ଲେଖକ ଅନୁଭବ କଲେ ଯେ ଗାନ୍ଧୀବାଦ ଏ ଦେଶର ସମସ୍ୟାକୁ ସମାଧାନ କରିପାରିବ ନାହିଁ । ତାହା ମଣିଷ ସମାଜର ଦୁଃଖ ନିରାକରଣ ପାଇଁ ଉପଯୁକ୍ତ ବ୍ୟବସ୍ଥା ନୁହେଁ । କାରଣ ଗାନ୍ଧୀଜୀ କଳର ବିରୋଧ କରୁଥିଲେ ମଣିଷ ବ୍ୟକ୍ତିତ୍ୱର ବିକାଶ ଲାଗି । ଲେଖକଙ୍କର ବଳିଷ୍ଠ ଯୁକ୍ତି ହେଲା— କଳକୁ ବର୍ଜନ କଲେ ପୁଣି ଆମେ ପଛକୁ ଫେରିଯିବା, ମଣିଷ ସମାଜକୁ ଫେରାଇନେବା ଅନ୍ଧାରି ଯୁଗକୁ । ଏହା କଣ ସ୍ୱାଗତଯୋଗ୍ୟ ଭାବନା କି ? ପୃଥିବୀର ସମସ୍ତେ ସବୁଠାରେ ଯଦି ଗାନ୍ଧୀବାଦକୁ ସ୍ୱାଗତ କରନ୍ତେ, ତେବେ କିଛି କହିବାର ନାହିଁ । ମାତ୍ର ତାହାତ କେବେହେଲେ ସମ୍ଭବ ନୁହେଁ । ବରଂ ଏହାଦ୍ୱାରା ଏତିକି ହେବ ଯେ ପୃଥିବୀର ଅନ୍ୟମାନେ ଗାନ୍ଧୀବାଦକୁ ଗ୍ରହଣ ନକଲେ ସେମାନେ ଅଧିକ ଧନୀ ହୋଇ ଗାନ୍ଧୀବାଦୀ ଦେଶକୁ ଶୋଷଣ କରି ଚାଲିବେ ।

ଲେଖକ ପରିଶେଷରେ ବିଶ୍ୱାସ ସ୍ଥାପନ କରିଛନ୍ତି 'କମ୍ୟୁନିଜମ୍' ସମାଜ-ବ୍ୟବସ୍ଥାରେ । ଏପରି ବ୍ୟବସ୍ଥାରେ ପିଲାଙ୍କର ପାଠପଢ଼ାଠୁ ବୁଢ଼ାବୁଢ଼ୀଙ୍କ ତତ୍ତ୍ୱ ସବୁ ଦେଶର ଇଜମାଇଲ ପାଣ୍ଠିରୁ ଚାଲିବ । ସେଥିପାଇଁ କୌଣସି ବ୍ୟକ୍ତି ଅଥବା ପରିବାରର ମୁଣ୍ଡ ଖେଳାଇବାକୁ ପଡ଼ିବ ନାହିଁ । କମ୍ୟୁନିଜମ୍ ଏପରି ଏକ ସମାଜ-ବ୍ୟବସ୍ଥା ଆଣିଦେବ, ଯେଉଁଠାରେ ଶୋଷଣ ଲୋପ ପାଇବ । ସମସ୍ତେ ସୁଖ ଓ ଶାନ୍ତିରେ ଜୀବନ ଯାପନ କରିବେ । ଲୋକଙ୍କୁ ବୁଝାଇଲା ଭଳି ଭାଷାରେ ଲେଖକ ଲେଖିଛନ୍ତି— "ପୁଞ୍ଜିବାଦ ଲୋପ ପାଇଲେ ଯେଝା ମିହନତର ଫଳ ସିଏ ଭୋଗ କରିବ । ଯେଝା ଦେଶ ସେଠାର ଲୋକ ସମ୍ଭାଳିବେ ; ସାରା ପୃଥିବୀର ଲୋକେ— ଜାତି, ଧର୍ମ, ବର୍ଣ୍ଣର ଭେଦ ଭୁଲି ଭାଇ ଭଳି ଚଳିବେ । ଯୁଦ୍ଧ କରିବାର କାରଣ ନଥିବ, ବାଦ ବିବାଦର ଅବସର ନଥିବ । ମୁକ୍ତି, ସାମ୍ୟ ଓ ମୈତ୍ରୀର ଯୁଗ ସତକୁ ସତ ପ୍ରତିଷ୍ଠା ହେବ । ପୃଥିବୀରେ ଅଖଣ୍ଡ ଶାନ୍ତି ବିରାଜିବ ।" (ପୃ ୮୪)

କବି ରଘୁନାଥ ଥିଲେ ବିପ୍ଳବ ଏବଂ ପ୍ରଗତିରେ ବିଶ୍ୱାସୀ । ମେହେନତି ମଣିଷର ଅଧିକାର ପାଇଁ ସେ ସର୍ବଦା ବ୍ୟାକୁଳ ହୋଇଛନ୍ତି । ସେ ପରିଶେଷରେ ଆସ୍ଥା ପୋଷଣ କରିଛନ୍ତି ଖଟିଖିଆ ମଣିଷର ଜୟଜୟକାରରେ । ହୋଇପାରେ, ପୁଞ୍ଜିବାଦୀ ଏବଂ ଲୁଟିଖିଆ ଲୋକେ କିଛିକାଳ ନିଜ ହାତଗଢ଼ା ଆଇନର ଅପପ୍ରୟୋଗ କରି ସର୍ବହରା

ମଣିଷକୁ ଶୋଷଣ କରି ପାରନ୍ତି, ତାହାକୁ ଜେଲ ଜୋରିମାନା ଦେଇ ଫାଶୀକାଠରେ କିଛୁକାଳ ଝୁଲାଇ ପାରନ୍ତି, ମାତ୍ର ପରିଶେଷରେ ବିପ୍ଳବର ଜୟ ହେବ ଏବଂ ଦୁର୍ବଳ ଶ୍ରେଣୀର ସୌଭାଗ୍ୟ ଫେରି ଆସିବ ଏବଂ ମଣିଷ ହସି ଉଠିବ ବିପ୍ଳବର ସବୁଜତାରେ ।

''ସଭ୍ୟତାର ଆଗେ'' ପୁସ୍ତକରେ ଲେଖକ ଏହିଭଳି ସାବଲୀଳ ଭାଷାରେ ନିଜର ପ୍ରାଞ୍ଜଳ ମତ ବ୍ୟକ୍ତ କରିଛନ୍ତି ଲୋକଶିକ୍ଷା ଉଦ୍ଦେଶ୍ୟରେ ।

### ଓଡ଼ିଆ ପ୍ରବନ୍ଧ-ସାହିତ୍ୟକୁ ରଘୁନାଥଙ୍କ ଦାନ :

ନାନା କାରଣରୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଲା । ପ୍ରାକ୍-ସ୍ୱାଧୀନତା କାଳରେ ସାହିତ୍ୟ ପତ୍ରିକାରେ ଯେପରି ମନନଶୀଳ ପ୍ରବନ୍ଧ ସ୍ଥାନିତ ହେଉଥିଲା, ଚଳିତ ଶତାବ୍ଦୀର ଉତ୍ତର-ଦଶକରେ ତାହା ଆଉ ସମ୍ଭବ ହେଲନାହିଁ । କବି ରଘୁନାଥ ନିଜର କାବ୍ୟସାଧନାରେ ଯେପରି ପ୍ରୋଜ୍ଜ୍ୱଳ ବ୍ୟକ୍ତିତ୍ୱର ପରିଚୟ ଦେଇଛନ୍ତି, ସୃଷ୍ଟି-ଧର୍ମୀ ସ୍ୱଳ୍ପ ହେଲେହେଁ ଗଦ୍ୟଲେଖାରେ ଲେଖକଙ୍କର ଅପୂର୍ବ ମନନଶୀଳତା ଏବଂ ପ୍ରାଞ୍ଜଳ ଅଭିବ୍ୟକ୍ତିର ଛାପ ଅଙ୍କିତ ହୋଇଅଛି । ତାଙ୍କର ପ୍ରକାଶିତ ପ୍ରବନ୍ଧମାନଙ୍କ ମଧ୍ୟରେ 'ବିପ୍ଳବର ଇତିହାସ', 'ଓଡ଼ିଆ ବୋଲି ଏକ ଜାତି ଥିଲା-ତାହାର ବି ଏକ ଭାଷା ଥିଲା', 'ସାମାଜିକ ଚେତନା ସୃଷ୍ଟିରେ ସାହିତ୍ୟର ଭୂମିକା', 'ଶ୍ରେଣୀ ଚେତନା', 'ଶ୍ରେଣୀ ବିଗ୍ରହ', 'ଚତୁର୍ବର୍ଣ୍ଣଂ ମୟାସୃଷ୍ଟଂ', 'କଃ ପନ୍ଥା', 'ଅଟେସିକେପ୍ସ୍', 'ବିପ୍ଳବୀ ସାହିତ୍ୟ' ଓ 'ମଧ୍ୟବିତ୍ତର ଭୂମିକା' ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ରଘୁନାଥଙ୍କ ଏହି ସ୍ୱଳ୍ପ କେତୋଟି ରଚନା ଅତ୍ୟନ୍ତ ଭିନ୍ନ ସ୍ୱାଦର । ଏଥିରେ ଗତାନୁଗତିକର ପଦଧ୍ୱନି ଆଦୌ ଶୁଣିବାକୁ ମିଳେନାହିଁ । ବିପ୍ଳବୀ କବି ଗଦ୍ୟଲେଖା ମାଧ୍ୟମରେ ନିଜର ବୈପ୍ଳବିକ ଅନୁଚିନ୍ତାର ଝଙ୍କାର ଶୁଣାଇଛନ୍ତି । ଯେପରି 'ବିପ୍ଳବର ଇତିହାସ' ପ୍ରବନ୍ଧରେ ସେ ବିଶ୍ୱବ୍ୟାପୀ ବିପ୍ଳବର ଇତିହାସ ଚିତ୍ରଣ କରିଛନ୍ତି । ବିପ୍ଳବ ଏକ ଧାରକରା ଜିନିଷ ନୁହେଁ କିମ୍ବା ଏହା ଏକ ଛାଞ୍ଚରେ ମପାଯାଇ ପାରିବ ନାହିଁ । 'ଶୋଷିତ ଶ୍ରେଣୀର ଏହି ସଂଗ୍ରାମ ବିଶ୍ୱବ୍ୟାପୀ ହେଲେହେଁ ସ୍ଥାନ କାଳ ପାତ୍ର ଭେଦରେ ଏହାର ରଣ କୌଶଳ ଭିନ୍ନ ଭିନ୍ନ ଆକାର ଧାରଣ କରିବହିଁ କରିବ ।' ଏଥିପାଇଁ ଷ୍ଟାଲିନ, ମାଓ-ସେ-ତୁଂ, ଲିଓ ସାଉଚି, ହୋ: ଚି: ମିନ୍, ଫାଇଡେଲ କାଷ୍ଟ୍ରୋ ପ୍ରଭୃତି ବିପ୍ଳବୀମାନଙ୍କର ରଣକୌଶଳ ବିଶ୍ଳେଷଣ କରାଯାଇପାରେ । ସମସ୍ତଙ୍କର ଲକ୍ଷ୍ୟ ସମାନ, କିନ୍ତୁ ଦେଶ ଓ ସମାଜ ପରିପ୍ରେକ୍ଷିରେ ବିପ୍ଳବର ପନ୍ଥା ଭିନ୍ନ ହେବା ସ୍ୱାଭାବିକ । ଲେଖକ ମତ ପ୍ରକାଶ କରିଛନ୍ତି ଯେ କୌଣସି ସମାଜରେ ସ୍ଥିତାବସ୍ଥାରେ ପରିବର୍ତ୍ତନ ଆପଣାଛାଏଁ ଘଟିଯାଏ ନାହିଁ । ସାମ୍ୟବାଦୀ ସମାଜ ଆପେ ଆପେ ପ୍ରତିଷ୍ଠିତ ହୋଇପାରିବ ନାହିଁ । ଏଥିପାଇଁ ସମସ୍ତ ସୁଯୋଗକୁ ଅପେକ୍ଷା କରି ପୁଞ୍ଜିବାଦୀ ସମାଜ ଉପରେ ଆଘାତ କରିବାକୁ ହୋଇଥାଏ । 'ଶ୍ରେଣୀ ଚେତନା' ଓ 'ଶ୍ରେଣୀ ବିଗ୍ରହ' ପ୍ରବନ୍ଧ ଦ୍ୱୟରେ ଲେଖକ ଶ୍ରେଣୀ ସଂଘର୍ଷର ଇତିହାସ ବ୍ୟାଖ୍ୟାନ କରିଛନ୍ତି । ସର୍ବତ୍ର

ମେହନତୀ ଶ୍ରେଣୀ ପାଇଁ ବ୍ୟାକୁଳତା ପ୍ରକାଶିତ ହୋଇଛି । ଶ୍ରେଣୀ ସଂଘର୍ଷ ଜରିଆରେ 'ଖଟିଖିଆ ଲୋକ' ଜାଗ୍ରତ ହେବ । ନିଜର ଦାବି ସମ୍ପର୍କରେ ସଚେତନ ହୋଇ ସେ ସଂଗ୍ରାମର ଆହ୍ୱାନ ଦେବ । ସେତେବେଳେ ଆଉ ପୁଞ୍ଜିପତି ଗୋଷ୍ଠୀ ମୁକାବିଲା କରି ପାରନ୍ତି ନାହିଁ ।

'ଚତୁର୍ବର୍ଣ୍ଣଂ ମୟାସୃଷ୍ଟଂ' ଏକ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧ । ମହାଭାରତ, ଶ୍ରୀମଦ୍ ଭାଗବତ ଗୀତା, ମନୁସ୍ମୃତି, ବୌଦ୍ଧ ସାହିତ୍ୟରୁ ଲେଖକ ବହୁ ଉଦ୍ଧୃତି କରିଆରେ ଜାତିଗଠନର ଇତିବୃତ୍ତ, ତାହାର ସାମାଜିକ ପ୍ରତିକ୍ରିୟା ଏବଂ ସୁଦୂର ପରିଣତି ସମ୍ପର୍କରେ ଦୀର୍ଘ ଆଲୋଚନା କରିଛନ୍ତି । ଏହି ସମ୍ପର୍କରେ ଲେଖକଙ୍କର ମନୋଭାବ ଏହିପରି— "ବର୍ଣ୍ଣ ବିଚାରର ନୈସର୍ଗିକ ଓ ବୈଜ୍ଞାନିକ ପଦ୍ଧତି ପରିତ୍ୟାଗ କରିବା ହେତୁ ସମାଜରେ ବହୁ ବ୍ୟକ୍ତି ଉପଯୁକ୍ତ ଯୋଗ୍ୟତା ନଥାଇ ଉଚ୍ଚ ପଦ ପଦବୀରେ ଅଧିଷ୍ଠିତ ହୋଇଥାନ୍ତି ଏବଂ ଉପଯୁକ୍ତ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ତା'ର ନ୍ୟାଯ୍ୟ ପଦ ଓ କର୍ମ ସଂସ୍ଥାନରୁ ବଞ୍ଚିତ ହୋଇଥାଏ ।"

ଲେଖକ ଥିଲେ ଜଣେ ସଫଳ ଆଇନଜୀବୀ । "କଃ ପନ୍ଥା" ପ୍ରବନ୍ଧରେ ଭାରତର ସାମ୍ବିଧାନିକ ବ୍ୟବସ୍ଥାର ପର୍ଯ୍ୟାଲୋଚନା କରାଯାଇଛି । ଏଥିରେ ଲେଖକଙ୍କର ପ୍ରଗତିଶୀଳ ଆଭିମୁଖ୍ୟର ପରିଚୟ ମିଳିଥାଏ ।

ଅଳ୍ପ କେତୋଟି ପ୍ରବନ୍ଧରେ ଲେଖକ ସାହିତ୍ୟ ସମ୍ପର୍କରେ ଆଲୋଚନା କରିଥିବା ଜଣାଯାଏ । 'ଅରସିକେଷୁ' ପ୍ରବନ୍ଧରେ ଓଡ଼ିଆ ସାହିତ୍ୟରେ ଆଲୋଚନାର ଦୁର୍ବଳତାକୁ ଅତ୍ୟନ୍ତ କଠୋର ଭାବରେ ଆକ୍ଷେପ କରାଯାଇଛି । ଯେଉଁମାନେ ତୋଷାମୋଦକାରୀ ହୋଇ ଲେଖମା ରଚନା କରିଥାଆନ୍ତି, ସେମାନେ ସମାଜର ଶତ୍ରୁ ସ୍ୱରୂପ । କାରଣ ସାହିତ୍ୟ କାହାର ଇଜମାଲିଆ ସମ୍ପତ୍ତି ନୁହେଁ । ଏହା ସମାଜରୁ ଉଦ୍ଭୂତ ଏବଂ ଏହାର ଉପଯୋଗିତା ସମଗ୍ର ସମାଜ ପାଇଁ । ଏହା ଭୁଲିଯିବା ଉଚିତ ନୁହେଁ ଯେ ସମାଜର ପ୍ରଗତିରେ ସାହିତ୍ୟର ଭୂମିକା ଅନସ୍ୱୀକାର୍ଯ୍ୟ । ତେଣୁ 'ସାମାଜିକ ଚେତନା ସୃଷ୍ଟିରେ ସାହିତ୍ୟର ଭୂମିକା' ପ୍ରବନ୍ଧରେ ରଘୁନାଥ ଲେଖିଛନ୍ତି—'ଜୀବନ ପ୍ରବାହର ସମ୍ପୂର୍ଣ୍ଣ ଦୃଷ୍ଟି ଉପରେ ପର୍ଯ୍ୟବସିତ ବିଚାରର ମାର୍ଗ ମାନବ ସମାଜକୁ ବିକାଶ ଦିଗରେ ନେଇଯାଏ; ଖଣ୍ଡିତ ଦୃଷ୍ଟି ଉପରେ ଯେଉଁ ବିଚାର କରାଯାଏ, ସେ ପନ୍ଥା ବିନାଶର । ଜୀବନ ଦର୍ଶନର ଏ ମୌଳିକ ସୂତ୍ର ସାମାଜିକ ଜୀବନର ପ୍ରତିକ୍ଷେତ୍ରରେ ପ୍ରଯୁଜ୍ୟ । ବିକାଶଧର୍ମୀ ବିଚାର-ଧାରାକୁ ଅନୁସରଣ କରି ଯେଉଁ ସାହିତ୍ୟ ସୃଷ୍ଟି କରାଯାଏ, ତାହା ସାମାଜିକ ଚେତନାର ଅଭିବୃଦ୍ଧି ସାଧନ କରିଥାଏ । ଅନ୍ୟଥା ଏହା ବନ୍ଧ୍ୟତାବହନ ପାଣ୍ଡିତ୍ୟ, ସାମାଜିକ ଚେତନାର ମୁଖାବରଣ ଅଜ୍ଞାନ ଅନ୍ଧକାରର ଧୂଆଁବାଣ, ସମାଜର ସ୍ୱାସ୍ଥ୍ୟହାନିକାରକ 'ହାଲମାରି ମଜାଦାର ଚୁନାଚୁର' ପରିବେଷଣ । ସାହିତ୍ୟିକ ଉପରେ ଗୁରୁ ସାମାଜିକ ଦାୟିତ୍ୱ ନ୍ୟସ୍ତ; ସେ ଲେନିନଙ୍କ ଭାଷାରେ "ପ୍ରାଣର କାରିଗର" "Engineer

of the soul". ବୈଦିକ ଯୁଗରେ ସେ ଯାଜ୍ଞିକ ପୁରୋଧାମାନଙ୍କ ମଧ୍ୟରେ ଅନ୍ୟତମ। ପାଣ୍ଟଲେଖି ଭ୍ରଷ୍ଟ ବା ସ୍ୱପ୍ନବିଳାସୀ ଖିରୁ ପଳାୟନପନ୍ଥୀ ସେ ମର୍ଯ୍ୟାଦାର ଅଧିକାରୀ ହୋଇ ନପାରେ।" ସେହିପରି ଲେଖକ 'ବିପ୍ଳବୀ ସାହିତ୍ୟ' ପ୍ରବନ୍ଧରେ ଅବାସ୍ତବ କଳା, କଳ୍ପନାବିଳାସୀ ସାହିତ୍ୟକୁ କଠୋର ସମାଲୋଚନା କରିଛନ୍ତି। ଏକ ଭୁର୍ଜ୍ଜୁୟାଧର୍ମୀ ଶୋଷିତ ସମାଜରେ ଏହା ହୁଏତ ସାହିତ୍ୟିକର ଧର୍ମ ହୋଇପାରେ, ମାତ୍ର ପ୍ରଗତିଶୀଳ ସମାଜରେ ପ୍ରତ୍ୟେକ ସାହିତ୍ୟିକ ସମାଜ ଉଦ୍ଦେଶ୍ୟରେ ଲେଖନୀ ଚାଳନା କରିବା ଉଚିତ। ଜନଗଣର ଈପ୍ସିତ ମନୋଭାବ ସାହିତ୍ୟରେ ରୂପାୟିତ ହେବା ଆବଶ୍ୟକ। ସାହିତ୍ୟ ଯଦି ବାସ୍ତବ ପକ୍ଷେ ଜନଜାଗୃତି ସମ୍ଭବ କରି ନପାରିଲା, ତେବେ ସେପରି ସାହିତ୍ୟ ହେବ ସର୍ବାଦୌ ପ୍ରତିକ୍ରିୟାଶୀଳ।

'ଓଡ଼ିଆ ବୋଲି ଏକ ଜାତି ଥିଲା – ତାହାର ବି ଏକ ଭାଷା ଥିଲା'— ଶୀର୍ଷକ ଲେଖାଟି ଏକ ଭିନ୍ନ ସ୍ୱାଦ ଓ ରୁଚିର ପ୍ରବନ୍ଧ। ଏଥିରେ ଲେଖକ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଓଡ଼ିଶାର ସାମାଜିକ ସମସ୍ୟାକୁ ବିଶ୍ଳେଷଣ କରିଛନ୍ତି। ସର୍ବଭାରତୀୟ ରାଜନୀତିକ ଦର୍ଶନ ନାମରେ ଯେଉଁ କେତେକ ନେତା ଅଥବା ରାଜନୈତିକ ଦଳ ଓଡ଼ିଶାର ସ୍ୱାର୍ଥକୁ ପଦାଘାତ କରିବାରେ ଲାଗିଛନ୍ତି, ସେମାନଙ୍କର ଛଳନାମୟ ସ୍ୱାର୍ଥ ସର୍ବସ୍ୱ ମୁଖାଟି ଲେଖକ ଉଦ୍‌ଘାଟନ କରିଦେଇଛନ୍ତି।

ଓଡ଼ିଶାର ନିପୀଡ଼ିତ ସରଳ ଜନସାଧାରଣ ଆଜି କାଶ୍ମୀର ଓ କୋଏମ୍ବାଟୁରରେ ଦାଦନ ଶ୍ରମିକ ହୋଇ କଷ୍ଟଭୋଗ କରୁଛି। ଆସାମ ଓ ଭିଗନରେ କ୍ରୀତଦାସ ଭଳି ଶୋଷିତ ଓ ଲାଞ୍ଛିତ ହେଉଛି। ଅଥଚ ସେହିମାନଙ୍କର ଦୁଃଖକୁ ଏଡ଼ି ଦେଇ ଜନସ୍ୱାର୍ଥ-ବିରୋଧୀ ଦୁର୍ବଳ ନେତୃତ୍ୱ କେବଳ ଜଗନ୍ନାଥ ଧର୍ମ ଓ ମହାଭାରତୀୟ ଭାବ କଥାଟି ବଖାଣି ବସେ। ଓଡ଼ିଶାରେ ଏହିଭଳି ଦୁଷ୍ଟ ନାୟକମାନଙ୍କ ଯୋଗୁ ସିଂହଭୂମି, ମେଦିନୀପୁର, ବିଶାଖାପାଟଣା, ବସ୍ତର, ଜଳନ୍ତର, ଷଢ଼େଇକଳା, ଖରସୁଆଁ ପ୍ରଭୃତି ଉପାନ୍ତ ଅଞ୍ଚଳରେ ଆଜି ଓଡ଼ିଆ ଭାଷା ଓ ସଂସ୍କୃତି ବିଲୁପ୍ତ ପ୍ରାୟ। ଏହି ପରିପ୍ରେକ୍ଷିରେ ଏକ ଜାତୀୟତାବାଦୀ ବଳିଷ୍ଠ ନେତୃତ୍ୱର ବିକାଶ ପାଇଁ ଲେଖକ ଆହ୍ୱାନ ଜଣାଇଛନ୍ତି।

ମୋଟ ଉପରେ ଶ୍ରୀ ରଘୁନାଥ ଦାସ ଏକାଧାରରେ ଜଣେ ପ୍ରତିଭାସମ୍ପନ୍ନ କବି ଓ ଶକ୍ତିଶାଳୀ ପ୍ରାବନ୍ଧିକ। ଲିଖିତ ପ୍ରବନ୍ଧଗୁଡ଼ିକର ଉଚ୍ଚାଙ୍ଗ ମୂଲ୍ୟବୋଧ, ଶୈଳୀ, ବିଷୟବସ୍ତୁ ଏବଂ ପରିବେଷଣ ଦୃଷ୍ଟିରୁ ଅତ୍ୟନ୍ତ ଉଚ୍ଚ କୋଟିର ସର୍ବଜନ ସ୍ୱୀକୃତ। ସାମ୍ପ୍ରତିକ କାଳର ଓଡ଼ିଆ ଗଦ୍ୟ ସାହିତ୍ୟରେ ସେଗୁଡ଼ିକରେ ସ୍ଥାନ ଅବିସମ୍ବାଦିତ। ଏପରି ଆଦର୍ଶବାଦୀ ସମାଜଧର୍ମୀ ଓ ସମ୍ବେଦନଶୀଳ ପ୍ରବନ୍ଧ ଓଡ଼ିଆରେ ଖୁବ କମ ଲେଖାଯାଇଛି ବୋଲି ସ୍ୱୀକାର କରିବାକୁ ହେବ।

□□

# ରଘୁନାଥ ଦାସ :

# ପ୍ରତିଭାର ବିଚ୍ଛୁରିତ ଦିଗନ୍ତ : ଗଦ୍ୟ

ଡକ୍ଟର ନଟବର ଶତପଥୀ

ସ୍ବର୍ଗତ ଦାସ ମୁଖ୍ୟତ କବି । ମାତ୍ର ତାଙ୍କ ସାହିତ୍ୟିକ ଜୀବନର ଦିଗନ୍ତ କବିତାର ଛନ୍ଦରେ ବନ୍ଦୀ ନୁହେଁ—ଗଦ୍ୟର ବୈଚିତ୍ର୍ୟରେ ମଧ୍ୟ ବିଚ୍ଛୁରିତ—ଅରୁଣର କିରଣ ପରି ନବ ନବ ରୂପରେ ବିଭାସିତ । ତାର ପରିଚୟ ନିମ୍ନରେ ପ୍ରଦତ୍ତ ହେଉଛି । ଏ ସୂଚନା ପୂର୍ଣ୍ଣାଙ୍ଗ ନୁହେଁ, ଆଂଶିକ ମାତ୍ର । ସେ ଆମର ଅବଗତର ପରିଧି ବାହାରେ ଥିଲେ ଜଣେ ଶାଶ୍ବତ ସ୍ରଷ୍ଟା ; ସୃଷ୍ଟିର ବେଦନାହିଁ ବୁଝିଥିଲେ ସେ, ହେଲେ ତାର ସୁରକ୍ଷାରେ ଯତ୍ନବାନ ନଥିଲେ । ଏଇଠି ସ୍ରଷ୍ଟା ଓ ସୃଷ୍ଟି ଭିତରେ ସେତୁହୀନତା । ପାଠକର ଓ ସମାଜର ଦାୟିତ୍ୱ ସେହି ସୃଷ୍ଟିକୁ ଖୋଜିବା ।

## ॥ ପରିଚୟ ॥

### (କ) ଆଦ୍ୟ ପର୍ଯ୍ୟାୟ :

କବିତାର ସମାନ୍ତରାଳ ଭାବେ ଏହି ପର୍ଯ୍ୟାୟର ଗଦ୍ୟ ସୃଷ୍ଟି । ଏଥି ମଧ୍ୟରୁ ପ୍ରାୟତଃ ସବୁ ଗ୍ରନ୍ଥ ପ୍ରକାଶିତ, କିନ୍ତୁ ଅଧୁନା ଅଲଭ୍ୟ ।

୧) ରାଜନୀତି ଆଜି ଆମେ : ପ୍ର. ପ୍ର. ୧୯୪୮, ପୃଷ୍ଠା-୮୮ (ଡିମାଇ), ଭାରତୀ ବିହାର, ଗୃଜୁଲିଆପଟ୍ଟି, କଟକ । ମୂଲ୍ୟ ଥିଲା ଏକ ଟଙ୍କା ।

୨) ସଭ୍ୟତାର ଆଗେ : ପ୍ର. ପ୍ର. ୧୯୫୩, ପୃଷ୍ଠା-୪୮ (ଡିମାଇ), ଗଣ ପ୍ରକାଶନୀ, କଟକ, ମୂଲ୍ୟ ପାଞ୍ଚଅଣା ଦୁଇ ପଇସା । ଚନ୍ଦ୍ରମଣି ପାଣିଗ୍ରାହୀ ଥିଲେ ଗଣପ୍ରକାଶନୀର ସମ୍ପାଦକ ଓ ସେ ଘୋଷଣା କରିଥିଲେ—"ଆଦିମ ସମାଜ ବିଷୟରେ ଏ ପୁସ୍ତିକା ଯେ ସ୍ଥୂଳ ଧାରଣା ଦେଲା, ତାହାକୁ ସମୃଦ୍ଧ ଓ ପରିବର୍ଦ୍ଧିତ କରିବ ଲେଖକଙ୍କ ପରବର୍ତ୍ତୀ ଅବଦାନ 'ପ୍ରାଚୀନ କାଳରେ' । ଗ୍ରୀକ୍ ଓ ରୋମ ସଭ୍ୟତାରୁ ପାଶ୍ଚାତ୍ୟର ପରମ୍ପରା, ପ୍ରାଚୀନ ଆର୍ଯ୍ୟ ସଭ୍ୟତାରୁ ଭାରତୀୟ ପରମ୍ପରାକୁ ଫୁଟାଇବାକୁ ଯାଇ ପ୍ରାଚୀନ ସମାଜର ଅନୁଷ୍ଠାନଗୁଡ଼ିକ ବିଷୟରେ ଲେଖକ ଯେଉଁ ନୂତନ

ଆଲୋକପାତ କରିଛନ୍ତି ତାହା ଉପାଦେୟ । ସମସ୍ତଙ୍କର ଉପଭୋଗ୍ୟ ହେବ ନିଶ୍ଚୟ ।"
ସମ୍ପାଦକ ଗଣ ପ୍ରକାଶନୀ । ମାତ୍ର ଏ ଅବଦାନ ଆଲୋକ ସ୍ପର୍ଶ କରିଥିବାର କୌଣସି ସୂଚନା ନାହିଁ ।

୩) ସୋଭିଏଟ୍ ରୁଷିଆର ଶାସନ ବଧି :

ସାଧାରଣତ 'ଷ୍ଟାଲିନ-ସମ୍ବିଧାନ' ନାମରେ ପ୍ରଚଳିତ ସମ୍ବିଧାନର ବିଶ୍ଳେଷଣ ପ୍ରସଙ୍ଗରେ ଏହା ରଚିତ । ଅନୁବାଦ ହେଲେ ମଧ୍ୟ ଅନୁବାଦ ପରି ଲାଗେ ନାହିଁ ।

୪) ରୁଷିଆର ରୂପକଥା :

୫) ଅଜବ ଦେଶରେ ଏଲିସ : ୧୯୪୯ – ଗ୍ରନ୍ଥଟି ରୁଷିଆର ଲେଖକ Louis Carrols ଙ୍କର Alis in wonder Land ର ଇଂରେଜୀ ଗ୍ରନ୍ଥରୁ ଅନୂଦିତ । ଅନୁବାଦ ହେଲେବି ଏହା ମୌଳିକ ପରି ଲାଗେ । ଯେମିତିକି ସେ ଘଟଣାର ପ୍ରଥମ ସ୍ରଷ୍ଟାର କଳ୍ପନାରେ ଉପଲବ୍ଧ କରିଛନ୍ତି । ଏହାକୁ ଓଡ଼ିଆରେ କୁହାଯାଉ କାବେଲଙ୍କ ଦ୍ୱାରା ପୁନଃକଥିତ ।

୬) ପ୍ରେମର ନକସ : ୧୯୪୮

୭) ଫାଶୀ ଆସାମୀର ଶେଷ ଚିଠି : ପ୍ର. ପ୍ର. ୧୯୫୨ (ଦ୍ୱିମାଇ)
ଯୁଗୋସ୍ଲୋଭିଆର ସ୍ୱାଧୀନତା ସଂଗ୍ରାମୀ ଓ ଜାତୀୟ ନେତା ଜୁଲିୟସ ଫ୍ୟୁଚିକ୍ ନାଜୀ ଅତ୍ୟାଚାରରେ ବନ୍ଦୀ ହୋଇ ତଥା ବହୁ ଶାରୀରିକ ଯନ୍ତ୍ରଣା ସହି ଗେଷ୍ଟାପୋଙ୍କ ଦ୍ୱାରା ନିହତ ହୋଇଥିଲେ । ବନ୍ଦୀ ଶାଳାରେ (ପେଙ୍କେଗସବ୍ରୁକ) ଥିବା ସମୟରେ ଅନାବନା କାଗଜରେ ପେନସିଲରେ ଯାହା ଲେଖିଥିଲେ ଗୋପନରେ ତାହା ବାହାରକୁ ଆସିଥିଲା । ସ୍ୱାଧୀନତା ପରେ ତାଙ୍କ ପତ୍ନୀଙ୍କ କର୍ତ୍ତୃକ ଏହା Notes from gallows ନାମରେ ପ୍ରକାଶ ପାଇଥିଲା । ଗ୍ରନ୍ଥ ଲୋମହର୍ଷଣକାରୀ ଘଟଣାପୂର୍ଣ୍ଣ – ନାଜୀ ଅତ୍ୟାଚାରର ଏକ ଐତିହାସିକ ଦଲିଲ । ସ୍ୱର୍ଗତ ଦାସ ତାର ଅନୁବାଦ କରିଥିଲେ – ଓଡ଼ିଆ ପାଠକଙ୍କ ପାଇଁ ।

ଖ) ଦ୍ୱିତୀୟ ପର୍ଯ୍ୟାୟ—ଗଳ୍ପ :

ସେ କେତୋଟି ଗଳ୍ପ ଲେଖିଥିଲେ ତାହା ଗପ ହୋଇ ରହିଛି । ଆମ ହାତରେ ପଡ଼ିଥିବା ସଂଖ୍ୟା ୭ଟି । ୧୯୩୯-୫୧ ମଧ୍ୟରେ କବିତ୍ୱର ଯେଉଁ ବିମଳ ଝଙ୍କାର ପାଠକ ପ୍ରାଣରେ ବିଦ୍ରୋହ ଡମରୁ ବଜାଇଥିଲା, ତାର ଏକ କମ୍ପନ ରୂପେ ସମାଜର ଦ୍ୱନ୍ଦ୍ୱ-ସଙ୍କୁଳ ରୂପକୁ ପ୍ରକଟ କରିଥିଲା ଏଇ କେତୋଟି ଗଳ୍ପ ।

୫

୧) 'ମାଷ୍ଟର', 'ସ୍ୱଗନ', 'ଯାତ୍ରାପଥେ', ଗଙ୍ଗାଧର ରଥଙ୍କ ସମ୍ପାଦକ 'କଅଟି ଗପ'ରେ ସ୍ଥାନ ପାଇଥିଲା । ଏ ସଙ୍କଳନ କଟକର ସଟଙ୍କଡ ପ୍ରେସ, ଆଲିଶା ବଜାର କର୍ତ୍ତୃକ ପ୍ରକାଶିତ ।

୨) 'ଗନ୍ଧ ଓ କାହ୍ନିଙ୍କ ମଲ୍ଲ', 'ଶଙ୍ଖ' (୧ମ ବର୍ଷ ୯ମ ସଂଖ୍ୟା)ରେ ଓ 'ସଙ୍ଗମ' ଚତୁରଙ୍ଗ ପତ୍ରିକାରେ ପ୍ରକାଶ ପାଇଥିଲା ।

୩) 'ସବୁଜ ବିପ୍ଳବ'-ଅଗ୍ନିବୀଣା-ଜାନୁୟାରୀ' ୭୪ରେ ପ୍ରକାଶିତ । (ମାଷ୍ଟର ଓ ଯାତ୍ରା-ପଥେ ଅଗ୍ନିବୀଣାର ଜୁଲାଇ ଓ ଜୁନ ୭୩ ସଂଖ୍ୟାରେ ଯଥାକ୍ରମେ ପୁନଃପ୍ରକାଶ ପାଇଥିଲା ।) ଗଳ୍ପଗୁଡ଼ିକର ବିଶ୍ଳେଷଣ ଅନ୍ୟତ୍ର କରାଯିବ । ମାତ୍ର ଏଠାରେ 'ମାଷ୍ଟର' ଗଳ୍ପର ସୂଚନା ମାତ୍ର ଦେଉଛୁ—୧୦୦ ଧାଡ଼ି (ପ୍ରାୟ ୪୩୦ ଶବ୍ଦ)ରେ ରଚିତ ସଂକ୍ଷିପ୍ତ ଏ ଗପଟି ନିରାଶ୍ରୟ ବାଳକର ମୃତ୍ୟୁ ସମ୍ପର୍କିତ । ବର୍ଣ୍ଣନାରେ ଇମ୍ପ୍ରେସନ ସହିତ ବାସ୍ତବତାର ମିଶ୍ରଣ ଅଦ୍ଭୁତ ପରିବେଶ ଆଙ୍କିଛି ମୃତ୍ୟୁ ସମୟର ଚିତ୍ର ଭିତରେ । ସାମାଜିକ ବାସ୍ତବତାର ନିଖୁଣ ଚିତ୍ର ଓ କାରୁଣ୍ୟର ଆଧିକ୍ୟ ପରିସମାପ୍ତି ମୃତ୍ୟୁର କାରଣକୁ ଆହୁରି ଉଦ୍ଘୋଷିତ କରିଛି । ସାମାଜିକ ବାସ୍ତବତାର ସମ୍ୟକ୍ ପରିଚୟ ଦେବାରେ ଗଳ୍ପଟି ଓଡ଼ିଆ ସାହିତ୍ୟରେ ଅନନ୍ୟ ।

ଗ) ପ୍ରବନ୍ଧ, ଆଲୋଚନା :

ନିଜ ନାମ ଓ ଛଦ୍ମ ନାମରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

୧) ଶାନ୍ତି କପୋତ – ସହକାର – ୧୯୫୧, ୨ୟ ସଂଖ୍ୟା

୨) ସାହିତ୍ୟିକ ଅପରାଧର ବିଗ୍ରହ – ସହକାର – ୧୯୫୨, ୩ୟ ସଂଖ୍ୟା

୩) ଇଂରାଜୀ ସାହିତ୍ୟର ଇତିହାସ - ଚତୁରଙ୍ଗ - ଶୁକଦେବ ଶର୍ମା ନାମରେ ୧୯୫୭ରୁ୬୫ ମଧ୍ୟରେ ୧୨ଟି ସଂଖ୍ୟାରେ ପ୍ରକାଶିତ ।

୪) ମାକ୍ସିମ ଗର୍କୀଙ୍କ ଜୀବନୀ - ଚତୁରଙ୍ଗରେ ପ୍ରକାଶିତ ।

୫) ସମଦୃଷ୍ଟି - ଦୈନିକ ଆଶା - ୧୯୪୭ – ଦାଇମନ ନାମରେ ପ୍ରକାଶିତ ।

୬) ସମାଜ ଓ ଶ୍ରେଣୀ ବିଗ୍ରହ ସମ୍ପର୍କରେ – ଅଗ୍ନିବୀଣା - ଡିସେମ୍ବର ୭୩ ଓ ଜାନୁୟାରୀ ୭୪ରେ ବେଲିଲସେଣ ନାମରେ ପ୍ରକାଶିତ ।

୭) ଶ୍ରେଣୀ ବିଗ୍ରହ ଓ ଶ୍ରେଣୀ ଚେତନା ( ମଧ୍ୟବିତ୍ତର ଭୂମିକା ) – ନିଜ ନାମରେ ଅଭିଯାତ୍ରୀ-ଡିସେମ୍ବର ୮୦ରେ ।

୮) ଚତୁର୍ବର୍ଣ୍ଣଂ ମୟାସୃଷ୍ଟଂ - ଝଙ୍କାର - ୩୪/୯ ସଂଖ୍ୟା – ନିଜନାମରେ ।

୯) ସାମାଜିକ ଚେତନା ସୃଷ୍ଟିରେ ସାହିତ୍ୟର ଭୂମିକା – ଜନନାମ — ଝଙ୍କାର ୨୮/୩ ସଂଖ୍ୟା (ଜୁନ / ୭୬) .

୧୦) ବିପ୍ଳବୀ ସାହିତ୍ୟ - ଆବର୍ତ୍ତି - ମାର୍ଚ୍ଚ ୧୯୮୩

୧୧) ବିପ୍ଳବର ଇତିହାସ - ବେଲାଲସେଣ (ଛଦ୍ମନାମ) - ଅଗ୍ନିବୀଣା

୧୨) କୋଣାର୍କ ପରିକ୍ରମା - (ସନ୍ଦର୍ଭଣ୍ଟି ନାମରେ) ଇସ୍ତାହାର ୧୯୮୧

୧୩) ଅରଷିକେଷ୍ଟ – ଅଗ୍ନିବୀଣା - ନଭେମ୍ବର

୧୪) କଃ ପନ୍ଥା - ପ୍ରଗତିବାଦୀ ସାହିତ୍ୟ ବିଶେଷାଙ୍କ - ୧୯୬୭

୧୫) ଓଡ଼ିଆ ବୋଲି ଏକ ଜାତି ଥିଲା ତାର କି ଏକ ଭାଷା ଥିଲା – ପ୍ରଗତିବାଦୀ ୨ ଓ ୩ ଜୁଲାଇ ୧୯୮୩ |

ପ୍ରସଙ୍ଗତ ସ୍ୱର୍ଗତ ଦାସଙ୍କର ଅନ୍ୟ କେତୋଟି ରଚନାର ସୂଚନା ଏଠାରେ ଦେବା ଇଚ୍ଛା ସଙ୍କୁଚିତ କରିପାରୁନାହିଁ |

ଏକାଙ୍କିକା - 'ମେଜିକ' - ସହକାରର ୭ଷ୍ଟ, ୬ମ, ୮ମ ସଂଖ୍ୟା ୧୯୪୯ ରେ ପ୍ରକାଶ ପାଇଥିଲା | 'ଝଡ଼' ନାମରେ ଏକ ବେତାର ନାଟିକା ୧୯୪୮ରେ କଲିକତା କେନ୍ଦ୍ରରୁ ପ୍ରସ୍ତରିତ ଓ ପରେ 'ବେତାର ନାଟିକା' ନାମରେ ଏକ ଗ୍ରନ୍ଥରେ ସଂକଳିତ | କବିଙ୍କର ଗଣି ଗଣି କବିତା ମଧ୍ୟରୁ 'ଅଷ୍ଟେ ପନ୍ଦର' କବିତା ୧୯୪୯ ପ୍ରକାଶିତ | ଏହା ଦୁର୍ଲଭ | 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ନାମରେ ୧୯୭୩ ଏପ୍ରିଲରେ କୋ ମହାପାତ୍ର ଆଣ୍ଡ କୋ; କଟକଙ୍କ ଦ୍ୱାରା ଏବଂ ୧୯୮୨ରେ ନିଜ କର୍ତ୍ତୃକ 'ପ୍ରନଷ୍ଟ' କବିତା ସଂକଳନ ପ୍ରକାଶିତ |

ଏ ଆଲୋଚନାର ଉଦ୍ଦେଶ୍ୟ ତାଙ୍କ ଗଦ୍ୟସମୂହର ବିଶ୍ଳେଷଣ | ଏଥି ମଧ୍ୟରେ ଉକ୍ତ ୧ମ ଓ ୨ୟ ପୁସ୍ତକ ଏବଂ ପ୍ରବନ୍ଧ ଓ ଆଲୋଚନାବଳୀର ସାହାଯ୍ୟ ନିଆଯାଉଛି | ଏହି ରଚନା ସମୂହ ସ୍ୱର୍ଗତ ଦାସଙ୍କ ବ୍ୟକ୍ତିତ୍ୱର ଦ୍ୱିବିଧ ରୂପ— ପାଣ୍ଡିତ୍ୟ ଓ ପ୍ରତିଭାର ଯଥେଷ୍ଟ ଇଙ୍ଗିତ ଦିଅନ୍ତି | ସ୍ୱର୍ଗତ ଦାସ ଥିଲେ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଓ ପରେ ପରେ ଏସ୍‌ ୟୁ ସିଂର ସମର୍ଥକ | ମାର୍କସବାଦ ସହ ତାଙ୍କର ପରିଚୟ ସାଧାରଣ ନୁହେଁ, ଗଭୀର; ସାଗର ପରି ଗାମ୍ଭୀର୍ଯ୍ୟରେ ଯେମିତି ଉଜ୍ଜ୍ୱଳ, ସ୍ପଷ୍ଟତାରେ ସେପରି ପ୍ରତିଷ୍ଠ |

ପ୍ରଥମ ଓ ଦ୍ୱିତୀୟ ପୁସ୍ତକ— 'ରାଜନୀତି ଆଉ ଆମେ' ଏବଂ 'ସଭ୍ୟତାର ଆଗେ' ଗ୍ରନ୍ଥ ଦୁଇଟିରେ ଐତିହାସିକ ବସ୍ତୁବାଦ ଭିତ୍ତିରେ ପ୍ରାଚୀନରୁ ଅଦ୍ୟାବଧି ମଣିଷ ସମାଜର ବିକାଶଧାରା ବିଶ୍ଳେଷିତ | ସାମାଜିକ ଜୀବନର ବିଭିନ୍ନ ଅଙ୍ଗର ବିଶ୍ଳେଷଣ ସହ ବିଭିନ୍ନ

ବ୍ୟବସ୍ଥା ଓ ସଂଗଠନର ବିଶ୍ଳେଷଣ କରାଯାଇଛି । (୧) ରାଜନୀତିକ ଦର୍ଶନରେ ଲେଖକର ପ୍ରବେଶ ଓ ତାର ମର୍ମୋପଲବ୍ଧି ନଥିଲେ ବକ୍ତବ୍ୟ ବସ୍ତୁ କେବଳ ବିବରଣୀ ସର୍ବସ୍ୱ ହୋଇଥାନ୍ତା, ମାତ୍ର ତାହା ସୃଜନର କଳାରେ ଅନ୍ତର୍ମଣ୍ଡିତ ହେବା ସମ୍ଭବ ନୁହେଁ ।

—ତୁମେ ଆଉ ମୁଁ, ଆମକୁ ନେଇ ରାଜନୀତି । ଆମର ଘର ଏ ପୃଥିବୀରେ । ଆମେ ଯେ କେଇଟା ଦିନ ରହିବା, ସେଥିରେ କି ଭଳିଆ ଘର ସମ୍ଭାଳିବା ··· ଏଇତ ହେଲା ଜୀବନର ପ୍ରଶ୍ନ । ଏହି ପ୍ରଶ୍ନ ନେଇ କେତେ ପାର୍ଟିଗୋଳ, ବାଦବିବାଦର ଆବାଜ ଆମ କାନରେ ନିତି ବାଜୁଛି । ଏହାର ସମାଧାନ କରିବା ଆମେ, ଠିକ୍ ଭୁଲ ବାଛିବା ଆମେ । ଆମରି ଉପରେ ନିର୍ଭର କରେ ଜୀବନର ସୁଖ ଓ ସ୍ୱାଚ୍ଛନ୍ଦ୍ୟ, ଦୁଃଖ ଓ ଯନ୍ତ୍ରଣା । ବିଚାର କରିବା ଭାର ଯେଣୁ ଆମ ଉପରେ, କାହାର କଣ କହିବାର ଅଛି ପ୍ରଥମେ ଶୁଣାଯାଉ । ଶୁଣିବାକୁ ସାବଧାନ — (୨)

— ପୁରାଣ ଠାରୁ ଆହୁରି ପୁରୁଣା ସେ କାଳ । ସେତେବେ ଏ ଆକାଶ ଏହିପରି ଥିଲା, କିନ୍ତୁ ଉଡ଼ାଜାହାଜ ତ ଦୂରର କଥା ଚଢ଼େଇଟାଏ ବି ଉଡୁ ନଥିଲା । ସମୁଦ୍ର ଥିଲା, କିନ୍ତୁ କାହିଁ ଡଙ୍ଗାଟାଏ ବି ନାହିଁ । × × ପୃଥିବୀ ରହିଛି କିନ୍ତୁ ମଣିଷର ହାତ କୋଉଠି ବାଜି ନାହିଁ । କେତେ ବର୍ଷ ତଳର କଥା କହିହେବ ନାହିଁ । କେତେ ମନ୍ୱନ୍ତରର ଆଗେ ··· ସହର ନାହିଁ ··· ରାସ୍ତା ନାହିଁ । ଜଙ୍ଗଲ ଭିତରେ କେତେଟା ଜୀବ ପ୍ରାଣୀ ଭୂଇଁ ଉପରେ ଚଳପ୍ରଚଳ ହେଉଛନ୍ତି । ଆକାର ମନୁଷ୍ୟର କିନ୍ତୁ ପଶୁ ଭଳି ଉଧି ଲଙ୍ଗଳା—"(୩) ମନେ ପଡ଼ନ୍ତି ସାରଳା, ବଳରାମଙ୍କ କାହାଣୀ ଶୁଣାଉଥିବା କୌଣସି ପୁରାଣ ପଣ୍ଡାଙ୍କ କଣ୍ଠ—ଆଗରେ ନିରୋଳ ଗ୍ରାମୀଣ ଜନତା ; ଅବୋଧ, ସରଳ— ଜାଣିବାର ପ୍ରବଳ ପିପାସାରେ ଆଖିର ସ୍ୱପ୍ନ ଉଚ୍ଛୁଳି ପଡ଼ୁଛି । ତଥାପି ଶିକ୍ଷାର ବହୁତଳେ ଏ ପ୍ରଦେଶର ଜନତା, ଏପରିକି ଅହଂଗ୍ରସ୍ତ ଆତ୍ମତୃପ୍ତ ଶିକ୍ଷିତ ଓଡ଼ିଆ ଯୁବକ— ରାଜନୀତି ଅନଭିଜ୍ଞ ଯୁବକ - ତାଙ୍କୁ ଆଗରେ ପାଇ ଉଚ୍ଛୁଳା ପ୍ରାଣରେ କହିଗଲେ ଚନ୍ଦ୍ର ସ୍ୱର୍ଗତ ଦାସ—ଗୋଟାଏ କୁଳୁକୁଳୁ ଝରଣା— ଉଧି ଲଙ୍ଗଳା ମଣିଷର ହାତରେ କ

---

୧ । ବିଷୟ ବିନ୍ୟାସ : (କ) 'ରାଜନୀତି ଆଉ ଆମେ'—ମଣିଷର ଇତିହାସ, ଧନତନ୍ତ୍ର, ରାଜାମୂଳକ, ଗଣତନ୍ତ୍ର. ପୁଞ୍ଜିବାଦ, ସାମ୍ରାଜ୍ୟବାଦ, ସାମ୍ୟବାଦ, ଗାନ୍ଧିବାଦ, କମ୍ୟୁନିଜମ, ପ୍ରଭୃତି ।

(ଖ) 'ସଭ୍ୟତାର ଆଗେ' - ଆରଣ୍ୟକ ଯୁଗ, ବର୍ବର ଯୁଗ, ସମାଜ ସଙ୍ଗଠନ, ଶାସନ ସଂସ୍ଥା ( ଶାସନ, ରାଷ୍ଟ୍ରଶକ୍ତି, ଶାସକପଦ, ଜନସାଧାରଣ )

୨ । ରାଜନୀତି ଆଉ ଆମେ— ଅଗ୍ରଲେଖ ( ଏପରି କୌଣସି ନାମ ସେ ରଖିନାହାନ୍ତି )

୩ । ସଭ୍ୟତାର ଆଗେ—ପୃ ୧-୨

ଜମିଆ ଥିଲା ପଥରରେ କଲା ହତିଆର, ବାଘକୁ ଆୟତ୍ତ କଲା । ବଣରୁ ପଶୁପକ୍ଷୀ ମାରି ଖାଇଲା । ପୁଣି ପଶୁ ପାଳିଲା । ଦଳ ଗଢ଼ିଲା । ଗୋଟିଏ ଜାଗା ନିଅଣ୍ଟ ହେବାରୁ ପାଦ କାଢ଼ିଲା ବାହାରକୁ । ପୃଥିବୀର ବିଭିନ୍ନ ଜାଗାରେ ରୁହ ହୋଇଗଲା । ସେଉଠୁ ତାର ପରିଚୟ ହେଲା ଭିନ୍ନ 'ଜାତି' । ଭିନ୍ନ ଭିନ୍ନ ମାଟିର, ପାଣି ପବନର ପରଶରେ ତାର ରଙ୍ଗ ବଦଳିଗଲା, ଫରକ ହେଲା ଆକୃତ, ଅଲଗା ହୋଇଗଲା ଭାଷା । (୩କ) ଏକୋଇ ଆକାର, ରକ୍ତରେ ସମାନ । ଏ ନୂଆ ପରିଚୟ ଓ ଅଲଗା ଅଲଗା ଢଙ୍ଗ ଈଶ୍ୱର କରିନାହିଁ, କରିଛି ପରିବେଶ । ଜାତିର ମୂଳ ପାଟେଶ୍ୱ ଏଇ ପ୍ରକୃତିର କୋଳରେ । ପ୍ରକୃତିଦତ୍ତ ସେ ପାଟେଶ୍ୱ ଦେବତା କିଆଁ କରିବ ?

ଏହି ଜାତିର ଆଚରଣ, ବଞ୍ଚିବାର କୌଶଳ ସବୁଠି ସମାନ ଥିଲା । ଦଳବଦ୍ଧ ଜୀବନଯାପନ ଏକ ପ୍ରାଚୀନ ପଦ୍ଧତି । ଏତିକବେଳେ ସମ୍ପତ୍ତି ଥିଲା କୋଠରେ । ଉତ୍ପାଦିତ ପଦାର୍ଥ ରହୁଥିଲା କୋଠରେ । ଆବଶ୍ୟକତା ଭିତ୍ତିରେ ବାଣ୍ଟି ନେଉଥିଲେ । ଏଇ କୋଠତା ପ୍ରାଚୀନ ସମାଜ-ଜୀବନକୁ ସରଳ, ଅକୃତ୍ରିମ ଓ ସହୃଦୟପୂର୍ଣ୍ଣ କରିଥିଲା, ମାତ୍ର କୋଠ-ପଦ୍ଧତିର ବିଲୟ ପରେ ବ୍ୟକ୍ତିଗତ ସମ୍ପତ୍ତିର ଯୁଗ ଆସିଲା । ମୁଖ୍ୟତ କୃଷିଯୁଗର ଶେଷ ବେଳକୁ, ଯେତେବେଳେ ମୋ କୁଡ଼ିଆ ବୋଲି ତାରଚନ୍ଦ୍ର ମାରି ଭେଣ୍ଡିଆ କୁଡ଼ିଆ ସାମ୍ନାରେ ଗୁଡ଼ି ଫୁଲଇ ଠିଆହେଲା, କୁଡ଼ିଆ ଭିତରେ ଓଢ଼ଣା ଟାଣି କଣେଇ ଚାହିଁ ଯୁବତୀ ଫୁଲଗୁଡ଼ିକୁ ବାହାବା କଲା, ସ୍ୱର୍ଗତ ଦାସ କାଟି କାଟି କରି ଦେଖେଇଛନ୍ତି — କୋଠ ସମାଜରେ ନାରୀ ପୁରୁଷ ମଧ୍ୟରେ ସମ୍ପର୍କ । ଗୋଟିଏ ଶାଖାରେ ସେମାନେ ଅନେକ ପକ୍ଷୀ— "ପ୍ରତ୍ୟେକ ନାରୀ ପ୍ରତ୍ୟେକ ପୁରୁଷର ସ୍ତ୍ରୀ - ପ୍ରତ୍ୟେକ ପୁରୁଷ ପ୍ରତ୍ୟେକ ନାରୀର ସ୍ୱାମୀ"— ଯୌନଜୀବନର ଏ 'ସର୍ବୋଦୟୀ ମାର୍ଗ' (୪) କାଳକ୍ରମେ ବଦଳିଗଲା ଦୁଇଟି କାରଣରୁ— ୧- ଯୌନ ଜୀବନରେ ବିକୃତି ହେତୁ ଭବିଷ୍ୟତ ବଂଶଧରମାନଙ୍କର ଜୀବନରେ ପ୍ରଭାବ । ୨- ବ୍ୟକ୍ତିଗତ ସମ୍ପତ୍ତିଲାଭ ଲାଳସା । ଜନସଂଖ୍ୟା ବୃଦ୍ଧି ଜନିତ ସମସ୍ୟାରୁ ବହୁବିଧ ଗୋଷ୍ଠୀ ଗଠନ ସ୍ୱାଭାବିକ, ମାତ୍ର ଗୋଷ୍ଠୀର ବିଭାଜନ କ୍ଷୁଦ୍ର କ୍ଷୁଦ୍ର ପରିବାରରେ ସ୍ଥିର କଲା ଏ ଯୌନ ଜୀବନର ଶୃଙ୍ଖଳା । ଫଳତ ଯୌଥପରିବାରର ଉଦ୍ଭବ ଓ ଗୋତ୍ର ପ୍ରତି ନିଷ୍ଠା ଉପରେ ଗୁରୁତ୍ୱ । ବସ୍ତୁତ ଏଇ ଶୃଙ୍ଖଳାର ବିକାଶର ମୂଳରେ ଅର୍ଥନୀତିକ ବ୍ୟବସ୍ଥା ହିଁ ନିହିତ । ମଣିଷର ବିକାଶ-ଇତିହାସର ସନ୍ଧିକ୍ଷଣଗୁଡ଼ିକ ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନକୁ ଭିତ୍ତି କରି ନିର୍ଣ୍ଣିତ, ବସ୍ତୁତ ବିକାଶର ମାନଦଣ୍ଡ ରୂପେ ଅର୍ଥନୀତିର ଏଇ ପ୍ରଭାବ ଓ ତତ୍କେନ୍ଦ୍ରିକ ଜୀବନଧାରାମାନ ପରିବର୍ତ୍ତନ ଇତିହାସର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ । ମାର୍କସବାଦର ଏଇ ଦୃଷ୍ଟି ପ୍ରତି ସଚେତନ ବିଚାରକ-ମାନଙ୍କ ମଧ୍ୟରେ ସ୍ୱର୍ଗତ ଦାସ ଅନ୍ୟତମ ।

---

୩କ । ରାଜନୀତି ଆଉ ଆମେ

୪ । ସଭ୍ୟତାର ଆଗେ । ପୃ ୧୪-୧୪ ଦ୍ରଷ୍ଟବ୍ୟ

ପ୍ରଭୁ ଓ ଦାସ ଶ୍ରେଣୀ—ପରବର୍ତ୍ତୀ ଲୁଣ୍ଠିଖିଆ ଓ କଟିଖିଆର ଭିତ୍ତି ଶ୍ରେଣୀ ଓ ତାର ଅନ୍ତିମ ପରିଣତି ଶୋଷଣବାଦ - ସାମ୍ରାଜ୍ୟବାଦ ଓ ଆଜିର ପୃଥିବୀରେ ପ୍ରବଳ ପ୍ରତିଯୋଗିତା । ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବିବାଦରୁ ସଙ୍ଘର୍ଷ ଓ ପରାଜିତ ଶତ୍ରୁ ପକ୍ଷକୁ ଅଧୀନ କରିବା ପ୍ରାଚୀନ ହିଂସ୍ରତାର ଏକ ଫଳ । ଏହି ହିଂସ୍ରତାରୁ ଦାସପ୍ରଥା । ଦାସମାନେ ପ୍ରଭୁର ଆଜ୍ଞାବହ ଏବଂ ମୁକ୍ତ ଉତ୍ପାଦନର ଅଂଶ ବିଶେଷ ହୋଇ ପଡ଼ିଲେ । ଫଳରେ ମାଲିକ ଓ ଶ୍ରମିକ ମଧ୍ୟରେ ପରବର୍ତ୍ତୀ ସମ୍ପର୍କର ତୀବ୍ର ତିକ୍ତତାର ଏକ ଅବଦମିତ ରୂପ ଏ କାଳର ପ୍ରଭୁ ଓ ଦାସ ଶ୍ରେଣୀରେ ଯେ ନଥିବ କହିହେବ ନାହିଁ । ମାତ୍ର ଗୁରୁତ୍ୱପୂର୍ଣ୍ଣ ହେଉଛି— ପ୍ରଭୁ ଶ୍ରେଣୀର ଶାରୀରିକ ଶ୍ରମରୁ ଅବ୍ୟାହତି – ଏହି ଅବ୍ୟାହତି ଲିପି, ଶିଳ୍ପ ଓ ଉନ୍ନତ କଳାର ପୃଷ୍ଠପୋଷକତା କରିଛି, ସନ୍ଦେହ ନାହିଁ, ମାତ୍ର ପ୍ରଭୁ ଶ୍ରେଣୀର ମାନସିକ ଉତ୍କର୍ଷରେ କଇଁଛ ହୋଇ ସାହାଯ୍ୟ କରିଥିବା ଦାସଶ୍ରେଣୀ ଇତିହାସରେ ଅବହେଳିତ ହୋଇ ରହିଗଲେ । ପଣ୍ୟ ମଣ୍ଡରେ ନିହିତ ଶ୍ରମର ମୂଲ୍ୟ ନିରୂପଣ ଅର୍ଥନୀତିର ମୂଳକଥା କିନ୍ତୁ କଳାର ବିଚାର ବେଳେ ଶ୍ରମର ଉପାଦେୟତା ଉପେକ୍ଷା ଅସମୀଚୀନ । କଳା ଠିକ୍ ଏକ ପଣ୍ୟ ନହୋଇପାରେ, ମାତ୍ର ଶ୍ରମର ମୂଲ୍ୟାଙ୍କନ ବେଳେ ପଣ୍ୟ ଓ କଳାର ବିଭେଦ ନରହିବା ଉଚିତ । କାରଣ ଶ୍ରମହିଁ ସମସ୍ତ ଉତ୍କର୍ଷତାର ମାନଦଣ୍ଡ । ଶ୍ରମରେ ଆନନ୍ଦ କଳାକୁ ବ୍ୟକ୍ତ କରେ କିନ୍ତୁ ଶ୍ରମରେ ଜୀବିକାହିଁ ପଣ୍ୟର ଆଧାର । ସୁତରାଂ ପଣ୍ୟ ବା କଳା ହେଉ ଶ୍ରମର ମୌଳିକତା ସ୍ୱରୂପ ମଣିଷର ସଂସ୍କୃତିର ବିଶିଷ୍ଟ ଅଙ୍ଗରୂପେ ଚିହ୍ନିତ ।

ଦାସ ସମାଜରୁ ଶିଳ୍ପଯୁଗ ଯାଏ ମଣିଷର ଅଗ୍ରଗତିରୁ ଶ୍ରମର କ୍ରମବିକାଶ ଓ ସ୍ତର-ବିନ୍ୟାସହିଁ ଦେଖାଯାଏ । ତାହାହିଁ ଇତିହାସକୁ ସୃଷ୍ଟି ଓ ନିର୍ଦ୍ଦିଷ୍ଟ କରିଛି । ଏହା ଈଶ୍ୱରଙ୍କ ଲୀଳା ନୁହେଁ । ପରିବର୍ତ୍ତନ ଈଶ୍ୱରୀୟ ପ୍ରେରଣାରୁ ସମ୍ଭବ ହୋଇନାହିଁ । ସମ୍ଭବ ହୋଇଛି ଶ୍ରମ ଦ୍ୱାରା । ମଣିଷର ବୁଦ୍ଧିରେ ଓ ଏହା ହିଁ ଐତିହାସିକ ବିକାଶଧାରା ।

ଜୀବନ ପାଇଁ ସଙ୍ଗଠନ ଦରକାର । ସମାଜ, ପରିବାର, ଯେପରି ଗୋଟିଏ ଗୋଟିଏ ସଙ୍ଗଠନ ଏବଂ ତାର ସ୍ୱରୂପ ଶ୍ରମକୁ ଅବଲମ୍ବନ କରି ଗଢ଼ି ଉଠିଛି – ସେହିପରି ରାଷ୍ଟ୍ରଶାସନ ଓ ତତ୍ସଂପୃକ୍ତ ବ୍ୟବସ୍ଥା ସମ୍ଭବ । ସ୍ୱର୍ଗତ ଦାସ ଆଦିମ କାଳର ସମାଜକୁ 'ପଶୁପଲର ବ୍ୟବସ୍ଥା' ବୋଲି କହିବା ପଛରେ ଦୃଷ୍ଟିଭଙ୍ଗୀ ହେଉଛି 'ନାରୀ ଶ୍ରମ ଶକ୍ତିର ଜନନୀ', କାରଣ ନାରୀକେନ୍ଦ୍ରିକ ଥିଲା ସମାଜ ଓ ପୁରୁଷର ସମାଜ ପ୍ରତି ଆନୁଗତ୍ୟ ନାରୀ-ସମ୍ପର୍କରୁ । ଏହା ଯୌନ ବିକାର ନୁହେଁ, ବନ୍ଧନ ; ବସ୍ତୁତ ଶୃଙ୍ଖଳା । ଶୃଙ୍ଖଳା ଶ୍ରମରେ ବିକାଶର କାରଣ । ପ୍ରାଚୀନ ମୁକ୍ତ-ସମ୍ପର୍କ ଶ୍ରମକୁ ବାଧିତ କରିନଥିଲା । ଐକ୍ୟର ଆଦର୍ଶ –ଆଚରଣ ଓ ବିଶ୍ୱାସରେ ଆଣିଥିଲା । ଏହି ଐକ୍ୟର ସାଙ୍କେତିକ ରୂପେ ଅନୁଷ୍ଠିତ ହେଉଥିଲା 'ଯଜ୍ଞ' । ଯଜ୍ଞ ଆଧ୍ୟାତ୍ମିକତା ନୁହେଁ ଏହା ଶ୍ରମ-ଶୈଳୀର ପ୍ରତିଲିପି । (୫)

୫ । ସଭ୍ୟତାର ଆଗେ

ବିଶ୍ଳେଷଣ ପର୍ଯ୍ୟାୟରେ ଦୁର୍ଗତି ଦାସ ପ୍ରାଚୀନ ଯୁକ୍ତାଳୁଆ ପରିବାର କଥା ଉଠାଇଛନ୍ତି । ପରିବାରର ସ୍ୱରୂପ ବଦଳି ଯାଉଥିବା ବେଳେ ସପିଣ୍ଡ ପରିବାରର ଆଦର୍ଶ ଭୁଷୁଡ଼ି ପଡ଼ିଲା । ତାର ବିକଳ୍ପ ରୂପେ ଯୁକ୍ତାଳୁଆ ପରିବାରର ଜନ୍ମ । ମାତୃକେନ୍ଦ୍ରିକ ସମାଜରେ ଏହାର ପ୍ରଚଳନ । ଭାରତୀୟ ପୌରାଣିକ କାହାଣୀରେ ସେ ସବୁର ସ୍ୱାକ୍ଷର ଯଥା—ମାତା ଅଦିତିଙ୍କ ପୁତ୍ର ଆଦିତ୍ୟ, ସେହିପରି ଦନୁରୁ ଦାନବ, ଦିତିରୁ ଦୈତ୍ୟ, କୁନ୍ତୀରୁ କୌନ୍ତେୟ । ପ୍ରସଙ୍ଗ କ୍ରମେ ପୃଥିବୀ ସାରା ପ୍ରାଚୀନ ଏହି ପରିବାରର ଆଦର୍ଶ ପ୍ରାଚୀନ ଏକ ଜାତୀୟ ଗଣ-ସମାଜର ଜନ୍ମ ଦେଇଥିଲା । ସେ ସମାଜ ନାରୀର ପ୍ରାଧାନ୍ୟକୁ ସ୍ୱୀକାର କରିଥିଲେ ହେଁ ପୁରୁଷକୁ ଅବହେଳା କରିନଥିଲା । ମାତ୍ର ପିତୃକେନ୍ଦ୍ରିକ ସମାଜ ନାରୀକୁହିଁ ପ୍ରତ୍ୟାଖ୍ୟାନ କରି ଆବରଣ ଭିତରେ ତାକୁ ଆଭରଣ ସର୍ବସ୍ୱ କରିରଖିଛି । ଏହା ପଛରେ ଉତ୍ପାଦନ ପ୍ରଣାଳୀରେ ପରିବର୍ତ୍ତନହିଁ ମୁଖ୍ୟ ହେତୁ ସ୍ୱରୂପ ବିଦ୍ୟମାନ । (୭) ଇତିହାସର ଅନ୍ତର ଏତେ ରହସ୍ୟମୟ ଓ ପଦପାତରେ ଏତେ ବୈଶିଷ୍ଟ୍ୟରେ ମୁଖର ଯେ ତାର ସବୁ ଗୋପନ କାହାଣୀକୁ ବୁଝିବା କଷ୍ଟକର । ମାତ୍ର ଦୁର୍ଗତି ଦାସ ଉଖାରି ଉଖାରି ସାରାଂଶଗୁଡ଼ିକ ଥୋଇଛନ୍ତି । ମହାଭାରତ ଓ ଅନ୍ୟାନ୍ୟ ଶାସ୍ତ୍ର ସମୂହ ଆମର ଦୃଷ୍ଟିଭଙ୍ଗୀର ସମର୍ଥନ କରି ଅନେକ କଥା କହନ୍ତି । ସେଥିରୁ ଦୃଷ୍ଟାନ୍ତ ଦେବାକୁ ସେ ମଧ୍ୟ ଭୁଲିନାହାନ୍ତି ।

ସମ୍ପତ୍ତିଲୋଭ ପାଚିରେ ଲଗିଗଲା । ଦରକାରୀ ଜିନିଷର ଚାହିଦା ବଢ଼ିଲା । 'ଗୋଟି ଗୋଟି ତାର ଅସୁବିଧା ଦୂର କରିବ ବୋଲି ନୂଆ ନୂଆ ଉପାୟ ଖୋଜିଛି । ଅଧିକ ସୁଖ ପାଇଁ କେତେ ନୂଆ କଥା ବାହାର କରିଛି ମିହନ୍ତ କରି, ହାତ ଆଉ ମୁଣ୍ଡ ଖଟାଇ । ଯାହା ତାର ଅଭାବ ଦୂର କରିଛି, ଅଧିକ ସୁଖ ଦେଇଛି ତାକୁ ଆଦର କରି ସାଇତିଛି, ତାର ଗୋଟାଏ ମୂଲ୍ୟ ଅଛି ବୋଲି ବିଚାରିଛି ।' ଏଇ ମୂଲ୍ୟ ଥିବା ବସ୍ତୁ ତାର ଜୀବନର ସୁଖ ଦୁଃଖର ଇତିହାସ ସହ ସମ୍ପୃକ୍ତ । ତେଣୁ ସେସବୁ ତାର ସମ୍ପତ୍ତି ।(୮) ଏତେ ସମ୍ପତ୍ତିର ମାଲିକ ହୋଇ ମଣିଷ ସୁଖରେ ରହୁନାହିଁ । ଆମେ ଦେଖିଛୁ ଯିଏ ଓଦା ହୋଇ ବଳଦ ଓଡ଼ାନ୍ତି, ଯିଏ ଧଇଁ ସଇଁ ହୋଇ କଳ ଚଳାନ୍ତି, ଯିଏ ରାତି ଉନ୍ନିଦ୍ର ରହି କଲମ ଚଳାନ୍ତି - ସେମାନେ ଗରିବ । ଆଉ ଲୋକ ଅଛନ୍ତି, ହଳଦି ପାଣିକୁ ଗୋଡ଼ ନ ବଢ଼ାଇ ଟଙ୍କା ରୋଜଗାର କରୁଛନ୍ତି ଅକଳନ । ସେମାନେ ଧନୀ । ସେମାନେ କମେଇଲା ଧନରେ ଧନୀ ନୁହନ୍ତି । ଚୋର ଧନୀ ହୁଏ ଅନ୍ୟ ଜଣେ କମେଇଲା ଧନକୁ ହାତକୁ ନେଇ × × ସେହିପରି ଜମିଦାର ଧନୀ ହୋଇଛି ଚଷାର କମେଇଲା ଧନକୁ ଆପଣା ହାତକୁ ଆଣି । କଳ ମାଲିକ ଧନୀ ହୋଇଛି କୁଲିମାନେ ଅର୍ଜିଲା ଧନକୁ ତୋଷରପ କରି । (୭)

---

୭ । ତତ୍ରୈବ, ପୃ ୧୫

୮ । ଧନ ସମ୍ପତ୍ତି - 'ରଜନୀତି ଆଉ ଆମେ' ।

ଏହିପରି ସମାଜରେ ଦୁଇଟି ଶ୍ରେଣୀ — 'ଖଟିଖିଆ ଓ ଲୁଟିଖିଆ'— ସମାଜର ଐତିହାସିକ ବିକାଶ କ୍ରମରେ ମୁଖ୍ୟ ଓ ଗୁରୁତ୍ୱପୂର୍ଣ୍ଣ ଶ୍ରେଣୀ । ପ୍ରାଚୀନ ଦାସ ଓ ପ୍ରଭୁ ଶ୍ରେଣୀର ରୂପାନ୍ତର । ଉପାର୍ଜନ, ପୁଞ୍ଜି, ଶୋଷଣର ପରିଚୟ ଦେଇ ସେ କହିଛନ୍ତି— ମିହନ୍ତ କରି ଲୋକ ଯେଉଁ ଧନ ଅର୍ଜିଲା ତାହା ତାର କମାଣି । କମାଣିରୁ ଖର୍ଚ୍ଚ ଯାଇ ଯାହା ବଳିପଡ଼େ ତାହା ପୁଞ୍ଜି । ସେହିପରି କମାଣି ଠାରୁ ଖର୍ଚ୍ଚ ବଳି ପଡ଼ିଲେ ତାହା ଅଭାବ । ଯାହା ହାତରେ ବଳକା ଧନ ସେ ପୁଞ୍ଜିପତି । ଖଟିଖିଆଙ୍କ ଧନ ଦୋସରା ଲୋକ ହାତକୁ ନେବା— ଏହି ରାଜନୀତିକୁ ପାଠୁଆମାନେ କହନ୍ତି ଶୋଷଣବାଦ । (୮) ଶୋଷଣବାଦ ଖଟିଖିଆଙ୍କ ମେରୁଦଣ୍ଡ ଭାଙ୍ଗି ଦେଇଛି । ପ୍ରଚଳିତ ସମାଜର ପ୍ରକୃତ ବ୍ୟାଖ୍ୟା ଏଇଠୁ ଆରମ୍ଭ । ଦିନ ଦିନ ସମସ୍ୟା, ତାର ସଠିକ ଚିତ୍ର ଯେପରି ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ ଉପରେ ନିର୍ଭରଶୀଳ ସେହିପରି ତାର କାରଣ ନିର୍ଦ୍ଦେଶ କରିବା ମଧ୍ୟ ବୁଦ୍ଧିମତ୍ତାର ପରିଚାୟକ ହେବ । ସ୍ୱର୍ଗତ ଦାସ ଏ ଦ୍ୱନ୍ଦ୍ୱର ସଠିକ ନିରୂପଣ କରିଛନ୍ତି । ଯେ କୌଣସି ଲୋକର ମନରେ ପ୍ରଶ୍ନ— ସରକାର, ଶାସନ, ହାକିମ, ପୁଲିସ ପ୍ରଭୃତି ବ୍ୟବସ୍ଥା ଥାଉଁ ଥାଉଁ 'ଏପରି ଲୁଟି ଦିନ ଦ୍ୱିପହରେ କିଭଳି ହେଉଛି ?' ଦେଶର ଶାସନ କୌଶଳ ଓ ପ୍ରତିଷ୍ଠିତ ବ୍ୟବସ୍ଥା ସମ୍ବନ୍ଧରେ ଧାରଣା ନଥିବା ପାଠୁଆର ଅକଲ ବି ଗୁଡ଼ୁମ୍ ମାରିବ । ଚୋର ରାତିରେ ମାରେ, ହେଲେ ଦିନ ଦିପହରେ ଆଙ୍ଗୁଠି ଗୁଣିବ ?' ମନେ ରଖିବା କଥା, ଏ ଲୁଟି ସରକାରି ନ୍ୟାୟ ବୋଲି ବିଚାରୁଛନ୍ତି । ଆଉ ଏଇ ଲୁଟି ନିର୍ବିଘ୍ନରେ ଚଳାଇବା ପାଇଁ ଆଇନ୍ କାନୁନ୍ ଗଢ଼ା ହୋଇଛି । ରାଜ୍ୟର ଆଇନ, ରଜା ପ୍ରଜାଠୁ ତାର ଅର୍ଜିଲା ଧନ ନେଇ ମଉଜ କରିବ । ସରକାର କହେ— ରଇତ ଉଠେଇଲା ଫସଲରୁ ଭାଗେ ଜମିଦାର ନେବ । (୯) ଏ ପରିପ୍ରେକ୍ଷୀରେ ବିଚାର କଲେ ଆମ ଦେଶର ସବୁ ଅର୍ଥକାରୀ ସଂସ୍ଥା— ସରକାରୀ ବା ବେସରକାରୀ, ଘରୋଇ ଉଦ୍ୟମରେ ପରିଚାଳିତ— ନାମୀ ଦାମୀ କମ୍ପାନୀର ବ୍ୟବସାୟ ସବୁ ଏପରି ଆଇନରେ ପରିଚାଳିତ- ଯାହାଦ୍ୱାରା ଖାଉଟି-ଚମାର- ଖଟିଖିଆମାନଙ୍କ ଶ୍ରମକୁ ପଣ୍ୟ ସାମଗ୍ରୀ ବୋଲି ବିଚାର କରାଯାଇଛି ଓ ସେଥିରୁ ଲାଭ ନେଇ ସେ ସଂସ୍ଥାମାନେ ବଢ଼ି ଚାଲିଛନ୍ତି । ଦେଶୀ ବିଦେଶୀର ତଫାତ୍ ଆଉ ନାହିଁ । ଆଜି ଦେଶରେ ପ୍ରଚଳିତ ବ୍ୟବସ୍ଥାହିଁ ତାର ସମସ୍ତ ଦୋଷଗୁଣର ମୂଳଭିତ୍ତି ଓ ଦେଶ ପ୍ରଚଳିତ ଆର୍ଥନୀତିକ ସଂସ୍କୃତିର ପୃଷ୍ଠପୋଷକ । ଯଥାର୍ଥରେ ସ୍ୱର୍ଗତ ଦାସ ସେ ବ୍ୟବସ୍ଥାର ବିଦ୍ରୂପ କରିଛନ୍ତି । ସାମ୍ପ୍ରତିକ ଭାରତବର୍ଷର ସଂସଦୀୟ ଗଣତନ୍ତ୍ର 'ଜଣତନ୍ତ୍ର' ଓ 'ଶୋଷଣତନ୍ତ୍ର'ର ଜନକରେ ପରିଣତ ହୋଇଛି । ଯେତେଦିନ ଯାଏ ଥିବ ସେ ବ୍ୟବସ୍ଥା, ଲୁଟିତନ୍ତ୍ରର ପରମାୟୁ ଅକ୍ଷତ ରହିଥିବ । ପ୍ରସଙ୍ଗ କ୍ରମେ ସ୍ୱର୍ଗତ ଦାସ ପରବର୍ତ୍ତୀ ପୃଷ୍ଠାରେ ଆନୁସଙ୍ଗିକ ସଙ୍ଗଠନଗୁଡ଼ିକର ବିଚାର କରିଛନ୍ତି । ରାଜତନ୍ତ୍ର, ରାଜାମୂଳକ, ବ୍ୟକ୍ତିଗତ ସମ୍ପତ୍ତି, ସମାଜର ସାମୂହିକ (ଗୋଷ୍ଠୀ) ସମ୍ପତ୍ତି, ରାଜା, ରାଜ୍ୟ, ରାଜ୍ୟ ଶାସନର ସରଳ ବିଶ୍ଳେଷଣ ଚମକପ୍ରଦ ।

---

୮ । 'ରାଜନୀତି ଆଉ ଆମେ' ।

୯ । ତତ୍ରୈବ ।

ଦେଶର, ମାନବ ଇତିହାସର ଏହି ଐତିହାସିକ ଗତି ଓ ପରିଣତି ଜାଣି ନଥିବା ଲୋକଙ୍କୁ ବୁଝାଇବା ଢଙ୍ଗରେ ବଡ଼ ସହଜରେ ସେ ବୁଝାଇଛନ୍ତି । ତତ୍ତ୍ୱର ସରଳ ବିଶ୍ଳେଷଣ ପଢ଼ିଗଲା ବେଳେ ଯେମିତି ମନକୁ ଛୁଏ ଯେମିତି ବୁଦ୍ଧିର ପରିଧିରେ ଆକର୍ଷିତ ହେଉ ନଥିବା ବିଷୟଗୁଡ଼ିକ ଆଙ୍କୁଚି ଆସନ୍ତି । ପଢ଼ିବା ବେଳେ ଜଣେ ହୃଦୟ ବିବେକବାନ ଅନୁଭବ କରିବାକୁ ବାଧ୍ୟ ହେବ ଯେମିତି ତା ଆଗରେ ଶୋଷଣର ଚିତ୍ର-ଗୁଡ଼ିଏ ନାଚି ଯାଉଛନ୍ତି । ପ୍ରତିଭାର ଏପରି ବିଶ୍ଳେଷିତ ପୁଷ୍ଟ ସୃଜନଦକ୍ଷତା କମ ଲୋକଙ୍କର ସାଧ୍ୟ ହୋଇଛି । ଶ୍ରୀମୁକ୍ତ ଦାସ ସେ ଭିତ୍ତିରେ ଜଣେ ବିରଳ ବ୍ୟକ୍ତି ।

**ରାଷ୍ଟ୍ରଶକ୍ତି ଓ ଜନସାଧାରଣ :** ରାଜନୀତିଜ୍ଞମାନେ ଏହି ଦୁଇ ସଂସ୍ଥା ନେଇ ବହୁ ବିଚାର କରିଛନ୍ତି, ହେଲେ ସାଧାରଣଙ୍କ ପାଖରେ ସେ ତତ୍ତ୍ୱ ଅପହଞ୍ଚ । ସ୍ୱତରେ କାହିଁକି ସମଗ୍ର ପୃଥିବୀର ଏକ ବିରାଟ ଶକ୍ତି – ଏହି ଜନସାଧାରଣ ରାଷ୍ଟ୍ରଶକ୍ତିର ଯଥାର୍ଥ ପରିଚୟ ପାଇନାହାନ୍ତି । ତତ୍ତ୍ୱ ଓ ଦାର୍ଶନିକ ବିଭ୍ରାଟର ମୀମାଂସା ପ୍ରହେଳିକା ସୃଷ୍ଟି କରେ ତାର ଗାମ୍ଭୀର୍ଯ୍ୟ ଓ ପ୍ରତୀକ ଧର୍ମୀ ଭାଷାରେ । ଏହାହିଁ ଅଧିକ ଅସ୍ପଷ୍ଟତାର କାରଣ । ବ୍ୟାଖ୍ୟାକାର-ମାନେ ଚିନ୍ତାରେ ବିଭ୍ରାଟ ଏହି କାରଣରୁ ସୃଷ୍ଟି କରନ୍ତି । ଜନଗଣଙ୍କ ରକ୍ତରୁ ଫୁଟିଥିବା ପଦ୍ମଟି ଯେତେ ସୁନ୍ଦର ହେବା କଥା ତେଣୁ ହୋଇପାରେନା – ବସ୍ତୁତ ଏକ ଅନଧିଗମ୍ୟ ଦୁର୍ଗ ହୋଇ ରହିଯାଏ ରାଷ୍ଟ୍ର ଓ ବ୍ୟବସ୍ଥା । ଚିନ୍ତାନାୟକମାନେ ସାଧାରଣତ ରାଷ୍ଟ୍ରର ପାଳିତ ପୁଅ ଓ ସେହି ପାଳନ-ଧର୍ମିତାର ସୁରକ୍ଷା ପାଇଁ ବ୍ୟାଖ୍ୟାନର ଆବରଣଗୁଡ଼ିକୁ ବିଚାର କରନ୍ତି – ଶୁଣିବାକୁ ଚମତ୍କାର ଲାଗେ ମାତ୍ର କାର୍ଯ୍ୟତ ତାହା କ୍ଲୀବ । ସ୍ୱର୍ଗତ ଦାସ ଚିନ୍ତାନାୟକର ପାରମ୍ପରିକ ସଜ୍ଞାରେ ବନ୍ଧା ନୁହନ୍ତି, ନାୟକ ବି ନୁହନ୍ତି, ମାତ୍ର ଚିନ୍ତାର ମୌଳିକତାରେ ଅନନ୍ୟ ବୁଦ୍ଧିର ଅଧିକାରୀ । ରାଷ୍ଟ୍ରଶକ୍ତି ଓ ଜନସାଧାରଣ ଦୁଇଟି ଦ୍ୱନ୍ଦ୍ୱମାନ ଶ୍ରେଣୀ । ସମାଜର ଧର୍ମ ଅବମାନନା ବିରୋଧରେ ରାଷ୍ଟ୍ରଶକ୍ତି ଉତ୍ପନ୍ନ । ଏଣୁ ମୌଳିକ ପ୍ରଭେଦ ଆଇନର ଜନୁଆଲ ଗୁଣରେ ଭୂଷଣ ଏବଂ ଦୋଷର ଦଣ୍ଡ ଗ୍ରହଣରେ ଅକାର୍ପଣ୍ୟ ଉପରେ ନିହିତ । କିନ୍ତୁ ରାଷ୍ଟ୍ରଶକ୍ତି ଯଦି ଏକ ଶ୍ରେଣୀରେ ପରିଣତ ହୁଏ ତେବେ ସେ ଦଣ୍ଡବିଧାନକୁ ପ୍ରାଧାନ୍ୟ ଦିଏ । ଫଳରେ ଦୁଇଟି ସ୍ୱତନ୍ତ୍ର ଶ୍ରେଣୀ ସୃଷ୍ଟି ହୁଏ । ଶାସନ ପାଇଁ ଉଦ୍ଦିଷ୍ଟ ଅର୍ଥ 'ରାଜସ୍ୱ' ପ୍ରଥମ ଶ୍ରେଣୀର ଭୋଗରେ ଲାଗେ – ତାର ଭୋଗରେ ସାହାଯ୍ୟ ପାଇଁ ଆନୁସଙ୍ଗିକ ସଂସ୍ଥା ତୀବ୍ର ବେଗରେ ଗଢ଼ି ଉଠନ୍ତି – ମୁଖ୍ୟତ ରାଷ୍ଟ୍ର ସୁରକ୍ଷାର ପ୍ରତିନିଧି ସେନାବାହିନୀ ସେ ଶ୍ରେଣୀର ସ୍ୱାର୍ଥକୁ ଜଗି ବସେ । ଜନସାଧାରଣ ଉତ୍ପାଦନରେ, ଆତ୍ମତ୍ରାଣ ଗଠନ ଶକ୍ତିରେ ନିମଜ୍ଜିତ – ଶାସକ ପଦ ପାଇଁ ଆବଶ୍ୟକ ନିର୍ବାଚନ, ପ୍ରତିନିଧି ସଂସ୍ଥା ଗଠନରେ ସମସ୍ତ ଦେବା ସମ୍ଭବ ନୁହେଁ । ଜନସାଧାରଣଙ୍କ ଏହି ଗୁଣ ଶାସନ ସଂସ୍ଥାରେ ଅଧିଷ୍ଠିତ ବ୍ୟକ୍ତିମାନଙ୍କୁ ସୁଯୋଗ ଦିଏ । କ୍ରମେ ଏକ ନିର୍ଦ୍ଦିଷ୍ଟ ପରିବାରରୁ ଉତ୍ତରାଧିକାରୀ ସୃଷ୍ଟି ହୋଇଥାନ୍ତି । ରାଜତନ୍ତ୍ରର ଉତ୍ପନ୍ନ ଏମିତି ହୁଏ । ଅନେକ ଦେଶରେ ଗଣତାନ୍ତ୍ରିକ ପଦ୍ଧତି ଚାଲୁଥିଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପରିବାରରୁ ଶାସକ ଆସନ୍ତି—

ଭାରତବର୍ଷ ତାର ଜ୍ୱଳନ୍ତ ଉଦାହରଣ । ସ୍ୱେଚ୍ଛାଚାର, ଏକନାୟକତ୍ୱ ବିଧି ରାଷ୍ଟ୍ରକୁ କବଳିତ କରେ । ତେଣୁ ରାଷ୍ଟ୍ରଶକ୍ତି ଜନସାଧାରଣର ପ୍ରଭୁ ହୁଏ, ସେବକ ନୁହେଁ । ଦ୍ୱନ୍ଦ୍ୱଟି ଏଇଠି, ସେବକ ପ୍ରଭୁ ହେବାରେ ଓ ପ୍ରଭୁ ସେବକ ରୂପେ ଶାସିତ ହେବାରେ । ଇତିହାସର ବିକାଶ କ୍ରମେ ସଭ୍ୟ ମଣିଷର ଶିକ୍ଷା ରାଜତନ୍ତ୍ର ବଦଳାଇ ଜନତନ୍ତ୍ର ପ୍ରତିଷ୍ଠା କରିଥିଲେ ମଧ୍ୟ ରାଷ୍ଟ୍ରଶକ୍ତି ଏକ କ୍ଲେଶଦାୟୀ ସଂସ୍ଥାରେ ପରିଣତ ହୋଇଛି । ମାର୍କସବାଦ ଏଣୁ ଶିକ୍ଷା ଦିଏ ସାମ୍ୟବାଦୀ ବିପ୍ଳବର ସଫଳତାରେ ହିଁ ରାଷ୍ଟ୍ରର ବିଲୋପ । ଏ ରାଷ୍ଟ୍ର ରାଷ୍ଟ୍ରଶକ୍ତି – ଅର୍ଥନୈତିକ, ଏକାଧିପତ୍ୟ ସଂସ୍ଥାର ବିଳୟ । ଏପରି ଏକ ସମୟ କେବେ ଆସିବ ତାହା ଭିନ୍ନ କଥା – ମାତ୍ର ଇତିହାସର ଅବଲୋକନ କ୍ରମେ ପ୍ରାଚୀନ ଜାତିଆଣ ସଂସ୍ଥା ରକ୍ତ ଓ ଧର୍ମ ସମ୍ପର୍କ ଦ୍ୱାରା ଗଠିତ ହୋଇ ଭିନ୍ନ ଭିନ୍ନ ଗୋଷ୍ଠୀ ଉଦ୍ଭବ କରିଥିଲା । ଆଜି ତାହା ଆଉ ନାହିଁ । ସେ ପ୍ରକାର ସଂସ୍ଥା ଅସମର୍ଥ ଓ ଅଚଳ ପ୍ରମାଣିତ ହୋଇଛି । ଆଜିର ବିଶ୍ୱର ଯେବେ ଯେଉଁଠି ସେ ଆଦିମ ପ୍ରବୃତ୍ତିର ପ୍ରତିଧ୍ୱନି ଗଣତାନ୍ତ୍ରିକ ସଂସ୍ଥାରେ ପ୍ରତିଫଳିତ ହେଉଛି ତାହା ଶେଷରେ ପଦାନତ ହେବାକୁ ବାଧ୍ୟ ।

**ରାଷ୍ଟ୍ର-ଶାସନ ବ୍ୟବସ୍ଥା :** ଅର୍ଥନୈତିକ ବ୍ୟବସ୍ଥା ପ୍ରତି ଦୃଷ୍ଟିଭଙ୍ଗୀରୁ ଶାସନ ସଂସ୍ଥାର ପରିଚୟ ମିଳେ । ଗଣତନ୍ତ୍ର / ପୁଞ୍ଜି / ସାମ୍ୟ / ସମାଜ / ସାମ୍ରାଜ୍ୟବାଦ ପରି ପ୍ରତ୍ୟେକ ବ୍ୟବସ୍ଥା ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର ଅର୍ଥନୈତିକ ଆଭିମୁଖ୍ୟ ପ୍ରକାଶ କରନ୍ତି । ଏମାନଙ୍କର ପରିଚୟ ଲେଖକ 'ରାଜନୀତି ଅଉ ଅମେ'ରେ ଦେଇଛନ୍ତି । ଶିଳ୍ପବିପ୍ଳବ ସାମନ୍ତବାଦର ବିଲୋପ କରି, ଗଣତାନ୍ତ୍ରିକ ଚେତନାର ଉଦ୍ଭବ କଲା, କିନ୍ତୁ ପୁଞ୍ଜିବାଦ ପାଇଁ ଯେଉଁ ଉନ୍ମୁକ୍ତ ପରିସର ସୃଷ୍ଟି କଲା ତାହାହିଁ ଇତିହାସର ଅବସାଦ । ଶିଳ୍ପର ବିକାଶରେ ପୁଞ୍ଜିର ଅଗ୍ରଗଣ୍ୟ ଭୂମିକା ଅବଶ୍ୟମ୍ଭାବୀ, ମାତ୍ର ତାକୁ କେନ୍ଦ୍ର କରି ଶାସନ ସଂସ୍ଥାର ଉଦ୍ଭବ ଅବସାଦକର । ସାମନ୍ତବାଦ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାକୁ ବଳି ଦେଇଥିଲା. ଗଣତନ୍ତ୍ର ସେଗୁଡ଼ିକୁ ପୁନରୁଦ୍ଧାର କଲା । ଏହା ରାଜନୈତିକ ଗଣତନ୍ତ୍ର । ପ୍ରକୃତ ଗଣତନ୍ତ୍ରର ବିକାଶ ପାଇଁ ସାମ୍ବିଧାନିକ ଲକ୍ଷ୍ୟର ସମାନ ପ୍ରୟୋଗ ଦରକାର । ଶିକ୍ଷା, ସୁଯୋଗ, ଅଧିକାରରେ ପ୍ରତ୍ୟେକ ସମାନ ହେବେ, ମାତ୍ର ତାହା ଗଣତାନ୍ତ୍ରିକ ଦେଶମାନଙ୍କରେ ସମ୍ଭବ ହୋଇନାହିଁ । ସ୍ୱର୍ଗତ ଦାସ ଯୁକ୍ତିସହ ପ୍ରତିପାଦନ କରିଛନ୍ତି ଯେ ଏ ବ୍ୟବସ୍ଥାରେ ପୁଞ୍ଜିହିଁ କ୍ଷମତାକୁ କବଳିତ କରିଛି । ପୂର୍ବର ସାମନ୍ତ ଜମିଦାର ଏବଂ ଅଧୁନା ଉଦ୍ଭବ ପୁଞ୍ଜିପତିମାନେ ଶାସନକଳରେ ଅଗ୍ରାଧିକାର ପାଇଛନ୍ତି । ଲୋକେ ନାମକୁ ମାତ୍ର ନିର୍ବାଚନରେ ନିଜର ଅଧିକାର ଉପଭୋଗ କରି ଅବାଞ୍ଛିତ ରାଜ୍ୟରେ ରହୁଛନ୍ତି । ଗଣତାନ୍ତ୍ରିକ ଚେତନାର ବିକାଶରେ ସହାୟକ ପ୍ରତ୍ୟେକ ମାଧ୍ୟମ, ଜନଗଣର ସେବାରେ ନଥାଏ ବା ସେଗୁଡ଼ିକ ସହ ଜନତା ସମ୍ପର୍କ ରଖି ପାରେ ନାହିଁ । ବାସ୍ତବରେ ରାଜନୀତି ସଂଖ୍ୟାଗରିଷ୍ଠ ସାଧାରଣଙ୍କୁ ଅଶିକ୍ଷିତ, ନିଷ୍ପ୍ରଭ କରି ରଖେ । ବସ୍ତୁତ ରାଜନୀତି ଧନୀ ପୁଞ୍ଜିକ-ମାନଙ୍କର ବିଳାସ ହୋଇ ରହେ । ସମାନ ସୁଯୋଗର ଦ୍ୱାହିରେ ଶାସନ ଚାଲେ—

ଦୁର୍ବଳତାରେ ସୁଯୋଗ ଲାଭ କରନ୍ତି ଧନୀକ । ଭୁଚ୍ଛା ଅଧିକାର ନେଇ କୃତ କୃତ୍ୟ ଜନତା ନିର୍ବାଚନରେ ଗଣତନ୍ତ୍ରର ଧ୍ୱଜ ଉଡ଼ାନ୍ତି ଯିନା କିନ୍ତୁ ଗଣତନ୍ତ୍ର ସେମାନଙ୍କର ମଙ୍ଗଳ କରିପାରେ ନାହିଁ । (୧୦) ଏପରି ଗଣତନ୍ତ୍ର ସୀମାସ୍ଥିତ ପ୍ରତାରଣା ।

ପୁଞ୍ଜିବାଦର ଉନ୍ମେଷ ପରେ ତିନୋଟି ଶ୍ରେଣୀ ଉତ୍ପନ୍ନ – ସର୍ବହରା, ମଧ୍ୟବିତ୍ତ, ବୁର୍ଜୁଆ । ଉତ୍ପାଦନ କରି ଶ୍ରମିକ ସର୍ବହରା, ଉତ୍ପାଦନ କରାଇ ମାଲିକ ବୁର୍ଜୁଆ । ଏହି ଦୁଇଟି (୧୧) ମଧ୍ୟରେ ମଧ୍ୟବର୍ତ୍ତୀ ଶ୍ରେଣୀ ମଧ୍ୟବିତ୍ତ । ମଧ୍ୟବିତ୍ତ କ୍ଷୁଦ୍ର ପୁଞ୍ଜିର ବଳରେ କରି ସଂସାର ଗଢ଼େ । ଦୋଦୁଲ୍ୟମାନ ମାନସିକ ଅବସ୍ଥାରେ ଅସନ୍ତୋଷର ବହ୍ନି ଗିଳି ଜୀବନ କଟାଏ । ସମସ୍ତ ସଂଗଠନ ପ୍ରତିବାଦ, ପ୍ରତିରୋଧ, ବିପ୍ଳବର ମୁଖ୍ୟ ଭୂମିକା ଗ୍ରହଣ କରେ । ବିଶ୍ୱର ସବୁ ଆବିଷ୍କାର, ଉଦ୍ଭାବନ, ପରିବର୍ତ୍ତନର ମୂଳରେ ଏମାନେ ଯେମିତି ରହିଛନ୍ତି ସେମିତି ମଧ୍ୟ ସେମାନେ ବୁର୍ଜୁଆର ସ୍ତାବକ ହୋଇ ପ୍ରତିଷ୍ଠିତ ବ୍ୟବସ୍ଥାକୁ ଉତ୍ସାହିତ କରିଛନ୍ତି । ଏ ଶ୍ରେଣୀ ଏକ ମଧ୍ୟବିନ୍ଦୁରେ ଭାରସାମ୍ୟ ରକ୍ଷାକରି ଚାଲିବା ଯେମିତି ସତ, ସେହିପରି ନିଜକୁ ଶ୍ରେଣୀଚ୍ୟୁତ କରି ( declass ) ବିପ୍ଳବ ପାଇଁ ଶ୍ରମିକ ସର୍ବହରାର ନେତୃତ୍ୱ ନେବା ମଧ୍ୟ ସତ । (୧୨)

ପଇସାର ସମ୍ପର୍କରୁ ବୁର୍ଜୁଆ ଓ ସର୍ବହରାର ପ୍ରଶ୍ନ ଉଠେ । ମୂଲିଆ ବେଶୀ ହେଲେ ମୂଲ ଶସ୍ତା ହୁଏ । ମୂଲିଆର ଅଭାବ ବଢ଼ିଲେ ମୂଲିଆ ଅଧିକ ମୂଲ ଦାବି କରେ । ଏଭଳି ଭଡ଼ା ଓ ଟଙ୍କା - ତାହା ଶ୍ରେଣୀ ସଂଘର୍ଷ - ବିଶ୍ୱମାନବର ବଞ୍ଚିବାର ଏକ ପାରମ୍ପରିକ ଅନିବାର୍ଯ୍ୟ ସଂଗ୍ରାମର ପ୍ରଶ୍ନ ଉଠାଇ ଇତିହାସକୁ ଯଥାର୍ଥ ରୂପ ଦେଇଛି । ପୁଞ୍ଜିବାଦ ଧର୍ମ ଅଧର୍ମ ବିଚାର କରେ ନାହିଁ, ମଦ-ଭାଗବତ ଗୋଟିଏ ପାଲରେ ପଡ଼ନ୍ତି । ଲେଖକ, ଡାକ୍ତର, ମାଷ୍ଟର, ଝାଡ଼ୁଦାର କାହାରି ସମ୍ମାନର ମୂଲ୍ୟ ନାହିଁ । ମୂଲିଆ ସମସ୍ତେ । ମୂଲ୍ୟ ଅଛି କଳର । କଞ୍ଚା ମାଲର । ମାନବିକତାର ହ୍ରାସରେ ପୁଞ୍ଜିବାଦ ଯେପରି ଭୂମିକା ନେଇଛି ତାହା ବିସ୍ମୟକର । ପୁଞ୍ଜିବାଦ ଜନ ସହଯୋଗ ଭଳି ଅଯଥା ଦ୍ୱାହିରେ ଓ ପ୍ରଗତିର ଅନ୍ଧ ବିଶ୍ଳେଷଣରେ ମାତିଯାଏ । ଜାତୀୟତାବାଦକୁ ସେପରି ସ୍ଥଳରେ ଚିହ୍ନିବା କଷ୍ଟ ସେଥିରେ ଫାସିବାଦ ଓ ନାଜୀବାଦ ପରି ଉଗ୍ରତା ଲୁଚିଥାଏ । ଅନେକ ଏହାକୁ ଜାତୀୟବାଦୀ ସାମ୍ୟବାଦ କହି ସ୍ୱୀକାର କରିଥାନ୍ତି, ମାତ୍ର ତାର ଜଠରରେ ମୁସୋଲିନ୍, ହିଟଲର ଲୁଚିଥାନ୍ତି । (୧୩) ଏମାନେ ବାସ୍ତବରେ ପୁଞ୍ଜିର ଅନ୍ତରାଳରେ ବିଶ୍ୱକୁ କରଗତ କରିବାକୁ ଆଗ୍ରହୀ । ଏମାନଙ୍କର ସାମ୍ରାଜ୍ୟବାଦ ଆଲେକଜାଣ୍ଡର ବା ନେପୋଲିୟନଙ୍କ

୧୦ । ଗଣତନ୍ତ୍ର—'ରାଜନୀତି ଆଉ ଆମେ' ।
୧୧ । ପୁଞ୍ଜିବାଦ – ତନ୍ମୈବ ।
୧୨ । ମଧ୍ୟବିତ୍ତର ଭୂମିକା – 'ଅଭିଯାତ୍ରୀ' - ଅକ୍ଟୋବର-ଡ଼ିସେମ୍ବର ୮୦ ।
୧୩ । ପୁଞ୍ଜିବାଦ—'ରାଜନୀତି ଆଉ ଆମେ' ।

ସାମ୍ରାଜ୍ୟବାଦ ଠାରୁ ପୃଥକ । ପୁଞ୍ଜିବାଦୀ ଗଣତନ୍ତ୍ରର ମଧ୍ୟ ସାମ୍ରାଜ୍ୟ ଦରକାର । 'ପୁଞ୍ଜିରୁ ପୁଞ୍ଜି ଉତ୍ପନ୍ନ' ଆଦର୍ଶ ହେତୁ ଅନୁନ୍ନତ ଦେଶମାନଙ୍କରେ ବଜାରରେ ଅଧିକ ଲାଭ ଅଛି । ଏହି ଲୋଭରୁ ଦିନେ ଲଙ୍କାଶାୟାରର ସବୁ ଉତ୍ପନ୍ନବସ୍ତୁ ସେ ଦେଶର କୁଲିଶ୍ରମିକ ମୁହଁରେ ଚାଲି ବୁଲେଇ ବିଶ୍ୱ ବଜାରକୁ ଆସୁଥିଲା ଆଉ ତାର ବଦୌଳତ ଇଷ୍ଟଇଣ୍ଡିଆ କମ୍ପାନୀର ନେତୃତ୍ୱରେ ବ୍ରିଟିଶ ଅପ୍ରତିହତ ସାମ୍ରାଜ୍ୟର ଅଭ୍ୟୁଦୟ ଘଟିଥିଲା । ବିଶ୍ୱବଜାର ସୃଷ୍ଟି ଆଳରେ ବିଶ୍ୱରେ ଉପନିବେଶହିଁ ଗଢ଼ିଉଠିଥିଲା । ଉପନିବେଶ ରାଷ୍ଟ୍ରରେ କଞ୍ଚାମାଲ ସହଜ ଲବ୍ଧ ହେତୁ କଳକାରଖାନା ମୁଣ୍ଡ ଟେକିଲା । ସେଠାରୁ ଉତ୍ପନ୍ନ ଦ୍ରବ୍ୟ ପାଇଁ ଗରାଖ ଦେଶ ଦରକାର । ଏହି ଗରାଖ ଦେଶରୁ ଲାଭ ପରିମାଣ ବଢ଼ାଇବା ପାଇଁ ତାକୁ ଅଧୀନକୁ ଆଣିବା ଦରକାର । ଏଇଠି ପୁଞ୍ଜିପତି ମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ଚାପ ବଳରେ ଗରାଖ ଦେଶ ଅଧୀନ ହୁଏ । ଏହି ସମୟରେ ସାମ୍ରାଜ୍ୟ ବଢ଼ିଯାଏ । ସାମ୍ରାଜ୍ୟବାଦ ବିସ୍ତାର ମୂଳରେ ପୁଞ୍ଜିବାଦ କମ୍ ଭୂମିକା ଗ୍ରହଣ କରିନାହିଁ । (୧୪) ବିଂଶ ଶତାବ୍ଦୀର ଏ ପର୍ଯ୍ୟାୟରେ ମଧ୍ୟ ବିଶ୍ୱର ଅନେକ ଦେଶ ଏହି ବନ୍ଧନରେ ସଢ଼ୁଛନ୍ତି । ଦକ୍ଷିଣ ଆଫ୍ରିକା ତାର ଉଦାହରଣ । ପୁନଶ୍ଚ ପୃଥିବୀରେ ଶୀତଳ ଯୁଦ୍ଧର ଆତଙ୍କ ମୂଳରେ ଦୁଇ ମହାଶକ୍ତି ପୁଞ୍ଜିବାଦୀ ଆମେରିକା ଓ ସମାଜବାଦୀ ରୁଷିଆ ସାମ୍ରାଜ୍ୟବାଦୀ ନୀତିରୁ ଟଳୁ ନାହାନ୍ତି । ପୁଞ୍ଜିବାଦର ଶକ୍ତି ବିଚିତ୍ର, ପ୍ରହେଳିକାମୟ । ଦେଶର ପ୍ରଗତିର ପାଲିସକରା ଆବରଣ ଭିତରେ ଗୋଟିଏ ଦେଶର ଅସ୍ଥିମଜ୍ଜାରେ ଦାସତ୍ୱର ମଞ୍ଜି ପୋତିଦିଅନ୍ତି । ପୋତା ମଞ୍ଜି ଗଛ ହୋଇ ଶାଖା ମେଲେ ବିଭିନ୍ନ ଅପସଂସ୍କୃତି ରୂପରେ । ତାହା ଆଧୁନିକ ସବୁ ଗଣମାଧ୍ୟମ, ବିଳାସ ଦ୍ରବ୍ୟ ଓ ପ୍ରଚୁର ସସ୍ତା କଳା-ସଂସ୍କୃତି ଭିତରେ ଆତ୍ମଗୋପନ କରିଛି । ପୁଞ୍ଜିବାଦ ସଭ୍ୟତାକୁ ଉପଭୋଗ୍ୟପ୍ରଧାନ କରେ, ମାତ୍ର ମାନସିକ ଉତ୍କର୍ଷର ପଥ ରୁଦ୍ଧ କରେ । ବେଳେବେଳେ ଛଦ୍ମ ଜାତୀୟତା ନାମରେ ଯୁଦ୍ଧ ଆରମ୍ଭ କରନ୍ତି । ଦେଶର ସ୍ୱାଧୀନତା ରକ୍ଷା ମୋହରେ ଅଚେତନ ଜନଗଣ ରଣ ହୁଙ୍କାରରେ ଆତ୍ମଦାନ ଦିଅନ୍ତି— ସବୁ କଷଣ ପେଷଣକୁ ଅଙ୍ଗୀକାର କରି ନିଅନ୍ତି । ଭିତରେଇ ଦେଖିଲେ ଦୁଇଟି ଯୁଧ୍ୟମାନ ଦେଶର ଜନଗଣ ପ୍ରକୃତରେ ଶତ୍ରୁ ନୁହନ୍ତି, ଦେଶର ଯୁଦ୍ଧାବସ୍ଥାରେ ଲାଭବାନ ନୁହନ୍ତି ; ବରଂ ବହୁ କ୍ଷତିଗ୍ରସ୍ତ ହୁଅନ୍ତି । ପୁଞ୍ଜି ବିସ୍ତାର ପାଇଁ ଯୁଦ୍ଧରୁ ମୁଷ୍ଟିମେୟ ଲୋକ ପୁଞ୍ଜିପତି ଶାସକଶ୍ରେଣୀ ହିଁ ଲାଭବାନ ହୁଅନ୍ତି । ଦେଶର ଶାସକଶ୍ରେଣୀ ପୁଞ୍ଜିପତିମାନଙ୍କର ହାତବାରିସୀ ହୋଇ ଲକ୍ଷ ଲକ୍ଷ ଯୁବକଙ୍କୁ କମାଣ ମୁହଁକୁ ଠେଲି ଦିଅନ୍ତି । ଯୁଦ୍ଧହିଁ ସେମାନଙ୍କର ହାତ ଟକଣ କରେ । ବିଶ୍ୱ ଇତିହାସରେ ସବୁଠାରୁ କଳଙ୍କକର ଘଟଣାର ସ୍ମାରକୀ ପୁଞ୍ଜିବାଦରୁ ଉତ୍ପନ୍ନ ସାମ୍ରାଜ୍ୟବାଦ । ତାର ଭୟାବହ ରୂପ ବିଶ୍ୱ-ମହାସମରରେ ଫୁଟି ଉଠିଛି । ଆଜିର ଶୀତଳଯୁଦ୍ଧରେ ବି ଆତ୍ମଗୋପନ କରିଛି । ସ୍ୱର୍ଗତ ଦାସ ଯଥାର୍ଥରେ ତେଣୁ ମନ୍ତବ୍ୟ ଦେଇଛନ୍ତି "ପୁଞ୍ଜିବାଦ ଯେଉଁଦିନ ଲୋପ ପାଇବ ସାମ୍ରାଜ୍ୟଟିଏ ରଖିବାକୁ ଯେ କୌଣସି ଜାତି ପଛେଇବ । (୧୫)

୧୪ । 'ରାଜନୀତି ଆଉ ଆମେ'

୧୫ । ତଦୈବ

ଏ ପରିପ୍ରେକ୍ଷୀରେ ବିଚାର କରିଲେ ମଣିଷ ପ୍ରତି ସମ୍ମାନ ସହ ମଙ୍ଗଳକାରିଣୀ ବ୍ୟବସ୍ଥା କଣ ଅଛି ? ଆମେ ଦେଖିଲୁ ଗଣତନ୍ତ୍ର ରାଜନୈତିକ ଚଉହଦିରେ, ପୁଞ୍ଜିବାଦ ସାମ୍ରାଜ୍ୟବାଦରେ ପରିଣତ ହେଲା, ମଣିଷର ଜୀବନ ବ୍ୟକ୍ତିଗତ ସମ୍ପତ୍ତିର ଦାସ ହେଲା । ଗଣତନ୍ତ୍ରର ସର୍ବୋଚ୍ଚ ବିକାଶ ସ୍ଥଳରେ ପ୍ରଗତିର ନାମରେ ପୁଞ୍ଜି ତାର ଭାନୁମତୀ ପେଡ଼ି ଖୋଲି ଜନସାଧାରଣଙ୍କୁ ଅନ୍ଧ କରିଦେଲା । ତେବେ କଣ ମଣିଷ ପାଇଁ ବାଟ ଚିରଦିନ ବନ୍ଦ ? ସବୁ ବ୍ୟବସ୍ଥା ଅର୍ଥ ପିଶାଚ ପାଳନ୍ତି ସିନା ? ନୁହେଁ, ନୁହେଁ । ଧନର ଅଭାବ ନାହିଁ । ଲୋକଶକ୍ତି ଅପରିସୀମ । ପୃଥିବୀମାତାର ଉଦର ପୂର୍ଣ୍ଣଗର୍ଭାରେ ରହସ୍ୟମୟୀ । ଅଥଚ ଅଭାବ, ସଂଘର୍ଷ ସେଇ ଧନିକ ଶୋଷଣ, ଯୁଦ୍ଧ, ଏପରି ଅନେକ ଗ୍ଲାନିମୂଳକ କଥା ।

ବୁଦ୍ଧିକୁ ଛୁଏଁ -- 'ସାମ୍ୟବାଦ ବା ସୋସିଆଲିଜମ' । ନୂଆ କଥା - ବିପ୍ଳବ । ବାଟ ବତାଇ ଅପହୃତ ଯୁବଶକ୍ତିକୁ ପୁନରୁତ୍ଥିତ କରେ । କିନ୍ତୁ ବିପ୍ଳବ କହିଲେ ହିଂସାକୁ ବୁଝାଏ ନାହିଁ । ତାଆରେ ପରିବର୍ତ୍ତନ ଆଣିବା, ଗୋଟିଏ ଅବସ୍ଥାର ସମ୍ପୂର୍ଣ୍ଣ ବିଲୋପ କରି ଆଉ ଗୋଟିଏ ବ୍ୟବସ୍ଥାର ସୃଷ୍ଟି କରିବାକୁ ବିପ୍ଳବ କୁହାଯିବ । ଅର୍ଥନୈତିକ ମାନଦଣ୍ଡ ସହ ମଣିଷର କଲ୍ୟାଣକାମୀ ପ୍ରତ୍ୟେକ ସଂସ୍ଥାର ଆମୂଳଚୂଳ ପରିବର୍ତ୍ତନ ତାର ଲକ୍ଷ୍ୟ । ସ୍ୱର୍ଗତ ଦାସ ସ୍ପଷ୍ଟ କରି ଦେଇଛନ୍ତି ବିପ୍ଳବ, ବିପ୍ଳବୀ କାହାକୁ କହିବା । ସାମ୍ୟବାଦକୁ କଳଙ୍କିତ କରିବା ଲକ୍ଷ୍ୟରେ ବିପ୍ଳବର ଅର୍ଥ ଧ୍ୱଂସ, ହାଣକାଟ ବୋଲି ବୁଝାଉଥିବା ଲୋକେ ସଇତାନ, ପୁଞ୍ଜିପତି ବା ସେମାନଙ୍କର ଦଲାଲ । ସାମ୍ୟବାଦ ଧନର ସମାନ ବଣ୍ଟନ କରି ଚୁପ ରହେନାହିଁ । ବ୍ୟକ୍ତିଗତ ସମ୍ପତ୍ତି ଉଚ୍ଛେଦ କରେ । ସବୁ ରାଷ୍ଟ୍ରାୟତ୍ତ । ଜମିଦାର ବା ଅଭିଜାତ ଶ୍ରେଣୀ ପରି ଗୋଟିଏ ଶ୍ରେଣୀ ସବୁର ନିୟନ୍ତ୍ରଣ ଚାବୁକ ଧରି ବସନ୍ତି ନାହିଁ । ଖଟିଖିଆମାନେ ପୁଞ୍ଜିପତି, ଜମିଦାରଙ୍କ ନିର୍ଦ୍ଦେଶରେ ପରିଚାଳିତ ହେବେ ନାହିଁ । ତାହାହିଁ 'ସର୍ବହରାର ଶାସନ' । ଶ୍ରେଣୀ ଅର୍ଥ ଏଠାରେ ନିଷ୍ପ୍ରଭ । ଏକମାତ୍ର ଶ୍ରେଣୀ, ତାହା ହେଲା— ସମସ୍ତେ ଉତ୍ପାଦନରେ କ୍ଷମ, ସମାନ ସୁଯୋଗ ପାଇଁ ହକଦାର ! ସରଳ ଭାଷାରେ କହିଲେ ଦେଶର ଇଜମାଲି ସମ୍ପତ୍ତି ରହିବ । ବ୍ୟକ୍ତିସ୍ୱତ୍ୱ ଉଠିଯିବ । ଗଣସ୍ୱତ୍ୱ ରହିବ । ସେଥିରୁ ସମସ୍ତେ ବାଣ୍ଟି ନେବେ । ରାଷ୍ଟ୍ର ଏକ ଜଗୁଆଳୀ ହୋଇ ରହିବ । କାମିକା, ଠାପୁଆ ଏ ଭେଦକୁ ଉଠେଇବ । ଅନେକ ସମୟରେ ସାମ୍ୟବାଦ ଓ ସାମ୍ୟବାଦୀ ଭିତରେ ଫରକ ବୁଝାଯାଏ ନାହିଁ । ତେଣୁ ସେ କହୁଛନ୍ତି, ଏହା ଇକାର-ଭେଦ, ଶବ୍ଦ ମାତ୍ର ନୁହେଁ । ଦୁନିଆରେ ସାମ୍ୟବାଦ ବୋଲି ଗୋଟାଏ ଜିନିଷ, ମାତ୍ର ସାମ୍ୟବାଦୀ କହିଲେ ବହୁ କିସମର ଲୋକ । (୧୭) ବସ୍ତୁତ ଲେଖକ ତତ୍ତ୍ୱଟିର ବ୍ୟାଖ୍ୟା ଭିତରେ ଉଠୁଥିବା ବହୁ ସନ୍ଦେହର ନିରସନ ପ୍ରତି ଧ୍ୟାନଶୀଳ ହୋଇଛନ୍ତି । ଏହିପରି ସଂସ୍କାରବାଦ ଓ ଗଣତାନ୍ତ୍ରିକ ସାମ୍ୟବାଦର ପ୍ରଶ୍ନ ଉଠେ । ପୁଞ୍ଜିକୁ ମୁଖ୍ୟ ବୋଲି ଭାବି ବୁର୍ଜୁଆଙ୍କୁ ସମର୍ଥନ କରୁଥିବା ଲୋକେ ସଂସ୍କାରବାଦୀ । ହିଟଲର ମୁସୋଲିନ୍ ପରି ନିଜକୁ

୧୭ । ସାମ୍ୟବାଦ - 'ରାଜନୀତି ଆଉ ଆମେ'

ସାମ୍ୟବାଦୀ ପରିଚୟ ଦେଉଥିବା ଲୋକେ ପୁଣି ଏହି ସଂସ୍କାରବାଦୀମାନଙ୍କ ନେତୃତ୍ୱରେ କ୍ଷମତାକୁ ଆସନ୍ତି । ଗଣତାନ୍ତ୍ରିକ ସାମ୍ୟବାଦୀମାନେ ସାମ୍ୟବାଦ ଗ୍ରହନ୍ତି, ଅଥଚ ସର୍ବହରାର ଏକାଧିପତ୍ୟକୁ ସହିପାରନ୍ତି ନାହିଁ । ଲେଖକଙ୍କର ବିନୀତ ପ୍ରଶ୍ନ ତେବେ କଣ ପୁଞ୍ଜିପତି, ଜମିଦାର ପ୍ରଭୃତି ଶୋଷକ ଶ୍ରେଣୀର ବିଲୋପ ସେମାନେ ଗ୍ରହନ୍ତି ନାହିଁ ? ଶୋଷକଶ୍ରେଣୀ ପ୍ରତି ଉଦାରତା ଗଣତାନ୍ତ୍ରିକ ସାମ୍ୟବାଦୀମାନେ ପୋଷଣ କରନ୍ତି । ଧନର ସମବଣ୍ଟନ— ଜମିଦାର ଓ ପୁଞ୍ଜିପତିମାନଙ୍କ କର୍ତ୍ତୃତ୍ୱ ବିଲୋପ ସାମ୍ୟବାଦର ମୂଳଲକ୍ଷ୍ୟ ବୁଝାଇବା ବେଳେ କମ୍ୟୁନିଜମ୍‌ର ପ୍ରସଙ୍ଗ ଉତ୍ଥାପିତ । (୧୭)

ସାମ୍ୟବାଦ ଦକ୍ଷତା ଅନୁସାରେ କାମ ଆଦାୟ କରେ ଓ ସମାନ ଭାବେ ବାଣ୍ଟେ, ମାତ୍ର କମ୍ୟୁନିଜମ୍ କ୍ଷମତା ଅନୁସାରେ ଆଦାୟ କରି ଆବଶ୍ୟକତା ମୁତାବକ ବାଣ୍ଟେ । ସେ ଉଦାହରଣଟିଏ ଦେଉଛନ୍ତି— ପାଞ୍ଚଜଣ ଲୋକଙ୍କୁ ଦଶଟି ମୂଆଁ ବାଣ୍ଟିଲା ବେଳେ ଆମେ ପ୍ରତ୍ୟେକଙ୍କୁ ଦୁଇ ଦୁଇଟି ଧରେଇ ଦଉଁ । ପାଞ୍ଚୁଆଏ ମୂଆଁ ଥିଲେ କାହାକୁ ଦୁଇଟା, କାହାକୁ ଛଟା·· ଯାହାର ଯାହା ଲୋଡ଼ା । (୧୮) ବସ୍ତୁତଃ କମ୍ୟୁନିଜମ୍ ଉତ୍ପାଦନ ଓ ତାର ପ୍ରକ୍ରିୟାରେ ସର୍ବହରାଗୀ ସଂସ୍ଥାକୁ ଶକ୍ତିଶାଳୀ କରିଥାଏ— ଲକ୍ଷ୍ୟ ଯେହେତୁ ପ୍ରତ୍ୟେକର ଆବଶ୍ୟକତା ପୂରଣ । ରାଷ୍ଟ୍ରର ଗଠନରେ ବିଭିନ୍ନ କିସମ୍‌ର ଲୋକ— ଶ୍ରମିକ, ଡାକ୍ତର, ଇଞ୍ଜିନିୟର, ଲେଖକ ପ୍ରଭୃତି ପ୍ରତ୍ୟେକଙ୍କର ଗୃହିବା ଭିନ୍ନ ଭିନ୍ନ । ଏସବୁ ଗୃହିବା ଦେଶ ମେଣ୍ଟାଇବ । ଆମ ଘରେ ଯେମିତି ଶିଶୁ, ବେଣ୍ଡିଆ, ବାରବୁଲା ଫକୀର, କିସମ କିସମ ଲୋକ, ଅଥଚ ପ୍ରତ୍ୟେକଙ୍କୁ ଆବଶ୍ୟକତା ଅନୁଯାୟୀ ନଜର ଦିଆଯାଏ । (୧୯) ଲେଖକ ସ୍ପଷ୍ଟଭାବେ ବ୍ୟବଧାନ ଦର୍ଶାଇଛନ୍ତି । ଅମରି ନିତିଦିନିଆ ସଂସାରରୁ ଉଦାହରଣ ଦେଇ ଦୁନିଆର ଛବି ଆଙ୍କିଛନ୍ତି ଆମ ଆଗରେ । ସାମ୍ୟବାଦ କମ୍ୟୁନିଜମର ପ୍ରଥମ ପାଦ ବା **Lower Communism or Socialism.** ତାର ଶେଷ ରୂପ **Higher Communism.** ବସ୍ତୁତଃ ବ୍ୟାଖ୍ୟାନ ବେଳେ ମଣିଷକୁ ମାରିବାକୁ ନୁହେଁ, ବଞ୍ଚେଇବାକୁ ସାମ୍ୟବାଦ ଓ ତାକୁ ଆନ୍ତର ହେତୁବାଦୀ ଓ ସମ୍ମାନଶୀଳ, ଦୃଷ୍ଟାନ୍ତ ମଣିଷରେ ପରିଣତ କରିବାରେ କମ୍ୟୁନିଜମର ଯେଉଁ ପ୍ରଚେଷ୍ଟା ତାହା ସୁସ୍ପଷ୍ଟ ହୋଇ ଉଠିଛି । ବିଶ୍ୱ ଇତିହାସରୁ ସୂଚନା, ସୋଭିଏତ ରୁଷରେ ଶାସନ ପ୍ରଣାଳୀ, କମ୍ୟୁନିଜମର ସଫଳତା ପାଇଁ ପରାମର୍ଶ ସହ ମନୋଜ୍ଞ ବିଶ୍ଳେଷଣ, 'କମ୍ୟୁନିଜମ' ଅଧ୍ୟାୟରେ ଲେଖକ କରିପାରିଛନ୍ତି । (୨୦)

ପଥ ବିଭ୍ରାଟ ବେଳେ ମଣିଷ କୂଳକିନାରା ପାଏନାହିଁ । ହତବୁଦ୍ଧି ଧ୍ୱଂସମୁଖୀ । ସନ୍ଦେହ ବହୁ ବ୍ୟକ୍ତିତ୍ୱର ଜନକ । ସ୍ଥୁଳ ଚିନ୍ତା ବେଣାକୁ ମୋଟ, ଗଛକୁ ଗ୍ରେଟ । ତେଣୁ

୧୭ । 'ରାଜନୀତି ଆଉ ଆମେ' – କମ୍ୟୁନିଜମ

୧୮ ରୁ ୨୦ । 'ରାଜନୀତି ଆଉ ଆମେ' – ଯଥାକ୍ରମେ ୭୨, ୭୭ ଓ ୮୦, ୮୨ ପୃଷ୍ଠା

ମଧ୍ୟମ ଚିନ୍ତାକାରୀମାନେ ଅସୁବିଧାରେ ପଡ଼ନ୍ତି । ସେମାନଙ୍କ ପାଇଁ ଯଥାର୍ଥ ଉତ୍ତର 'ରାଜନୀତି ଆଉ ଆମେ' ଓ 'ସଭ୍ୟତାର ଆଗେ' ଦୁଇଟି ଗ୍ରନ୍ଥ । ଆମ ଭାରତୀୟ ବୁଦ୍ଧିଜୀବୀ ଅଧୁନା ଗାନ୍ଧୀବାଦର ମାୟାରେ ପଡ଼ିଛନ୍ତି । ସେମାନଙ୍କ ପ୍ରଶ୍ନକୁ ମୁକାବିଲା ପାଇଁ କହୁଛନ୍ତି— ଗାନ୍ଧୀବାଦ ପୁଞ୍ଜିର, କଳର, ବୃହତ୍ତ ଶିଳ୍ପର ବିରୋଧୀ । ('**Small is beautiful'**) ପରି କୁଟୀରଶିଳ୍ପ, ଗ୍ରାମ୍ୟବିକାଶ, ସର୍ବୋଦୟ, ଏ ସବୁ ଭଲ କଥା । 'ଗାନ୍ଧୀବାଦ ଉପରେ ଯେବେ ସମାଜ ଗଢାଯାଏ, ପୁଞ୍ଜିବାଦର ଅବଗୁଣ ଅନେକ ପରିମାଣରେ ହ୍ରାସ ପାଇବ ନିଶ୍ଚୟ— ଲୋକ ଭିତରେ ସାମ୍ୟ ପ୍ରତିଷ୍ଠା ହେବ । × ପୁଣି ସାମ୍ୟବାଦରେ ଯେପରି ବିରାଟ ସରକାରୀ ସଂଗଠନ ଦରକାର ରାଜ୍ୟଯାକର ସମସ୍ତଙ୍କୁ ଧନ ସମାନ କରି ବାଣ୍ଟିବା ଲାଗି, ଗାନ୍ଧିବାଦରେ ତା ଦରକାର ପଡ଼ିବ ନାହିଁ । ହେଲେ ଗାନ୍ଧିବାଦକୁ କାମରେ ପରିଣତ କଲେ ପୁଞ୍ଜିବାଦର ଅବଗୁଣ ସହିତ ତାର ଭଲ ଗୁଣ ଗୁଡ଼ିକ ବି ଲୋପ ପାଇଯିବ । ତେଣୁ ଗାନ୍ଧିବାଦରେ ତ୍ରୁଟି— ୧)- ଆଜିର ପୃଥିବୀରେ ଏକକ ଭାବେ ଗୋଟିଏ ଦେଶ ପକ୍ଷରେ ଶୁଭଙ୍କର ନୁହେଁ । ଅନ୍ୟ ଦେଶମାନେ କଳ-କାରଖାନାର ପ୍ରଭାବରେ ବେଶି ଧନୀ ହେବେ ଓ କଳ ନଥିବା ଦେଶକୁ ଗ୍ରାସ କରିଯିବେ । ୨)- ଶିଳ୍ପ କେନ୍ଦ୍ରକୁ ଭାଙ୍ଗି ଗାଁ ଗହଳରେ ଚରଖା ଗୃହକୁ ରଖିବା ସମ୍ଭବ ନୁହେଁ— ଅର୍ଥାତ୍ ପଛକୁ ଫେରିଯିବା ଅସମ୍ଭବ । ଏଣୁ ସାମ୍ୟବାଦ— ଯାହା କଳକୁ ନିନ୍ଦା କରେନାହିଁ, ଅଥଚ ତାର ଦୁର୍ଗୁଣାବଳୀ ପାଇଁ ବିକଳ୍ପ ଉପାୟ କରେ, ଆଜିର ପୁଞ୍ଜିବାଦୀ ପ୍ରକଳ୍ପନା ଭିତରେହିଁ ଏକମାତ୍ର ଅବଲମ୍ବନ । (୨୧)

'ରାଜନୀତି ଆଉ ଆମେ', 'ସଭ୍ୟତାର ଆଗେ' -- ଛୋଟିଆ ବହି ଦୁଇଟି, ହେଲେ କଥା ବିରାଟ । ଚିରନ୍ତନ ମଣିଷ ମନରେ ଉଦିତ ଅର୍ଥନୈତିକ ବ୍ୟବସ୍ଥା ବିଷୟରେ ପ୍ରଶ୍ନ ସମାହିତ ହୋଇଛି । ପ୍ରଶ୍ନକୁ ଉତ୍ତର ସବୁବେଳେ ଖାପେ ନାହିଁ । ଉତ୍ତର ଏ ସ୍ଥଳରେ ଚାଙ୍କୁଣି ହେଲେ ଅସୁବିଧା । ଆମର ଅନେକ ବ୍ୟାଖ୍ୟାକାରୀମାନେ ଉତ୍ତର ନାମରେ ଚାଙ୍କୁଣି ଉପାୟ କରନ୍ତି । ସ୍ୱର୍ଗତ ଦାସ ଏଠି ବ୍ୟତିକ୍ରମ—ଉତ୍ତର ଉଦ୍ଭାସନଧର୍ମିତାରେ ଦୀକ୍ଷିତ ନହେଲେ ପ୍ରଶ୍ନରେ ହିଁ ପ୍ରାଣ ସଙ୍କୁଳିତ ହୁଏ । ଉତ୍ତର ପ୍ରାଣରେ ଆକାଶର ଭାବ ଆଣେ । ମୌଳିକ ଚିନ୍ତା ନଥିଲେ, ଭାବକଟି ସ୍ପଷ୍ଟ ନହେଲେ, ଅଉ ତାକୁ ରୂପଦେବା ପାଇଁ ଭାଷା ସାବଲୀଳ ନହେଲେ ବକ୍ତବ୍ୟ ଅନ୍ତଃସାରଶୂନ୍ୟ ହୁଏ ।

ସ୍ୱର୍ଗତ ଦାସ ଶେଷରେ ବୁଝାଉଛନ୍ତି—ଚିରକାଳ କୌଣସି ଜିନିଷ ରହେ ନାହିଁ ; ଚିରନ୍ତନବାଦ ମିଥ୍ୟା । ପ୍ରାଚୀନ ସମାଜରୁ ଅବଧି ଇତିହାସର ଆମୂଳ କାହାଣୀ କହୁଛି ସେଇ କଥା, ପରିବର୍ତ୍ତନ ଅନିବାର୍ଯ୍ୟ । ମାର୍କସବାଦ ସେଥିରେ ପ୍ରଚଣ୍ଡ ବିଶ୍ୱାସୀ । ସେଇ ବିଶ୍ୱାସର ଫଳ ସ୍ୱରୂପ ମଣିଷକୁ ପରିବର୍ତ୍ତନର ମାଧ୍ୟମ ରୂପେ ଦେଖିବାକୁ ଆଗ୍ରହୀ ।

୨୧ । ଗାନ୍ଧିବାଦ — 'ରାଜନୀତି ଆଉ ଆମେ' ।

ସର୍ଦ୍ଦାର-ରାଜା, ସାମନ୍ତ-ପୁଞ୍ଜିପତି, ଗଣତନ୍ତ୍ରୀ-ସାମ୍ୟବାଦୀ ଏ ପ୍ରକାର ଗୋଟିଏ ଗୋଟିଏ ବିକଳ୍ପ ପରିବର୍ତ୍ତନର ସୂଚନା ଦିଏ । ପରିବର୍ତ୍ତନ ଆସେ ଅସ୍ୱୀକାରବୋଧରୁ, ସମାଜରେ ପ୍ରତିଷ୍ଠିତ ଅସମଞ୍ଜସ ସମ୍ପର୍କରୁ । ଯେଉଁମାନେ ତାର କଷଣ ଚର୍ବ୍ବିତ ସେମାନେ ପରିବର୍ତ୍ତନ ଗୃହାନ୍ତୁ—ମାତ୍ର ଅନେକ ସ୍ଥିତାବସ୍ଥାକୁ ସମର୍ଥନ କରି (୨୧କ) ପରିବର୍ତ୍ତନ-ବାଦୀଙ୍କୁ ଦେଶଦ୍ରୋହୀ ଆଖ୍ୟା ଦିଅନ୍ତି । ପ୍ରଚଳିତ ବ୍ୟବସ୍ଥାକୁ ସୁରକ୍ଷିତ କରିବା ପାଇଁ ଭାଗ୍ୟ, ଭଗବାନ, ସଂସ୍କାର, କଥା ପ୍ରଭୃତି ପ୍ରଚାର କରନ୍ତି । ମାତ୍ର ମଣିଷ ଭିତରେ କ୍ରମଶଃ ଅଶାନ୍ତିର କାରଣ ଉପଲବ୍‌ଧି କରିଥିବା ଲୋକଟି ହିଁ ବିପ୍ଳବର ଝଣ୍ଡା ଧରେ । ସ୍ୱର୍ଗତ ଦାସ ଆମର ଚିନ୍ତାଜଗତରେ ସେହି ଝଣ୍ଡାଟି ପୋତି ଦେଇଛନ୍ତି ।

**କମ୍ୟୁନିଷ୍ଟ ରଘୁନାଥ ଦାସ :** ମାର୍କସବାଦର ତତ୍ତ୍ୱ ଜାଣିଗଲେ କେହି କମ୍ୟୁନିଷ୍ଟ ହୁଏ ନାହିଁ । ଆଉ ଦୁଇଟି କଥା ଦରକାର, ପ୍ରଥମରେ ଜ୍ଞାନ; ଦ୍ୱିତୀୟରେ ଆଚରଣ । ଏଇଠି ତାଙ୍କର ପ୍ରଥମଟି ସମ୍ପର୍କରେ ବିଚାର କରାଯାଉ । ଏ ଜ୍ଞାନ ମାର୍କସବାଦ ବ୍ୟତୀତ – ଅନ୍ୟାନ୍ୟ ଗ୍ରନ୍ଥରୁ ଉପଲବ୍‌ଧ ଧାରଣା । ମାର୍କସବାଦୀ ପ୍ରତ୍ୟେକ ବିଷୟକୁ ଭିନ୍ନ ଦୃଷ୍ଟିରେ ଦେଖେ – ସେ ଦୃଷ୍ଟି ଦ୍ୱନ୍ଦ୍ୱମୂଳକ ଓ ଐତିହାସିକ ବସ୍ତୁବାଦ ଉପରେ ନିର୍ଦ୍ଧାରିତ – ବୈଜ୍ଞାନିକ ସାମ୍ୟବାଦର ମୂଳଭିତ୍ତି-- ଯଥାର୍ଥ ଅନୁଶୀଳନ ପାଇଁ ତେଣୁ ଯୋଡ଼ା ସିଲେଇ ଠାରୁ ଚଣ୍ଡୀପାଠ ଯାଏ ବ୍ୟାପକ ହେବାର କଥା । ଏ କାମ ବ୍ୟାପକ, ତେଣୁ ଖିଲାପ ରହିବା ସ୍ୱାଭାବିକ, ମାତ୍ର ବୈଜ୍ଞାନିକ-ସାମ୍ୟବାଦକୁ ଭଲ କରି ବୁଝିଗଲେ ଆଖିରେ ପଡ଼ୁଥିବା ସବୁ ବିଷୟର ତାତ୍ପର୍ଯ୍ୟପୂର୍ଣ୍ଣ ସମୀକ୍ଷା ସହଜ । ଏହି ଦୃଷ୍ଟିରୁ ରଘୁବାବୁ ପୋଷିତ । ମାର୍କସବାଦୀ ଚେତନାରୁ ପ୍ରାଚୀନ ହିନ୍ଦୁ ସାମାଜିକ ବ୍ୟବସ୍ଥାର ବିଶ୍ଳେଷଣ କରୁଚନ୍ତି—(କ) ଜାତିଭେଦ (ଚତୁର୍ବର୍ଣ୍ଣ) ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ, ବ୍ରାହ୍ମଣ ଯଥାକ୍ରମେ ଜଡ଼, ଉଦ୍ଭିଦ, ଇତର ପ୍ରାଣୀ ଓ ମନୁଷ୍ୟ । ଏହା ଚେତନାର ବିକାଶ ସହ ଜାତି ବର୍ଣ୍ଣର ସୃଷ୍ଟି ।(୨୨) ଏହାର ଅର୍ଥ ମଣିଷକୁ ଅବମାନନା ବୋଲି କେହି ଭୁଲ ବୁଝିବେ ନାହିଁ । ଶୂଦ୍ର – ଜଡ଼ବତ୍ ନିଶ୍ଚେଷ୍ଟ, ଦୃଷ୍ଟି ସଙ୍କୁଚିତ, ଆତ୍ମକୈନ୍ଦ୍ରିକ, ବୈଶ୍ୟ – କର୍ମ ପ୍ରେରଣାର କସ୍ତୁରୀ ସନ୍ତୋଷ ଜାଗ୍ରତ, କୁଟୁମ୍ବୀ ଉପଯୋଗ ପ୍ରବଣ, ଦୃଷ୍ଟି ସୁଦୂରପ୍ରସାରୀ ନୁହେଁ । ଦେଶ ପାଇଁ ପ୍ରାଣ ତ୍ୟାଗ କୁଣ୍ଠିତ; କ୍ଷତ୍ରିୟ – ଇତର ପ୍ରାଣୀ ପରି ଗୋଷ୍ଠୀର ନିରାପତ୍ତା ପାଇଁ ଜାଗ୍ରତ, ଦେଶ ପାଇଁ ବ୍ୟାକୁଳ ଓ ଜୀବନଦାନରେ ସଦା ଅକୁଣ୍ଠିତ । ବ୍ରାହ୍ମଣ – ଦୃଷ୍ଟି ସୁଦୂରପ୍ରସାରୀ, ଆତ୍ମଜ୍ଞାନ ସହ ଅନ୍ୱେଷଣ ଓ ସୃଷ୍ଟି ରହସ୍ୟ ଅନୁଧାନରେ କୁଶଳୀ ।(୨୩) ଫୁଲର ରଙ୍ଗ ପରି ଏହା ନୈସର୍ଗିକ । ମଣିଷ ସୃଷ୍ଟି ନୁହେଁ । ପ୍ରକୃତି ଦତ୍ତ । ପଦାର୍ଥର ଅନ୍ତର୍ନିହିତ ଗୁଣର ପରିସ୍ଫୁଟନ । ବର୍ଣ୍ଣ ବ୍ୟବସ୍ଥା ତେଣୁ ପ୍ରାକୃତିକ । ଜାତିପ୍ରଥା ସମାଜ

୨୧କ । ଶ୍ରେଣୀ ବିଚାର (ପ୍ରବନ୍ଧ) – ଅଗ୍ନିବୀଣା ଡିସେମ୍ବର '୭୩ ।

୨୨ । ଚତୁର୍ବର୍ଣ୍ଣଂ ମୟା ସୃଷ୍ଟଂ - ଝଙ୍କାର ୩୪ଶ ବର୍ଷ ୯ମ ସଂଖ୍ୟା ।

୨୩ । ତତ୍ରୈବ ।

ସୃଷ୍ଟ । ପ୍ରାକୃତିକ ଓ କୃତ୍ରିମ - ବର୍ଣ୍ଣ ଓ ଜାତି ବ୍ୟବସ୍ଥା ଯଥାକ୍ରମେ । ଏହା ଭୁଲ ତାର କଦର୍ଥ କରାଯାଇଛି । ଲେଖକ ଋଗ୍‌ବେଦ, ଗୀତା, ମନୁସ୍ମୃତି ପ୍ରମୁଖ ଶାସ୍ତ୍ର ସମୂହରୁ ସଦୃଷ୍ଟାନ୍ତ ବିଚାର କରିଛନ୍ତି - ସମାଜକୁ ପୂର୍ଣ୍ଣାଙ୍ଗ ମଣିଷଟିଏ ଜ୍ଞାନ କରି ତାହାର ବିକାଶରେ କେଉଁ ବର୍ଣ୍ଣ କେଉଁ ଅବୟବ ( ଶାରୀରିକ ଶକ୍ତିର ପ୍ରତୀକ ) ସହ ସାମ୍ୟ ରକ୍ଷା କରିଛି ତାହା ଦର୍ଶାଇଛନ୍ତି । ବସ୍ତୁତ ବର୍ଣ୍ଣ ବ୍ୟବସ୍ଥାର ଅର୍ଥ ନୃତ୍ତ୍ୱଁ ମଣିଷ ଭିତରେ ପାଚେଶ୍ରୀ ଥିଆର, ତାହା ପ୍ରତୀକାତ୍ମକ ପରିକଳ୍ପନା । ଜାତି ବିଚାରରେ ଗୃହବୃତ୍ତି ପାଚେଶ୍ରୀ ଗଢ଼ି ଉଠିଛି । ବର୍ଣ୍ଣ ବ୍ୟବସ୍ଥାରେ ମଣିଷର କର୍ମ ପ୍ରବୃତ୍ତିରେ ସହାୟକ ଅବୟବର ଭୂମିକା ପ୍ରଦର୍ଶିତ ହୋଇଛି । ପ୍ରସଙ୍ଗ କ୍ରମେ ତ୍ରିଗୁଣ ଓ ତାର ଗୁଣଗତ ଭେଦ ସହ ବର୍ଣ୍ଣର ସମ୍ପୃକ୍ତି ବିଚାର କରିଛନ୍ତି । 'ବର୍ଣ୍ଣାଶ୍ରମ' ଅର୍ଥ ସୁସ୍ଥ ସମାଜ ଗଠନରେ ବର୍ଣ୍ଣମାନଙ୍କର କର୍ତ୍ତବ୍ୟର ବିଚାର ହୋଇଛି । ବ୍ରାହ୍ମଣ, ଅର୍ଥାତ୍ ଉଭୟ ଅନ୍ତର୍ମୁଖୀ ଓ ବହିର୍ମୁଖୀ ଚେତନାର ଅଧିକାରୀ ସଂସାରରୁ ଉପଲବ୍ଧ ଜ୍ଞାନ ସମାଜ ପରିଚାଳନାର୍ଥେ ଶେଷ ଜୀବନରେ ବାନପ୍ରସ୍ଥ ଅବସ୍ଥାରେ ବିତରଣ କରିବେ । ପ୍ଲାଟୋ କହୁଥିଲେ ଦାର୍ଶନିକମାନଙ୍କ ହସ୍ତରେ ସମାଜର ସୁଷ୍ଠୁ ପରିଚାଳନା ନ୍ୟସ୍ତ କରାଯାଉ । ପାଶ୍ଚାତ୍ୟ ଦର୍ଶନ କହୁନଥିଲା କେବଳ, ପ୍ରାଚୀନ ରାଜତନ୍ତ୍ରରେ ବ୍ରାହ୍ମଣମାନେ ହିଁ ଥିଲେ ନିର୍ଦ୍ଦେଶକ । ବଶିଷ୍ଠ, ବିଶ୍ୱାମିତ୍ର, ଭରଦ୍ୱାଜ ପ୍ରମୁଖ ଥିଲେ ଅଗ୍ରଗଣ୍ୟ । ଆଗ୍ରହି ବିନୋବା ତେଣୁ ପ୍ରାଚୀନ ଶାସନକୁ ମୁନି ଋଷିର ଶାସନ ବୋଲି କହୁଥିଲେ । (୨୪) ଦାର୍ଶନିକ ଭାରତବର୍ଷ ତେଣୁ ରାଜାମାନଙ୍କ ଅପେକ୍ଷା ଋଷିମାନଙ୍କୁ ଅଧିକ ଗୁରୁତ୍ୱ ଦେଇଛି । ଋଷିର ପ୍ରଣିଧିରୂପେ ରାଜା ଦଣ୍ଡଧାରୀ ଥିଲେ ମାତ୍ର । କର୍ମାନୁସାରେ ବର୍ଣ୍ଣର ରୂପାନ୍ତର ଘଟୁଥିଲା ବେଦ ଶାସ୍ତ୍ରାଦ୍ୟାଧ୍ୟୟନ ବର୍ଣ୍ଣ ରୂପାନ୍ତରର ହେତୁ । ଏହି ରୂପାନ୍ତର ବଂଶ କ୍ରମିକତାରେ ରକ୍ଷିତ ହେଉନଥିଲା । ବଂଶାନୁକ୍ରମେ ତେଣୁ ବ୍ୟକ୍ତି ପରିଚୟ ନହୋଇ ବୃତ୍ତିଭିତ୍ତିକ ଥିଲା । ପ୍ରାଚୀନ ଭାରତବର୍ଷର ବ୍ୟବସ୍ଥା ବୈଜ୍ଞାନିକ ଦୃଷ୍ଟିସମ୍ମତ, ପ୍ରାକୃତିକ ବିକାଶ ପରି ବ୍ୟକ୍ତିର ବୃତ୍ତିଗତ ବିକାଶ ଉପରେ ଚେତନାର ଓ ସାମାଜିକ ପରିଚୟ ମିଳୁଥିଲା । ମାତ୍ର ଜାତି ବ୍ୟବସ୍ଥା ବର୍ଣ୍ଣବ୍ୟବସ୍ଥାର ଏକ ବିକୃତ ପରିଚୟ ଓ ତନ୍ତ୍ରାବିଭ୍ରାଟ । ବୃହଦାରଣ୍ୟକ ଉପନିଷଦର ସେଇ ପ୍ରଖ୍ୟାତ କାହାଣୀ 'ସତ୍ୟକାମ' (ଜାବାଲ ସତ୍ୟକାମ – ସ୍ୱୈରିଣୀ ଜାବାଲର ପୁତ୍ର) ବୃତ୍ତାନ୍ତ ସ୍ମରଣ କରାଏ ଉପନିଷଦ କାଳରୁ ତନ୍ତ୍ରରେ ବିଭ୍ରାଟ ଏବଂ ବଂଶଭିତ୍ତିକ ପରିଚୟ ଆରମ୍ଭ ହେଲାଣି । ଅବ୍ରାହ୍ମଣ ସନ୍ତାନ ଭିତରେ ବ୍ରହ୍ମତ୍ୱ ସନ୍ଧାନ ପାଇଁ ଋଷି ହରିଦ୍ରୁମତଙ୍କ ପରି କ୍ୱଚିତ ଥିଲେ । ତନ୍ତ୍ରରେ ବିଭ୍ରାଟ କର୍ମକାଣ୍ଡକୁ ପ୍ରାଧାନ୍ୟ ଦେଇଛି, ବ୍ରାହ୍ମଣର ଏକାଧିପତ୍ୟ ବଂଶଭିତ୍ତିକ ପରିଚୟକୁ ସମାଜର ଆଦର୍ଶ ରୂପେ ଗ୍ରହଣ କରିଛି । ଫଳରେ ବୌଦ୍ଧ-ଧର୍ମ ସାମାଜିକ ବିପ୍ଳବ ପାଇଁ ଆଗେଇ ଆସିଛି । ଜନ୍ମଭିତ୍ତିକ ବ୍ୟକ୍ତିର ସାମାଜିକ ମୂଲ୍ୟ ଓ ସ୍ଥିତି ନିରୂପଣ ବିରୋଧୀ ଏହି ବିପ୍ଳବ । (୨୫) ବ୍ୟକ୍ତିର ଜ୍ଞାନ-ସାଧନା ଓ ବୃତ୍ତିକୁ

୨୪ । Binoba Bhave - Democratic values

୨୫ । ସୂଚୀପତ୍ର - ୩ - ୯ - ୨୧୯ - ଚତୁର୍ବର୍ଣ୍ଣଂ ମୟାସୃଷ୍ଟଂ । ପୁନଶ୍ଚ କଃ ପନ୍ଥା—
'ପ୍ରଗତିବାଦୀ' ସାହିତ୍ୟ ବିଶେଷାଙ୍କ ଦେଖନ୍ତୁ ।

ବଦାଯ୍ଯ ଦେଇ ଯେଉଁଦନ ଖରତ ବର୍ଷର ସମାଜରେ ଜାତ୍ୟାଭିମାନୀମାନେ ଅଯୋଗ୍ୟମାନଙ୍କୁ ପଦାରୂଢ଼ କଲେ ସେହିଦନରୁ ଯୋଗ୍ୟତମର ମୃତ୍ୟୁ ଘଟିଲା । ଜଟିଳ ହେଲା ସାମାଜିକ ଜୀବନ, ଯାହା ପୂର୍ଣ୍ଣ ରୂପ ପ୍ରବଞ୍ଚନାର ଓ ଅଯୋଗ୍ୟତମର ପ୍ରତିଷ୍ଠା ।

କମ୍ୟୁନିଷ୍ଟ ବିପ୍ଳବ କରେ— ଏ ବିପ୍ଳବ ଐତିହାସିକ ଦୀକ୍ଷାରେ ଦୀପ୍ତିମନ୍ତ ହେବ । ଇତିହାସର ଉଦର ପରି ତାର ଆଚି । ବିଜ୍ଞାନର ଚାକଚିକ୍ୟ ପରି ଦୃଷ୍ଟି । ସେଇ ଦୃଷ୍ଟିର ପରିଚୟ ତାଙ୍କର ଶ୍ରେଣୀ ବିପ୍ଳବ. ବିପ୍ଳବର ଇତିହାସ, ସାମାଜିକ ଚେତନା ସୃଷ୍ଟିରେ ସାହିତ୍ୟର ଭୂମିକା ଏବଂ କମ୍ଳଶୀ ସାହିତ୍ୟ । 'ରାଜନୀତି ଆଉ ଆମେ' କିମ୍ବା 'ସଭ୍ୟତାର ଆରେ' ବହି ଦୁଇଟିରେ ପ୍ରଦର୍ଶିତ ପ୍ରାଥମିକ ବିଶ୍ଳେଷଣ ଏ ପ୍ରବନ୍ଧଗୁଡ଼ିକରେ ସମ୍ପ୍ରସାରିତ ହୋଇ ଉଠିଛି । ଏଗୁଡ଼ିକ ମୁଖ୍ୟତଃ ବୁଦ୍ଧିଜୀବୀମାନଙ୍କ ପାଇଁ, ଅଧିକ ପ୍ରୟୋଜନଯୁକ୍ତ । ଶ୍ରେଣୀ ଚେତନା ଓ ବିପ୍ଳବ କଥା କହିବା ବେଳେ ସ୍ୱର୍ଗତ ଦାସ ଅଧିକ ପରିସର ପାଇଛନ୍ତି— ତେଣୁ ତାର ବିଭିନ୍ନ ଦିଗ ଦେଖାଇଛନ୍ତି । ଯଥା ଶ୍ରେଣୀ-ଚରିତ୍ର (୨୬), ଉଭୟ ଶ୍ରେଣୀ ମଧ୍ୟରେ ମୌଳିକ ବୈଷମ୍ୟ ଓ ସ୍ୱରୂପ (୨୭), ଶ୍ରେଣୀ-ଚେତନାର ମାର୍ଗ (୨୮), ବାମପନ୍ଥୀ ବିଚ୍ୟୁତି ଓ ଦକ୍ଷିଣପନ୍ଥୀ ବିଚ୍ୟୁତି (୨୯) ପ୍ରଭୃତିର ପ୍ରଶ୍ନ ଉଠାଇଛନ୍ତି । 'ବିପ୍ଳବର ଇତିହାସ' ପ୍ରବନ୍ଧଟି କ୍ଷୁଦ୍ର ହେଲେହେଁ ଏଥିରେ ସୃଷ୍ଟିତତ୍ତ୍ୱ, ଐତିହାସିକ ବସ୍ତୁବାଦ, ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ, ବିପ୍ଳବ ଓ ସଂସ୍କାର, ସାମ୍ୟବାଦ, ବୈଜ୍ଞାନିକ ସାମ୍ୟବାଦ, ଲେନିନବାଦର ମନୋଜ୍ଞ ଚିତ୍ରଣ ରହିଛି । ଏସବୁ ନୂତନ ନହେଲେହେଁ, ସଂକ୍ଷେପରେ ଓ ଉପସ୍ଥାପନା ରୀତିରେ ନବୀନ ଓ ସମସାମୟିକ ବିପ୍ଳବ ପରିପ୍ରେକ୍ଷୀରେ ଜରୁରୀ । ମାର୍କସବାଦର ଅନେକ ସମୟରେ ବିରୂପ ଆଲୋଚନା ହୁଏ— ମୁଖ୍ୟତଃ ବିରୋଧୀ ସାମନ୍ତବାଦୀ ଓ ପୁଞ୍ଜିପତିମାନଙ୍କ ଦ୍ୱାରା ଏହାର ପ୍ରତିଷ୍ଠିତି ଶିବିର ଖୋଲେ । ତେଣୁ ଅନେକ ସଂଶୟାକୁଳ ହୋଇ ଉଠନ୍ତି । ସେମାନଙ୍କ ପାଇଁ ସ୍ୱର୍ଗତ ଦାସଙ୍କର ଆଲୋଚନା ଏକପ୍ରକାର ସତର୍କବାଣୀ । ପ୍ରକୃତିର ନିୟମ ବହିର୍ଭୂତ ନୁହେଁ ମାର୍କସବାଦୀ ସମୀକ୍ଷା । ଏହା ପରିକଳ୍ପିତ ଏକ ଅଦଭୂତ ଉଦ୍ଭଟ ଚିନ୍ତା ନୁହେଁ । ତେଣୁ ତାର ସ୍ୱରୂପକୁ ଜାଣିବା ପାଇଁ ଆମକୁ ପ୍ରାକୃତିକ ବିବର୍ତ୍ତନ ଧାରାକୁ ବୁଝିବାକୁ ହେବ । ସୃଷ୍ଟିତତ୍ତ୍ୱ ( ସ୍ଥିତାବସ୍ଥା — **Thesis**, ଅଭାବ-ଅନୁଭୂତି — **Anti thesis**, ପରିଣତି — **Synthesis** ) ଭିତରେ ବସ୍ତୁର ମୌଳିକ ଧର୍ମ ରହିବା ପରି ପ୍ରକୃତିର ଏହି ତିନୋଟି ଅବସ୍ଥାରେ ପରିଚାଳିତ ସମସ୍ତ ଚେତନ ବା ଜଡ଼ ଜଗତ । କିନ୍ତୁ ଭାବବାଦୀମାନେ ଏ ସତ୍ୟକୁ ଅସ୍ୱୀକାର କରନ୍ତି । ତେଣୁ ଐତିହାସିକ ଓ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦକୁ ନିରୀକ୍ଷଣ କଲେ ଭାବବାଦୀମାନଙ୍କର ଯୁକ୍ତିର ଅସାରତା ପ୍ରତିପନ୍ନ ହେବ । ଲେଖକଙ୍କର ଯୁକ୍ତିରେ ସେ ସବୁ ପ୍ରତିଫଳିତ ନୁହେଁ କେବଳ, ଅଧିକନ୍ତୁ ଗ୍ରାହ୍ୟ ହୋଇ ପାରିଛି ।

---

୨୬ । ଶ୍ରେଣୀବିପ୍ଳବ—ଅଗ୍ନିବୀଣା ଡ଼ିସେମ୍ବର ୬୩,

୨୭, ୨୮, ୨୯ । ଶ୍ରେଣୀ ଚେତନା, ଅଗ୍ନିବୀଣା - ଜାନୁୟାରୀ ୬୪

କବିର ପ୍ରାଣ ସେ ପାଇଥିଲେ ଏ ମାଟିରୁ. ମାଟିର ବିକାଶର ସୂତ୍ରରୁ ଉତ୍ପନ୍ନ ହୋଇଥିଲା ପ୍ରଜ୍ଞା । ସ୍ୱତନ୍ତ୍ର ଏକ ଜୀବନ-ଦର୍ଶନ ଗଢିବାରେ ତାର ଭୂମିକା ଥିଲା ଅନନ୍ୟ । ତାଙ୍କର କବିତାର ପ୍ରତ୍ୟେକ ପଦରେ ସେ ବଳିଷ୍ଠ ସ୍ୱପ୍ନଭୂ ପ୍ରାଣର ପୂର୍ଣ୍ଣ ଦୃଷ୍ଟି ପ୍ରତିଫଳିତ । ସେ ଦୃଷ୍ଟି କଳ୍ପନାର ସୀମାହୀନ ବିଚରଣରେ ସଙ୍କୀର୍ଣ୍ଣ ନୁହେଁ । ତାହା ପ୍ରଚଳିତ ସମାଜ ବ୍ୟବସ୍ଥାରେ ମାନବଚେତନାର ଅଗ୍ରଗତି ପଥରେ ବିଦ୍ୟମାନ ଅନ୍ତରାୟର ଦୃପ୍ତ ପ୍ରତିବାଦ । ନୂତନ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ପ୍ରସାରିତ ଦୃଷ୍ଟିର ଫଳକରୁ ବିଚ୍ଛୁରିତ ଏକ ମହାନ ଦର୍ଶନ । ଯାହା ପୃଥିବୀଛଡ଼ା ନୁହେଁ— ବିକାଶର ବୈଜ୍ଞାନିକ ସୂତ୍ରରେ ଗ୍ରଥିତ । ବଳିଷ୍ଠ ଅଙ୍ଗୀକାରରୁ ସମ୍ଭୂତ—ସାମାଜିକ ଚେତନାର ରୂପାନ୍ତର ଲାଗି ଉଦ୍‌ବାହୁ ସାହିତ୍ୟିକର ଭୂମିକା ସମ୍ପର୍କରେ ସଚେତନ ନଥିବା ସ୍ରଷ୍ଟା ପ୍ରାଣ ସେପରି ମନ୍ତ୍ରରେ ଦୀକ୍ଷିତ ହେବା ଅସ୍ୱାଭାବିକ । ସେହି ଚେତନାଭୂକ ପ୍ରାଣର ପରିଚୟ ମିଳିଛି 'ସାମାଜିକ ଚେତନା ସୃଷ୍ଟିରେ ସାହିତ୍ୟର ଭୂମିକା' ଶୀର୍ଷକ ଏକ ପ୍ରବନ୍ଧରୁ । ପ୍ରଜାତନ୍ତ୍ରର ବିଦ୍ୱତ୍ ମିଳନ ଅବସରରେ ପ୍ରଦତ୍ତ ଭାଷଣର ରୂପାନ୍ତର ଏହା (୩୦) କାଳିଦାସଙ୍କର ପ୍ରଖ୍ୟାତ ପଦ 'ବାଗାର୍ଥା ବିବ ସମ୍ପୃକ୍ତୌ ! ..''(୩୧)ରୁ କାବ୍ୟର ପ୍ରକୃଷ୍ଟ ଭିତ୍ତିଭୂମି ବିଶ୍ଳେଷଣରୁ ଆରମ୍ଭ କରି ମାର୍କସବାଦର ଶେଷତମ ସିଦ୍ଧାନ୍ତ ଯାଏ ତାଙ୍କ ଦୃଷ୍ଟି ପ୍ରସାରିତ । ''ପାର୍ବତୀ ଶୈଳୀର ପ୍ରତୀକ, ମହାଦେବ ମଙ୍ଗଳର । ଏ ଦୁଇଙ୍କର ମିଳନ ଜଗତର ଆନନ୍ଦ ପରି ସଦ୍‌ଜ୍ଞାନ ସାହିତ୍ୟିକ ସୌରଭରେ ମଣ୍ଡିତ ନହେଲେ ହୃଦୟଗ୍ରାହୀ ହୁଏନାହିଁ । ସତ୍ୟକୁ ଶିବତ୍ୱରେ ପ୍ରତିଷ୍ଠା କରାଇବା ଲାଗି ଶୈଳୀର ରୁଚିବନ୍ତ ଓ ଶୁଚିବନ୍ତ ସାଧନା ଲୋଡ଼ା, ଉଭୟର ସମନ୍ୱୟରେ ଯେ ସୃଷ୍ଟି ହୁଏ ତାହା ସୁନ୍ଦର, ପ୍ରାଣସ୍ପର୍ଶୀ । ଫଳରେ ତତ୍ତ୍ୱଜ୍ଞାନ ଓ ଶୈଳୀ ଉଭୟେ ସମାଜରେ ପ୍ରତିପତ୍ତି ଲାଭ କରନ୍ତି । × ଅପର ପକ୍ଷରେ ଜୀବନ-ଦର୍ଶନ ବିନା ଶୈଳୀ ଶୂନ୍ୟଗର୍ଭା, ନିରର୍ଥକ ବାଗାଡ଼ମ୍ବର ମାତ୍ର । ଏହା ଦେହହୀନ ଆଙ୍ଗିକର ଶୁଷ୍କା ପରିପାଟୀ ; ବନ୍ଧ୍ୟାର ପ୍ରସବ ବେଦନା ସଙ୍ଗେ ତୁଳନୀୟ । ରୁଗ୍ଣ ଜୀବନ ଦର୍ଶନରେ ରୂପରସ ଫୁଟେଇବା ଅର୍ଥ ଯକ୍ଷ୍ମାରୋଗୀର ଲମ୍ବାକଲରେ ସଜନ'' (୩୨) ସୁନ୍ଦର ଶାଣିତ ବ୍ୟଙ୍ଗ କରିଛନ୍ତି ସେ ଯେଉଁମାନେ ଶୈଳୀରେ ଓ ବୃଥା ଆଙ୍ଗିକରେ ଗୁରୁତ୍ୱ ଦିଅନ୍ତି । ମହାକବିଙ୍କ ପରି ସେ ଶିବତ୍ୱ-ସଦ୍‌ଜ୍ଞାନ-ମଙ୍ଗଳ-ଅର୍ଥାତ ଦୃଢ଼ ଜୀବନ-ଦର୍ଶନର ପକ୍ଷ ସମର୍ଥନ କରିଛନ୍ତି । ସାମ୍ପ୍ରତିକ ସାହିତ୍ୟିକ ମଣ୍ଡଳୀରେ 'ପାଟଲେଖି ଘାଟ ବା ସ୍ୱପ୍ନବିଳାସୀ ଖିରୁ ପଳାୟନ ପନ୍ଥୀ'ଙ୍କ ସଂଖ୍ୟା ପ୍ରଚୁର । ମନ୍ଦକବି ଯଶପ୍ରାର୍ଥୀ ପରି ଅର୍ଥ ଓ ଯଶ ଲୋଭରେ ଗ୍ରାସ ସାହିତ୍ୟିକକୁ ପ୍ରାଚୀନ ଗ୍ରାସ ଛାଦନ ପଶୁଠାରୁ

---

୩୦ । ଝଙ୍କାର—ଜୁନ ୧୯୭୬ ।

୩୧ । ବାଗାର୍ଥା ବିବ ସମ୍ପୃକ୍ତୌ ବାଗାର୍ଥ ପ୍ରତି ପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ, ରଘୁବଂଶ ୧/୧

୩୨ । ଝଙ୍କାର—ଜୁନ ୧୯୭୬ ।

ପୃଥକ ବିବେଚନା କରନ୍ତି ନାହିଁ । କେହି କେହି ଚକ୍ରାକଗତିରେ ପନ୍ଥାଭ୍ରଷ୍ଟ ଦ୍ୱନ୍ଦ୍ୱରୁ ରକ୍ଷା ପାଇଁ ଚେଷ୍ଟା କରି ଆତ୍ମକୈନ୍ଦ୍ରିକ ଏକ ସାହିତ୍ୟ ଖୋଳ ଧାରଣ କରନ୍ତି — ଯାହା ବାସ୍ତବରେ ସାମ୍ପ୍ରତିକ ଉଚ୍ଚଶିକ୍ଷାଭିମାନୀ ଗୋଷ୍ଠୀ ପ୍ରଧାନ ସାହିତ୍ୟ ସୃଷ୍ଟିରେ ସହାୟକ ହୋଇଛି । ସମାଜ, ଅଭଡ଼ା ରନ୍ଧନର ତଳ ପାଚଟି ପରି ସବୁ ଜଟିଳ ଯନ୍ତ୍ରଣାରେ ଶରବିଦ୍ଧ କ୍ରୌଞ୍ଚ ସାଜିଛି, ମାତ୍ର ସାହିତ୍ୟ ବାଲ୍ମୀକିଙ୍କ ପ୍ରାଣରେ ଅଶ୍ରୁ କୋପାନଳ ହେଉନାହିଁ । ତେଣୁ ସ୍ୱର୍ଗତ ଦାସ ସତର୍କ କରାଇଛନ୍ତି — ସାହିତ୍ୟକର ଶୁଦ୍ଧ ଜୀବନ - ଦର୍ଶନ ପ୍ରତି ଅଙ୍ଗୀକାର ପ୍ରବଣତା ଅଭାବରେ ସମାଜ ସ୍ରଷ୍ଟା ଶ୍ରେଣୀର ଲମ୍ପାକଳର ସହଜ ସମ୍ଭବ ହେବ । ଜୀବନ ଦର୍ଶନର ମୌଳିକ ସୂତ୍ର — ପ୍ରବହମାନ ବିକାଶର ଧାରାରେ ଜଡ଼, ଉଦ୍ଭିଦ, ପ୍ରାଣୀ ଓ ମାନବ ଅର୍ଥାତ୍ ଅଚେତନରୁ ଅଧିକରୁ ଅଧିକ ଚେତନଶୀଳକୁ ବିକାଶର ଯେଉଁ ପର୍ଯ୍ୟାୟ, ବିକାଶୋନ୍ମୁଖୀ ପ୍ରକୃତିର ପରିପନ୍ଥୀ ମାର୍ଗ ପରିଯୋଗ — ଅର୍ଥାତ୍ ପ୍ରାକୃତିକ ସହଜ ବିକାଶର ଦ୍ୱନ୍ଦ୍ୱଗୁଡ଼ିକୁ ବୁଝିବାହିଁ ଲେଖକର ଧର୍ମ ହେବା ଉଚିତ । ସେହି ଅବବୋଧରୁ ସୃଷ୍ଟ ମାନବିକତା ଓ ଜାତୀୟତାବୋଧରେ ଆଧାରିତ ପାରିବାରିକ ଓ ବ୍ୟକ୍ତିଗତ ସୁଖ ସମ୍ଭୋଗର କାମନାବିଳାସ ସମାଜର ସ୍ପୃହଣୀୟ ହେବ । ଯେଉଁ ବିଶ୍ୱ-ମାନବିକତା, ଜାତୀୟତା, ଗୋଷ୍ଠୀ ଓ ଦଳୀୟ ଚେତନା ଏହି ବ୍ରହ୍ମଜ୍ଞାନ ଉପରେ ପ୍ରତିଷ୍ଠିତ ତାହା ସମନ୍ୱିତ ଓ ସୁଶୃଙ୍ଖଳ ।(୩୩) ସାମାଜିକ ଚେତନାର ପରିବର୍ତ୍ତନ କାମୀ, ଅଗ୍ରଗାମୀ ଚେତନାର ବାର୍ତ୍ତାବହ ( ଏହାକୁ ଯେତେ ପ୍ରଚାରଧର୍ମୀ କୁହା ହେଲେ ମଧ୍ୟ ) ସାହିତ୍ୟ ଅଶେଷ କଲ୍ୟାଣକର । ଜୀବନ ପ୍ରବାହର ସମ୍ପୂର୍ଣ୍ଣ ଦୃଷ୍ଟି ଉପରେ ପର୍ଯ୍ୟବସିତ ବିଚାରର ମାର୍ଗ ମାନବ ସମାଜକୁ ବିକାଶ ପଥରେ ନେଇଯାଏ । ଖଣ୍ଡିତ ଦୃଷ୍ଟି ଉପରେ ଯେଉଁ ବିଚାର କରାଯାଏ ସେ ପନ୍ଥା ବିନାଶର । ଜୀବନ-ଦର୍ଶନର ଏ ମୌଳିକ ସୂତ୍ର ସାମାଜିକ ଜୀବନର ପ୍ରତି କ୍ଷେତ୍ରରେ ପ୍ରଯୁଜ୍ୟ । ବିକାଶଧର୍ମୀ ବିଚାରଧାରାକୁ ଅନୁସରଣ କରି ଯେଉଁ ସାହିତ୍ୟ ସୃଷ୍ଟି କରାଯାଏ ତାହା ସାମାଜିକ ଚେତନାର ଅଭିବୃଦ୍ଧି ସାଧନ କରିଥାଏ । ସେହି ଶ୍ରେଣୀର ସାହିତ୍ୟିକ ସମାଜର ଜୟଯାତ୍ରାରେ ମଶାଲବାହୀ ଦଳ । (୩୪)

ଏ ପରିପ୍ରେକ୍ଷୀରେ ‘ବିପ୍ଳବୀ ସାହିତ୍ୟ’ର କଥା ମନକୁ ଆସେ । ‘ବିପ୍ଳବୀ ସାହିତ୍ୟ’ ସାହିତ୍ୟର ଏକ ବିଭାଗ । ଯଦିଓ ବିପ୍ଳବର ପ୍ରସାର, ପ୍ରଚାର ପାଇଁ ଲିଖିତ ଦଲିଲମାନଙ୍କୁ

---

୩୩ । ଝଙ୍କାର—ଜୁନ ୧୯୭୬ ।

୩୪ । ତତ୍ରୈବ ।

ବିପ୍ଳବ ବିରୋଧୀମାନେ ବିପ୍ଳବୀ ସାହିତ୍ୟ କହିଥାନ୍ତି ।(୩୫) ଲେଖକ ବିପ୍ଳବର ଭିତ୍ତି, ତଥା ବିପ୍ଳବୀର ଆଭିମୁଖ୍ୟ-ଦର୍ଶନ କଥା ବିଚାର କରିଛନ୍ତି । ସ୍ଥିତାବସ୍ଥାର ବିରୋଧ କରିବା ଓ ତାର ବିକଳ୍ପରେ ନୂତନ ଜୀବନାସ୍ୱାଦନର ପରିବେଶ ସୃଷ୍ଟି ବିପ୍ଳବୀର କାମନା । ବିପ୍ଳବୀ ବଞ୍ଚିବାର ମୋହ ପ୍ରତ୍ୟେକ ପ୍ରାଣରେ ସ୍ୱପ୍ନମୟ କରି ଗଢ଼େ । ବଞ୍ଚିବାର ପଥ ସ୍ଥିତାବସ୍ଥାରେ ଅବରୁଦ୍ଧ । ଯେଉଁମାନେ ସେହି କାଳୀନ ଜୀବନର ଚିତ୍ର ଆଙ୍କି ପାଠକଙ୍କୁ ଆନନ୍ଦ ଦିଅନ୍ତି ସେମାନେ ସବୁ ଦୈନ୍ୟ ଯନ୍ତ୍ରଣା ସତ୍ତ୍ୱେ ସ୍ଥିତାବସ୍ଥାର ଉପଭୋଗ ପାଇଁ ପରାମର୍ଶ ଦିଅନ୍ତି । ପ୍ରଚଳିତ ଜୀବନଧାରା ଈଶ୍ୱର ଦତ୍ତ ଏବଂ ସେଥିରୁ ମୁକ୍ତିଲାଭ ବା ତାର ମୌଳିକ ପରିବର୍ତ୍ତନ ସମ୍ଭବ ନୁହେଁ ବୋଲି ସେମାନେ ପ୍ରଚାର କରନ୍ତି । ଏହାହିଁ ଉପରକଥିତ ସାମାଜିକ ଚେତନାର ବିକାଶଶୀଳ ଅବସ୍ଥାକୁ ପ୍ରତିବାଦ କରେ । ପ୍ରାକୃତିକ ବିକାଶର ମାନ ଉପରେ ଜୀବନ ବିକାଶଧାରାକୁ ପ୍ରତ୍ୟାଖ୍ୟାନ କରିବା ଅର୍ଥ ଐଶ୍ୱରିକ ବା ଭାବବାଦୀ ଯୁକ୍ତିକୁ ଗ୍ରହଣ କରିବା । ଏହା ଅବୈଜ୍ଞାନିକ । ସୁତରାଂ ବିପ୍ଳବୀ ସାହିତ୍ୟ ହିଁ ଯୁଗେ ଯୁଗେ ଶାଶ୍ୱତ ହେବ କାରଣ ତାହା ସବୁବେଳେ ପ୍ରାକୃତିକ ନିୟମରେ ବିଶ୍ୱାସୀ ଓ ଜୀବନର ନିତ୍ୟ ବିକାଶଧାରାକୁ ଅନ୍ତର୍ଗର୍ଭିତ କରିଥାଏ । "ଜନଗଣ ତାଙ୍କର ଈପ୍ସିତ ଅଧିକାରକୁ ସାବ୍ୟସ୍ତ କରିବାକୁ ଯେଉଁ ଆନ୍ଦୋଳନ ସୃଷ୍ଟି କରନ୍ତି, ବିପ୍ଳବୀ ସାହିତ୍ୟ ସେଇ ଯଜ୍ଞବେଦୀରୁ ଜାତ ହୁଏ । ଆନ୍ଦୋଳନର ଆଦର୍ଶକୁ ଆବେଗମୟ କରିବା ଏ ସାହିତ୍ୟର ଉଦ୍ଦେଶ୍ୟ । ସାହିତ୍ୟ ମାଧ୍ୟମରେ ଈପ୍ସିତ ଆଦର୍ଶ ବୌଦ୍ଧିକ ସ୍ତରରୁ ପ୍ରାଣମୟ ସ୍ତରକୁ ଉନ୍ନୀତ ହୁଏ । ଫଳତଃ ଆନ୍ଦୋଳନ ସୁଦୃଢ଼ ଓ ପ୍ରଖର ହୁଏ । ଗଣଆନ୍ଦୋଳନ ବିନା ବିପ୍ଳବୀ ସାହିତ୍ୟର ସୃଷ୍ଟି ଏକ ଭିତ୍ତିହୀନ ପରିକଳ୍ପନା ମାତ୍ର । ଅବାସ୍ତବ କଳ୍ପନାବିଳାସୀ ସାହିତ୍ୟ ।" (୩୬) ଆନ୍ଦୋଳନ ବା ବିପ୍ଳବକୁ ଯେଉଁମାନେ ଧ୍ୱଂସାତ୍ମକ ମନେକରନ୍ତି ସେମାନେ ଏ ଫଙ୍କାରେ କଥିତ ଉଦ୍ଦେଶ୍ୟ ସହିତ ବିପ୍ଳବୀ ସାହିତ୍ୟକୁ ସଙ୍କୀର୍ଣ୍ଣ ମନେ କରିପାରନ୍ତି । କିନ୍ତୁ ବିପ୍ଳବ ଯେ ଅନ୍ତର୍ମୁଖୀ ଓ ଚିର ଦେଦୀପ୍ୟମାନ ଜାଗରଣ ଅବସ୍ଥାକୁ ଇଙ୍ଗିତ ଦିଏ, ତାହା ସେମାନେ ବୁଝିବା ଉଚିତ । ସର୍ବଦା ଚେତନାର ଉଦ୍ଭାସିତ ପଦ୍ମାସନ ଯାର ଲକ୍ଷ୍ୟ ତାର ଭୂମିକା ବିପ୍ଳବୀର ଭୂମିକା ହେବା ବିଧେୟ । ମାତ୍ର ସ୍ୱର୍ଗତ ଦାସ ସଂକ୍ଷିପ୍ତ ପରିସରରେ ଏକ ଉଦ୍ଦେଶ୍ୟ ଭିତ୍ତିକ ରଚନାକୁ ସୀମାବଦ୍ଧ କରିଚନ୍ତି । ଯାହାହେଉ ବିପ୍ଳବୀ ସାହିତ୍ୟ ଓ

---

୩୫ । ଗୋଷ୍ଠି ବିପ୍ଳବୀମାନଙ୍କର ପ୍ରତ୍ୟେକ ରଚନାକୁ ଏପରିକି ଉଚ୍ଚମାନର 'ଚିରସ୍ଥିତ' ରଚନାକୁ ବିପ୍ଳବୀ ସାହିତ୍ୟ ବୋଲି ପ୍ରତ୍ୟାଖ୍ୟାନ କରିଥାଏ ।

୩୬ । ବିପ୍ଳବୀ ସାହିତ୍ୟ – ଆବର୍ତ୍ତି – ୧/୫ ସଂଖ୍ୟା – ୮୩ ମାର୍ଚ୍ଚ

ଉପଭୋଗୀ ସାହିତ୍ୟର ଦୁଇଟି ସ୍ତର କରି ସେ ଉଭୟ ଶ୍ରେଣୀର ସାହିତ୍ୟିକଙ୍କର ଆଦର୍ଶ ଆଙ୍କିଛନ୍ତି— ଜଣେ ଅଲଙ୍କାରିକ କାମ୍ୟମ / ଯଶ / ଅର୍ଥର ପ୍ରଭାବରେ ଓ ଅନ୍ୟ ଜଣେ କବି ହେବାର ବାସନା ବିହୀନ ଆଦର୍ଶରେ ଉଦ୍‌ବୁଦ୍ଧ । ଉତ୍କଳ ଗୌରବଙ୍କର କବିତା ପଛରେ କବି ହେବାର ବାସନା ନଥିଲା । କିନ୍ତୁ ଉପଭୋଗୀ ସାହିତ୍ୟର କାମ୍ୟମ ଗ୍ରନ୍ଥରେ ସେ ଶ୍ରେଣୀର ସାହିତ୍ୟ ବିଗୃତ କଲେ କବି ପ୍ରତି ତଥା ତାର ଉଦ୍ଦେଶ୍ୟ ପ୍ରତି ଅବମାନନା ହେବ । ତେଣୁ ସେ ସତର୍କ କରାଇଛନ୍ତି ବିପ୍ଳବୀ ସାହିତ୍ୟର ଲେଖକଙ୍କ ଶ୍ରେଣୀ ଗଣନା ପ୍ରତି ଦୃଷ୍ଟି ନଦେଇ ଲେଖାବଳୀର ବିଗୃର କଲେ ଭୁଲ ହେବ । କାରଣ ଆଦର୍ଶ ଓ ନିଷ୍ଠା ଅଭାବରୁ ଅନେକ ପ୍ରତିବିପ୍ଳବୀ ସାଜି ଉଦରାର୍ଥ ସଂଗ୍ରହ କରନ୍ତି, ଗଣ୍ଡାସ୍ୱତ୍ତ୍ୱ ଶକ୍ତି ସହ ଭୁଙ୍ଗାମଣା କରନ୍ତି । ବିପ୍ଳବୀ ସାହିତ୍ୟିକ ପକ୍ଷରେ ତାର ସାହିତ୍ୟ ଏକ ନୈବେଦ୍ୟ, ଏକ ନିବେଦନ, ଏକ ଆତ୍ମୋତ୍ସର୍ଗ । (୩୭)

ସ୍ୱର୍ଗତ ଦାସଙ୍କ ସମୀକ୍ଷା (୩୮) 'ସମଦୃଷ୍ଟି' ଛଦ୍ମନାମରେ ଉନ୍ନତ ଅନୁଶୀଳନର ପରିଚୟ ଦେଇଛି । କୋଣାର୍କ ଶିଳ୍ପକଳାରେ ବିସ୍ମୟ ନୁହେଁ କେବଳ, ଅଧିକନ୍ତୁ ତାହା ଯୁଗ ଯୁଗର ବିଭିନ୍ନ କବିଙ୍କ ଦୃଷ୍ଟିର ଗୋପନ ରହସ୍ୟକୁ ଉନ୍ମୋଚିତ କରି ରଖିଛି । ରାଧାନାଥଙ୍କ ଠାରୁ ରବି ସିଂ, କମ୍ବା ଜଦଶ୍ରୁତିର ଶିକ୍ଷଳବୋଲା ଗପଠୁ ପରି ମହଲର ଶିହରଣ ଝାଉଁଲା କାହାଣୀ – ସବୁଠି କବିର / ସ୍ରଷ୍ଟାର ଆଖି । ସେ ଆଖି କଲ ନେଇଥିବା ରୂପର ଢାଞ୍ଚା ପଛରେ ନିହିତ ଦର୍ଶନଟି ବଡ଼କଥା । ରାଧାନାଥ କମ୍ବଦନ୍ତୀ ଭଣ୍ଡାରକୁ ନୂଆ ତଥ୍ୟଟି ଯୋଗାଇଲେ ଓ ତାର ସାହିତ୍ୟିକ ପ୍ରତିଷ୍ଠା ଗୃହିଁଲେ । ଗୋପବନ୍ଧୁ ଓ ନୀଳକଣ୍ଠ (୩୯)ଙ୍କ ଦୃଷ୍ଟିଭଙ୍ଗୀ ତତ୍କାଳୀନ ଐତିହାସିକ ଆବଶ୍ୟକତାରୁ ଉତ୍ପନ୍ନ । ଇତିହାସ ଓ କମ୍ବଦନ୍ତୀ ସାଉଁଳି ଉଠିଛି ତତ୍କାଳୀନ ଜାତୀୟତାବୋଧ ରୂପେ । ଜାତୀୟ ଜୀବନରେ ମ୍ଳାନମୁଖୀନତାର ବିରୋଧରେ, ଅତୀତ ଗାଥାର ବିପୁଳ ବୈଚିତ୍ର୍ୟ— ବ୍ୟକ୍ତିର ଆତ୍ମଦାନ, ସିନ୍ଧୁ ଓ ବିନ୍ଦୁ ମଧ୍ୟରେ ଦ୍ୱନ୍ଦ୍ୱମୂଳକ ବିସ୍ତାରର ନ୍ୟାୟପୂର୍ଣ୍ଣ ସମାଧାନ— 'ସିନ୍ଧୁରେ ବିନ୍ଦୁର ଆତ୍ମୋତ୍ସର୍ଗ' ଜାତିର ବ୍ରତ ହେଉ— ଏହାହିଁ ଥିଲା ସତ୍ୟବାଦୀ ସାଧକଙ୍କର ଉଦ୍ଦେଶ୍ୟ । ଦାସ କହୁଛନ୍ତି— 'ପ୍ରତିଭା କୂଳରୁ ସମ୍ଭୂତ, ' କୂଳ ସରେ ଆତ୍ମନିବେଦନହିଁ ତାର ସ୍ୱାଭାବିକ ଧର୍ମ ।' ଏ ଧର୍ମପାଳନରେ ଓଡ଼ିଆର କୁଣ୍ଠା କାହିଁକି ? ତାହାତ ଜାତୀୟ ଗଣନା । ମାତ୍ର ଏହାର ଐତିହାସିକ ବିଚିତ୍ରିନ ପରିବର୍ତ୍ତୀ କବିକଣ୍ଠରେ

୩୭ । ଆବର୍ତ୍ତି – ୮୩ ମାର୍ଚ୍ଚ – 'ବିପ୍ଳବୀ ସାହିତ୍ୟ' ।
୩୮ । 'କୋଣାର୍କ ପରିକ୍ରମା' – ଇସ୍ତାହାର – ୧୯୮୧

ଫୁଟିନାହିଁ । କୁଳରୁ ସଂଭୂତ ପ୍ରଭାବ କୁଳତ୍ୟାଗୀ ଦୃଷ୍ଟିରେ ବିପଳର୍କ୍ଷର କରୁଛି ସିନ୍ଧୁକୁ । ବିନ୍ଦୁର ଅହଂକାର ସିନ୍ଧୁର ସମସ୍ତ ଐଶ୍ୱର୍ଯ୍ୟକୁ ଭ୍ରୂକ୍ଷେପ କରୁଛି । ମୂଢ଼ଆର ଆଖିନେଇ କୌଣାର୍କକୁ ଦେଖିବାରେ ସଚ୍ଚି ରାଉତରାୟଙ୍କ ସାମ୍ୟବାଦୀ ଆଦର୍ଶର ବାହକ ବୋଲି ମନେ କରିବା ଯଥାର୍ଥ ହୋଇନାହିଁ । କଳା ମଣିଷର କଥା କହୁନାହିଁ ବୋଲି କଙ୍କାଳର ଭଗ୍ନସ୍ତୂପ ବୋଲି କହିବା ପୁଣି ସେହିଁ କୁଳର ଅବମାନନା । କବିର ଅପକର୍ମ । କବି ଶିଳ୍ପୀର ସାମାଜିକ ବ୍ୟବସ୍ଥାକୁ ବିଗୃଶ ନାହିଁ ; ବିଗୃଶଛି ରାଜାର ଆଦେଶରେ ନଇଁପଡ଼ିଥିବା ମେରୁ-ଦଣ୍ଡକୁ । ଦୁଇଟି କଥା ପୃଥକ— ଶିଳ୍ପୀ 'ରାଜାଙ୍କାକୁ ଶିରୋଧାର୍ଯ୍ୟ' ମାନିନେବା ପଛରେ ସେ ଯୁଗର ମୂଲ୍ୟବୋଧହିଁ ପ୍ରକାଶିତ । ଏହା ସ୍ୱାଭାବିକ । ଏହାର ବ୍ୟତିକ୍ରମ ଜୀବନରୁ ବିଚିତ୍ର ରୂପର ସନ୍ଧାନ ଦିଅନ୍ତି ସତ ମାତ୍ର ଅବାସ୍ତବ ହୋଇଥାନ୍ତି । ସୁତରାଂ କୋଣାର୍କର ଲଳିତ କଳା ଭାରତୀୟ ଜୀବନ ଦର୍ଶନ ଉପରେ ଆଧାରିତ ସମ୍ପୂର୍ଣ୍ଣର ପୂର୍ଣ୍ଣାଙ୍ଗ ଚିତ୍ର । ଏଥିରେ ସାମ୍ୟବାଦୀ ଦୃଷ୍ଟିଭଙ୍ଗୀ କ୍ଷୁବ୍ଧ ହେବାର ଅର୍ଥ କଣ ? କୌଳିକତାରୁ ମୌଳିକତାର ଉତ୍ପନ୍ନ । ଦୁହିଁଙ୍କ ଶତ୍ରୁ ଥାଉ୍ଥିଲେ ମୌଳିକତାର ଆଦର୍ଶ ପଛରେ ଷଡ଼ଯନ୍ତ୍ର ଖୋଜିହୁଏ, ମାତ୍ର କମ୍ୟୁନିଷ୍ଟର ଚରିତ୍ରସ୍ଥ୍ୟି ଗୁଣକୁ ବୁଝି ହୁଏନାହିଁ । ସାମ୍ୟବାଦୀ ବିପ୍ଳବଭୂଷିତ କବି ଧର୍ମପଦ କମ୍ୟୁନିଷ୍ଟର 'ଦେବତ୍ୱ' ସଂଗୃହି ଗୁଣକୁ ହତ୍ୟା କରିଛନ୍ତି ।(୩୯)

ସ୍ୱର୍ଗତ ରଘୁନାଥ ଦାସ କବି, ଧାରରେ ଓ ଶୃଙ୍ଖଳାରେ । ସାମ୍ୟବାଦୀ ବିପ୍ଳବ ଆଦର୍ଶ ଓ ବିଶ୍ଳେଷଣରେ ସବଂଜ ତାର ଧ୍ୱନି । ପ୍ରବଞ୍ଚନା ଓ ସାମ୍ୟବାଦୀ ଅହଂରୁ ମୁକ୍ତ । ଗଦ୍ୟ ବିଶ୍ଳେଷଣର ସୁଯୋଗରେ ଭୂଷିତ ଏକ ବିଭାଗ, ତାର ସୁଯୋଗ ଓ ଶୃଙ୍ଖଳା ବ୍ୟାପକ । ସ୍ୱର୍ଗତ ଦାସ ଅତି ନିପୁଣ ଓ ବିଚକ୍ଷଣ ଭାବରେ ସେ ରୀତିଟି ଗ୍ରହଣ କରିଛନ୍ତି । ତାଙ୍କ ଗଦ୍ୟ ଛନ୍ଦ-କବିତାର ଛନ୍ଦ ପରି ଅନ୍ତର୍ଗର୍ଭା ଶକ୍ତିର ସନ୍ଧାନ ଦିଏ । ଧୀ ଓ ଶ୍ରୀକୁ ଛୁଏ ।



୩୯ । ଧର୍ମପଦ-ଗୋପବନ୍ଧୁ, ମାମ୍ମାଦେବୀ-ନୀଳକଣ୍ଠ, କୋଣାର୍କ (ନାଟକ)-ଅଶ୍ୱିନୀ କୁମାର, କୋଣାର୍କ (କବିତା)-ସଚ୍ଚି ରାଉତରାୟ, ଲଲିପାଗୋଡାର ପ୍ରେତ- ରବି ସିଂ ।

# କଥାଶିଳ୍ପୀ ରଘୁନାଥ ଦାସ : ଏକ ଅଧ୍ୟୟନ

## ବୈଷ୍ଣବ ଚରଣ ସାମଲ

'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା, 'ଆଧୁନିକ' ପ୍ରଗତିବାଦୀ ପତ୍ରିକା ପ୍ରକାଶନ (୧୯୩୬) ଓ କଥାସାହିତ୍ୟରେ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଆବିର୍ଭାବ ପରେ ପରେ ଓଡ଼ିଆ ଗଳ୍ପ ସାହିତ୍ୟ ପରିବର୍ତ୍ତିତ ସାମାଜିକ ସମସ୍ୟା ଓ ମୂଲ୍ୟବୋଧକୁ ନେଇ ଯେଉଁ ନୂତନ ଧାରା ଗ୍ରହଣ କଲା ସେହି ଧାରାର ଜଣେ ସଫଳ ସ୍ରଷ୍ଟା ଭାବରେ ରଘୁନାଥ ଦାସ ୧୯୦୬/୪୭ ବେଳକୁ ଗଳ୍ପ ରଚନା କଲେ ଏବଂ ସ୍ୱାଧୀନତା ପରବର୍ତ୍ତୀ କେତେକ ବର୍ଷ ପର୍ଯ୍ୟନ୍ତ ସେହି ଧାରାରେ ଆପଣାର ଲେଖନୀକୁ ଉଦ୍‌ଜୀବିତ କରି ରଖିଲେ । ସେ ଜଣେ କବି । ତାଙ୍କର କବିତ୍ୱ ରୋମାଣ୍ଟିକ ଭାବବିଳାସର ପ୍ରକାଶକ ନୁହେଁ ; ରୁଦ୍ର-କଠୋର ବାସ୍ତବତାର ରୂପକାର । ପରାଧୀନତା ଓ ସ୍ୱାଧୀନତାର ସନ୍ଧିକ୍ଷଣରେ ତାଙ୍କର ସାରସ୍ୱତ ପ୍ରତିଭାର ଉନ୍ମେଷ । ଏହି ସନ୍ଧିକ୍ଷଣରେ ସ୍ରଷ୍ଟା-ମାନସକୁ ଅଭିଭୂତ କରିଛି ସ୍ୱାଧୀନତାର ସ୍ୱପ୍ନ, ଗାନ୍ଧିବାଦର ମଧୁ ଏବଂ ଅପର ପକ୍ଷରେ ତାଙ୍କର ମାନସପଟରେ ବ୍ୟଥାର ରାଗିଣୀ ତୋଳିଛି ସ୍ୱାଧୀନତାର ସ୍ୱପ୍ନଭଙ୍ଗ, ଗାନ୍ଧିବାଦର ବ୍ୟର୍ଥତା, କ୍ଷମତା ରାଜନୀତିର କାଳଚକ୍ର । ୧୯୩୯/୪୦ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ବିଶ୍ୱଯୁଦ୍ଧର କରୁଣ ଇତିବୃତ୍ତ ସ୍ରଷ୍ଟାମାନସକୁ ଯେପରି ଦୋହଲାଇ ଦେଇଛି ସେହିପରି ୧୯୪୩ ମସିହାର ଦୁର୍ଭିକ୍ଷ ଓ ୧୯୪୬/୪୭ ମସିହାର ସାମ୍ପ୍ରଦାୟିକ ସଂଘର୍ଷ ମଧ୍ୟ ତାଙ୍କର ଚିତ୍ତବୃତ୍ତିକୁ ବ୍ୟଥାପ୍ଳୁତ କରିଦେଇଛି । ଏହି ସମସ୍ତ ସୀମା ମଧ୍ୟରେ ସାଧାରଣ ଗ୍ରାମ୍ୟ ମଣିଷ ଯେପରି ନୂଆ ଦୁନିଆର ସ୍ୱପ୍ନ ଦେଖିଛି, ସ୍ୱରାଜ୍ୟର ଅମରାବତୀରେ ବିଭୋର ହୋଇଛି, ସେ କଥାକୁ ସ୍ରଷ୍ଟା ହୃଦୟଙ୍ଗମ କରିବା ସଙ୍ଗେ ସଙ୍ଗେ ସ୍ୱାଧୀନତା ଲାଭ ପରେ ପରେ ସେସବୁ ସ୍ୱପ୍ନ କିପରି ବିଲୀନ ହୋଇଯାଇଛି ଏବଂ ଫୁଟି ଉଠିଛି ଏକ ହତାଶାର ଭାବ — ଗଳ୍ପକାର ରଘୁନାଥ ତାକୁ ଯଥାର୍ଥ ଭାବରେ ଉପଲବ୍ଧି କରିଛନ୍ତି । ଯୁଦ୍ଧ ଅନେକଙ୍କୁ ଦେଇଛି ଦୁଃଖ ଓ ଯନ୍ତ୍ରଣା । କିନ୍ତୁ ମଧ୍ୟ ଯୁଦ୍ଧ ଯୋଗୁ ହୋଇଛନ୍ତି ଧନୀ ଓ ଶୋଷକ । ସ୍ୱାଧୀନତା ସଂଗ୍ରାମ ଅନେକଙ୍କୁ ନିଶ୍ଚିହ୍ନ କରିଦେଇଛି । କିନ୍ତୁ ମଧ୍ୟ ଏହି ସଂଗ୍ରାମ ଫଳରେ ହୋଇଛନ୍ତି ଧନୀ ଲୋକ । ଯେଉଁ ପ୍ରତାରଣା ଓ ଛଳନାର ବୀଜ ସ୍ୱାଧୀନତା ପୂର୍ବର ଗୋଟିଏ ଦଶନ୍ଧି ଧରି ଅଙ୍କୁରିତ ହୋଇ ଆସୁଥିଲା, ସ୍ୱାଧୀନତା ପରେ ପରେ ତାହା ଯେପରି ହୋଇଗଲା ମହାଦ୍ରୁମରେ ପରିଣତ । କଥାକାର ରଘୁନାଥ ଏ କଥାକୁ ଉପଲବ୍ଧି କରିଛନ୍ତି ଏବଂ ତାଙ୍କର ମାତ୍ର ସାତ ଆଠଟି ଗଳ୍ପ ଭିତରେ ଏ କଥାକୁ ପ୍ରକାଶ କରିଛନ୍ତି । ଗଳ୍ପ ତାଙ୍କର ସୀମିତ । ତାଙ୍କ ଗଳ୍ପରେ ବ୍ୟାପ୍ତି ନାହିଁ ; ଅଛି ଦୀପ୍ତି । ପ୍ରତ୍ୟେକଟି ଗଳ୍ପ

ସାଧାରଣ ଅବହେଳିତ ସର୍ବହରା ମଣିଷର ବେଦଗାନ । ସେଥିରେ ଅଛି ସେହି ମଣିଷର ଦୁଃଖ ଓ ଦୈନ୍ୟର ଚିତ୍ର, ବ୍ୟଥା ଓ ବେଦନାର ଚିତ୍ର, ନୈରାଶ୍ୟ ଓ ଶୋଚନୀୟତାର ଚିତ୍ର । ମାତ୍ର ସେହି ମଣିଷ ହାରି ଯାଇନାହିଁ । ବଞ୍ଚିବା ପାଇଁ ସେ ସଂଗ୍ରାମରତ । ଶୋଷଣର କାରଣକୁ ରଘୁନାଥ ଆବିଷ୍କାର କରିଛନ୍ତି । ଧର୍ମ, ଭାଗ୍ୟ, ଭଗବାନ, ପ୍ରଶାସନ ଓ ବିଚାରକୁ ଶୋଷଣର କାରଣ ଭାବରେ ଗ୍ରହଣ କରି ନେଇଛନ୍ତି । ପ୍ରତ୍ୟେକ ଗଳ୍ପ ଏହାର ସାକ୍ଷ୍ୟ ଦିଏ । ସ୍ୱାହା, ମାଶ୍ୱତ, ଯାତାପଥେ, ସ୍ୱଗତ, ସଙ୍ଗମ, ଗଛ ରୁ କାହିଁକି ମଲ୍ ଓ ସବୁଜ ବିପ୍ଳବ ଆଦି କେତୋଟି ଗଳ୍ପ ତାଙ୍କ ଗଳ୍ପ-ପ୍ରତିଭାର ନିଦର୍ଶନ ।

ସାହିତ୍ୟ ସମାଜରେ ଜୀବନବିମ୍ବ ରଚନା କରିବାରେ ଗଳ୍ପ ହେଉଛି ଉତ୍କୃଷ୍ଟତମ ଦର୍ପଣ । ଏଥିରେ ସୁନ୍ଦର ଓ ସତ୍ୟ ରୂପର ହୁଏ ପୂର୍ଣ୍ଣ ପ୍ରତିବିମ୍ବନ । ଗଳ୍ପ ହେଉଛି ଦେଶକାଳର ଜୀବନ ଭୂମି । ସକଳ ଗଳ୍ପ ତାର ନିଜ କାଳର ଜୀବନକୁ ଗ୍ରାହ୍ୟ ରୂପେ ଧାରଣ କରେ । ଗଳ୍ପ ବସ୍ତୁନିର୍ଭର ମାତ୍ର କୌଣସି ଗଳ୍ପ ବସ୍ତୁସର୍ବସ୍ୱ ନୁହେଁ । ଏହା ହେଉଛି ମଣିଷର ଅଭିଜ୍ଞତା ଓ ଆଶା କଳ୍ପନାର ବିମିଶ୍ରିତ ରଚନା । ଗଳ୍ପର ଆକାଂକ୍ଷା ମଣିଷର ମର୍ମାଗତ । ଜଗତର ଯାବତୀୟ ବିଷୟ ଗଳ୍ପ ପରିସରଭୁକ୍ତ । ଜୀବନ ଗଳ୍ପର ଅନ୍ତଃସ୍ୱର । ଏହି ଜୀବନ ବିସ୍ମୟ ଜଟିଳତାର ବିସ୍ତାର । ଅନନ୍ତ ପ୍ରସୂତ ଜୀବନ-ରୂପକୁ ଗୋଟିଏ ମୁହୂର୍ତ୍ତର ଅତଳ ଗଭୀରତାରେ ଏକାନ୍ତ କରି ବ୍ୟଞ୍ଜିତ କରେ କ୍ଷୁଦ୍ରଗଳ୍ପ । ଏଥିରେ ଥାଏ ଶିଳ୍ପୀ ବ୍ୟକ୍ତିତ୍ୱର ଘନ ନିବିଡ଼ ଅନୁଭବ ଓ ତନ୍ମୟତା । ଗୋଟିଏ ବିନ୍ଦୁରେ ଭାସ୍ୱର ହୋଇଉଠେ ଏକ ଅଖଣ୍ଡ ଓ ମୂର୍ତ୍ତ ଜୀବନର ଗ୍ରାହ୍ୟାଘନ ରୂପ । ବସ୍ତୁମୟ ଜୀବନ-ଭୂମିରେ ସ୍ରଷ୍ଟାର ବ୍ୟକ୍ତିଗତ ଉପଲବ୍ଧିର ପ୍ରତ୍ୟୟ ବ୍ୟଞ୍ଜନା ଜୀବନ ବେଦନାରେ ରୂପାନ୍ତରିତ ହୋଇ ଗଳ୍ପ ହୁଏ ପ୍ରାଣବନ୍ତ । ଜୀବନପ୍ରୀତିହିଁ ଶିଳ୍ପୀକୁ କରେ ମହିମାମୟ । କୌଣସି ଏକ ବ୍ୟକ୍ତି ବିଶେଷର ଜୀବନ ଅନୁଭବ ଠାରୁ ମଣିଷମାନଙ୍କର ସାଧାରଣ ଜୀବନ ଅନୁଭବ ଅଧିକ ଶକ୍ତିଶାଳୀ । ବାହ୍ୟ ବାସ୍ତବତା ସହିତ ଏହି ଜୀବନବୋଧ ପ୍ରତୀକାତ୍ମକ ଭାବରେ ଏକ ସାମଗ୍ରିକ ସମ୍ପର୍କର ସୀମା, ଯାହାକି ପ୍ରତ୍ୟେକ ଜୀବନ ମଧ୍ୟରେ ପ୍ରବେଶ କରେ ଏବଂ ଜ୍ଞାତ ଜଗତ ସର୍ଜନା କରେ । (୧) ଯେଉଁ ଶିଳ୍ପୀ ଏହି ସାଧାରଣ ଜୀବନକୁ ଉପଲବ୍ଧି କରେ, ତାର ଅନ୍ତର୍ନିହିତ ସଂଘର୍ଷ ଓ ସ୍ୱଚ୍ଛବୋଧକୁ ଅନୁଭବ କରେ,

1. 'The common lives of men in association far more powerful than the life experience of one individual— have summerised symbolically a whole range of transactions with outer reality, which are then accessible to each and constitute the known universe.'
(Christapher Cordwell-Illusion & Reality P. 127.)

ତାର ସମସ୍ୟା ସମ୍ପର୍କରେ ଅବହିତ ହୁଏ ସେହିହିଁ ଯଥାର୍ଥ ଜୀବନଧର୍ମୀଗଳ୍ପ ରଚନା କରିପାରେ । ଜଣେ ଶିଳ୍ପୀ ସର୍ବହରାଙ୍କ ଅବସ୍ଥାକୁ କେବଳ ରୂପାୟନ କରି ସର୍ବହରାଙ୍କ ସମସ୍ୟା ଦୂର କରି ନପାରେ । ସମାଜ-ଜୀବନରେ ଥିବା ସକଳ ଅମାନବିକ ଅବସ୍ଥାକୁ ଦର୍ଶାଇ ସଚେତନତା ସୃଷ୍ଟି କରି ପାରିଲେ ଏବଂ ସର୍ବହରାର ଦୁଃଖର କାରଣଗୁଡ଼ିକୁ କଳାତ୍ମକ ଭାବରେ ପ୍ରକାଶ କରିପାରିଲେ ଯାଇ ସମସ୍ୟାର ସମାଧାନ ହୋଇପାରେ । ସର୍ବହରା କିଏ; ଏହାହିଁ ଦର୍ଶାଇବା ଯେପରି ମୁଖ୍ୟ ପ୍ରଶ୍ନ । (୨) ଅଜ୍ଞତାହିଁ ସଇତାନ । ବହୁ ଲୋକଙ୍କର ଏହାହିଁ ହେଉଛି ତଥାପି ଦୁଃଖର କାରଣ । (୩) ଏହି ଅଜ୍ଞତାକୁ କଥାକାର ରଘୁନାଥ ତାଙ୍କର ଗଳ୍ପମାନଙ୍କରେ ରୂପାୟନ କରିବା ସଙ୍ଗେ ସଙ୍ଗେ ସର୍ବହରା ସମାଜର ଜୀବନବୋଧକୁ ପ୍ରକାଶ କରିଛନ୍ତି ।

ସ୍ୱାଧୀନତାର ପ୍ରାକ୍‌କାଳ । ବିଶ୍ୱମୁଦ୍ଧର ଘନଘଟା । ଦରଦାମର ଆଶାତୀତ ବୃଦ୍ଧି । ଖାଦ୍ୟାଭାବ । ସାଧାରଣ ମଣିଷର ଜୀବନ ବିପର୍ଯ୍ୟସ୍ତ । କୃଷି ଓ ଶ୍ରମକୁ ଜୀବିକା କରି ବଞ୍ଚିଥିବା ଲୋକ ଅସହାୟ । ଗାଁ ଗଣ୍ଡାରୁ ଲୋକେ ଦାଦନ ଶ୍ରମିକ ଭାବରେ ଚାଲିଯାଉଛନ୍ତି ଆସାମ, ବର୍ମା ଆଦି ସ୍ଥାନକୁ । ୧୯୨୦ ମସିହା ଠାରୁ ଓଡ଼ିଆ ଗଳ୍ପ ସାହିତ୍ୟରେ ଆସାମ, କାଳିମାଟି, ରେଙ୍ଗୁନ ଆଦି ସ୍ଥାନକୁ ଯାଇ ଓଡ଼ିଆ କୁଲିର ଜୀବନ କିପରି ବିପର୍ଯ୍ୟସ୍ତ ହୋଇ ପଡ଼ୁଥିଲା ତାର ଚିତ୍ର ବିଭିନ୍ନ କଥାକାରଙ୍କ ଗଳ୍ପମାନଙ୍କରେ ଦେଖିବାକୁ ମିଳେ । ରଘୁନାଥ ସେହି ପରମ୍ପରାକୁ 'ଯାତ୍ରାପଥେ' ଗଳ୍ପରେ ଗ୍ରହଣ କରିଥିଲେ ହେଁ ଏହି ଗଳ୍ପର ଭାବ ସ୍ୱତନ୍ତ୍ର । ଏକ ପକ୍ଷରେ କୁଲି ସଂଗ୍ରହକାରୀ ସର୍ଦ୍ଦାରଙ୍କ ଧମକ ଓ ପ୍ରଲୋଭନ, ଅପର ପକ୍ଷରେ କୁଲିମାନଙ୍କର ଦୁଃଖ ଓ ଦୁର୍ଦ୍ଦଶା ବାସ୍ତବିକ ଗଳ୍ପଟିକୁ ହୃଦୟସ୍ପର୍ଶୀ କରି ଦେଇଛି । ନୟାଗଡ଼ପୁରର ଗ୍ରେଟ୍ ରେଲ ଷ୍ଟେସନର ମୁସାଫିରଖାନାରେ ଲୋକ ଭିଡ଼ । ସେମାନେ ଗ୍ରେଟ୍ ଗ୍ରେଟ୍ ପୁଟୁଳିମାନ ଧରି ବସିଥାନ୍ତି ରେଳକୁ ଅପେକ୍ଷା କରି । କିଏ ଗପୁଥାଏ ବର୍ମା ଫେରନ୍ତା ଅନୁଭୂତିର କରୁଣ କାହାଣୀ । କିଏ ପୁଣି ଗାଁର ସିଦ୍ଧେଶ୍ୱର ଠାକୁରଙ୍କ ମହିମା ବର୍ଣ୍ଣନା କରୁଥାଏ । କେହି ପୁଣି ଗୀତ ବୋଲୁଥାଏ 'ହଟିଲଗୀ ହୁନ୍ଦରୀ' । କେହି କହୁଥାଏ ଧାନ କରଜ ଆଣିବା କଥା । ସେହି ଲୋକମାନଙ୍କ ଭିତରେ ଥାଏ ସନିଆ । କେତେ ସେ ଦଉଡ଼ିଥିଲା ଧାନ ମହାଜନମାନଙ୍କ ଘରକୁ କିଛି ଧାନ କରଜ ଆଣିବ ବୋଲି, ମାତ୍ର

---

2. It is the question of what the proletariat is, and what, in accordance with this being, it will historically be compelled to do.
Karl Marx & Frederich Engels 'On Literature & Art' - 1978 - P. 159.

3. Ignorance is a demon, we fear that it will yet be the cause of many a tragedy. I bid - P. 95.

ସେ କରିନ ପାରିଲା ନାହିଁ । ସିଙ୍ଗାପୁର ଜଣ୍ଡ ଦାଦନ ଶ୍ରମିକ ହୋଇ ବର୍ମାକୁ ଗ୍ଭଲିଯିବ । ଘରେ ଗ୍ଭଡ଼ିଆସିଲା ତାର ପତ୍ନୀ ଓ ପିଲଙ୍କୁ । ମୁସାଫିରଖାନାରେ ବସି ବସି ସେ ଭାବୁଥାଏ ସେମାନଙ୍କ କଥା । ସାନ୍ତ୍ୱନା ଦେଉଥାଏ ମନେ ମନେ ନିଜକୁ । କପାଳରେ ଯାହା ଅଛି ସେମାନେ ଭୋଗିବେ । ପେଟ ବିକଳରେ ସେ ଗ୍ଭଲିଆସିଛି । ଏହି ସମୟରେ ସର୍ଦ୍ଦାର କୁଲିମାନଙ୍କୁ ଗଣିଲା । 'ମୁଣ୍ଡ ଗଣା ଗ୍ଭଲିଲା । କଳା କଳା ମଣିଷ ମୁଣ୍ଡ, ଫିରିକୁଟିଆ ମଣିଷ ମୁଣ୍ଡ— ଏକ ଦୁଇ ତିନ, ... ଗ୍ଭରକୋଡ଼ି ଅଠର ... ଆଉସବୁ ଗଲେ କୁଆଡ଼େ ? ପାଞ୍ଚକୋଡ଼ି ଚଉଦ ।' (୪) ସମସ୍ତେ ପ୍ରସ୍ତୁତ ଯିବା ପାଇଁ । ଏଥିକବେଳେ ସନେଇ ପଧାନ ଦେଖିଲା ମୁସାଫିରଖାନା ବାହାର କାନ୍ଥକୁ ଲଗି ଛିଡ଼ା ହୋଇଛି ତାର ସ୍ତ୍ରୀ । ତାର ନାକ ସୂଡ଼ୁ ସୂଡ଼ୁ ଦେଖି ସନେଇର ନିସ୍ତେଜ ଆଖି ଇତସ୍ତତଃ ହୋଇଗଲା । ତାକୁ ମନେହେଲା 'କାନ୍ଥଗୁଡ଼ାକ ଦୋହଲିଲା, ଓସ୍ତଚଛଟା ଆହୁରି ଆକାଶିଆ ହୋଇଗଲା, ଚଟାଣଟା ପାତାଳକୁ ପଶିଗଲା ।' ସନେଇର ସ୍ତ୍ରୀ ସେହିପରି କାନ୍ଦୁଥାଏ । ତା ପାଖରେ ଛିଡ଼ା ହୋଇ ଲୁହ ଛଳ ଛଳ ଆଖିରେ ଝିଅଟି ସନେଇକୁ ଡାକ ପକେଇଲା 'ବାପା' । ସନେଇର ହୃଦୟଭେଦୀ 'ଦୀର୍ଘଶ୍ୱାସ ନିର୍ଗତ ହେଲା । ସ୍ତ୍ରୀର କେବଳ ନୟନରେ ଅବାରିତ ଅଶ୍ରୁ । ଝିଅର ଅଶ୍ରୁମିଶ୍ରିତ ପ୍ରଶ୍ନ 'ବାପା ତୁମେ କୁଆଡ଼େ ଯାଉଛ ?' ଲୁହ ଆଉ କାନ୍ଦ । କ୍ଷଣକ ପାଇଁ ଯେମିତି ସେମାନଙ୍କୁ ଏକାକାର କରିଦେଲା । ସ୍ତ୍ରୀ ଆଉ ଭୁଆସୁଣୀ ଝିଅକୁ ଗ୍ଭଡ଼ି ସନେଇ ଗ୍ଭଲିଯାଉଛି ବର୍ମାକୁ । ମୂଳ କାଳରେ ସେ ତାର ଝିଅକୁ ବାହା ଦେଇ ପାରିଲା ନାହିଁ । ଗଭୀର କ୍ଷୋଭରେ ସନେଇ ଘରୁ ଲୁଚି କରି ଗ୍ଭଲି ଆସିଥିଲା । ସ୍ତ୍ରୀ କାନ୍ଦି କାନ୍ଦି ମୁଣ୍ଡ ପିଟି ଦେଇଛି । ମୁଣ୍ଡରୁ ବହୁଛି ରକ୍ତ । ଟ୍ରେନ୍ ପହଞ୍ଚିଲା ଷ୍ଟେସନରେ । ସ୍ତ୍ରୀ କହିଲା — 'ଆମେ ଚଳିବୁ କେମିତି ? ମାଇପି ଲୋକ— ।' ଝିଅ କେବଳ କହିଲା – 'ବାପା – ବାପା ।' ସନେଇ କିଛି କହି ପାରିଲାନାହିଁ । ସର୍ଦ୍ଦାରର ଧମକ । ସନେଇ ଗ୍ଭଲିଲା ସର୍ଦ୍ଦାରର ପଛେ ପଛେ । 'ପଛରେ ତାର କାନ୍ଦ, ଆଗରେ ତାର ଲୁହ, ପଛରେ ତାର ଚିତ୍କାର । ଫେରି ଗ୍ଭହିଁବାକୁ ତାର ଗ୍ଭଡ଼ି ଆଉ ପଡ଼େଇଲା ନାହିଁ ।' (୫) ଗାଡ଼ି ଗ୍ଭଲିଲା । ସ୍ତ୍ରୀ ଆଉ କନ୍ୟା ଅଧା ଲଙ୍ଗଳା ହୋଇ ଧାଇଁଛନ୍ତି । କେବଳ ଲୁହ ଆଉ କାନ୍ଦ । ସେଇ ସ୍ତ୍ରୀଲୋକ ଦୁଇଟିକୁ ଅନେଇଲେ ଗାଡ଼ି ଭିତରୁ ଡ୍ରାଇଭର, ଫାୟାରମ୍ୟାନ, ସାହେବ ଦୁଇଟା, ପାଇଜାମା ପିନ୍ଧା ଟୋକା । ଦଶ ବାରଟା ହାତ ସେମାନଙ୍କୁ ଗାଡ଼ି ଭିତରୁ ଯେମିତି ଡାକିଲେ । ପାନ ବିକି ହାଟରୁ ଫେରୁଥିବା ଅସରଫ୍ ମିଆଁ ପହଞ୍ଚିଗଲା ସେମାନଙ୍କ ନିକଟରେ ଏବଂ କହିଲା— 'କି ଲୋ ମୋ ସାଥିରେ ଯିବୁ, ଆଗ୍ଭ ଥାନରେ ରଖେଇ ଦେବ — ଖାଇବୁ, ପିଇବୁ, ଦିଲ୍ ସେ ରହିବୁ, କିଛି ତକଲିବ ନାହିଁ । ଆ ଯିବୁ ଯଦି ; ତୁ ଏକଲା ଆ ।' ସମାଜର ଥିଲାବାଲାମାନେ ସର୍ବହରାର ଦୁଃଖ କଣ ବୁଝନ୍ତି ? ସୁବିଧାଭୋଗୀ ଥିଲାବାଲାମାନେହିଁ ସର୍ବହରାଙ୍କ ଦୁଃଖର କାରଣ ।

୪ । ଯାତ୍ରା ପଥେ । ୫ । ଅଦୈବ ।

ଆର୍ଥିକ ଗତିକ ବୈଷମ୍ୟ ଯୋଗୁ କେହି କେହି ଧନୀ, କେହି ହୋଇଛି ନିର୍ଦ୍ଧନ । କେତେ ମଣିଷମାନଙ୍କୁ ପଶୁ ପରି ଦାଦନ ଶ୍ରମିକ ଭାବରେ ଶୋଷଣ କରି ଧନର ଅଧିକାରୀ ହେଉଛି । କେତେ ଚକ୍ର ବୃତ୍ତାନ୍ତ ପରିଶ୍ରମ କରି ମଧ୍ୟ ପେଟକୁ ମୁଠାଏ ପାଉନାହିଁ । ଅର୍ଥ ନୀତିହିଁ ମଣିଷକୁ ପରିବାର ବାନ୍ଧିବା ପାଇଁ ପ୍ରେରଣା ଦିଏ । ସ୍ୱାମୀ, ସ୍ତ୍ରୀ, ପୁଅ, କନ୍ୟା ମଧ୍ୟରେ ମମତା ସୃଷ୍ଟି କରେ । ସେହି ଅର୍ଥନୀତି ପୁଣି ସ୍ୱାମୀଠାରୁ ସ୍ତ୍ରୀକୁ, ବାପାଠାରୁ କନ୍ୟାକୁ ଅଲଗା କରିଦିଏ । କାନ୍ଦ ଆଉ ଲୁହ କେବଳ ସାର ହୁଏ । ଅସହାୟା ନାରୀ ପ୍ରତି ସୁବିଧାଭୋଗୀ ମଣିଷମାନଙ୍କର ଲୋଲୁପ ଦୃଷ୍ଟି ଲମ୍ବି ଆସେ । ଯୁଦ୍ଧ ପରିପ୍ରେକ୍ଷୀରେ ଓଡ଼ିଶାର ସାମାଜିକ ଜୀବନରେ ଦାରିଦ୍ର୍ୟର ଯେଉଁ ବିକଟ ରୂପ ପ୍ରକାଶ ପାଇଥିଲା ତାହାକୁ କଥାକାର ଉକ୍ତ ଗଳ୍ପରେ ରୂପାୟନ କରିବା ସଙ୍ଗେ ସଙ୍ଗେ ସାମାଜିକ ବାସ୍ତବତାର ନଗ୍ନ ରୂପକୁ ଦେଖାଇ ଅଛନ୍ତି ।

'ସ୍ୱରାଜ' ଗଳ୍ପରେ ଅଛି ସ୍ୱାଧୀନତା ଆନ୍ଦୋଳନ, ସ୍ୱରାଜର ମଧୁମୟ ସ୍ୱପ୍ନ, ଗାନ୍ଧି ମୁକ୍ତିର ସୁନେଲି କଳ୍ପନା; ଯୁଦ୍ଧଜନିତ ହତାଶା ଓ ଉତ୍କଟ ଦରବୃଦ୍ଧି, ହିନ୍ଦୁ ମୁସଲମାନ ସଂଘର୍ଷ ଓ ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନଭଙ୍ଗ । ଏହାରି ମଧ୍ୟରେ ଅଛି ସର୍ବହରା ମଣିଷର ଆଶାର ନୂତନ ସଙ୍କେତ । ବିକଳ ମିଶ୍ର ଗାଁର ଜଣେ ଜଣାଶୁଣା ପାଠୁଆ ଲୋକ । ଖବର କାଗଜ ପଢ଼ି ଗାଁ ଲୋକଙ୍କୁ ସେ ଶୁଣାଏ ନାନା ସମ୍ବାଦ । କଂଗ୍ରେସର ଆନ୍ଦୋଳନ ସମ୍ପର୍କରେ ଚର୍ଚ୍ଚା ଚାଲେ । ଯୁଦ୍ଧ ପରିପ୍ରେକ୍ଷୀରେ ଚୁଷିଆ ବାହାର କରିଥିବା ବୋମା କଥା ଶୁଣି ସରଳ ଗାଁ ଲୋକେ ଆତଙ୍କିତ ହୋଇ ଉଠନ୍ତି । ସେମାନେ ପୁଣି ପ୍ରଶ୍ନ କରନ୍ତି ମିଶ୍ରଙ୍କୁ—"ସାଆନ୍ତେ, ଗାନ୍ଧି ରଜା ହେବକି ? କଂଗ୍ରେସ କଣ କରୁଚ ? ଗାନ୍ଧିଲୋକ ସରକାରକୁ ସତେ କଣହଟେଇ ଦେବେ ? (୬) ସାଧାରଣ ଲୋକେ ସ୍ୱାଧୀନତା କହିଲେ ଗାନ୍ଧି ମୁକ୍ତିକୁ ବୁଝନ୍ତି । ସେମାନେ କହନ୍ତି ଦେଶରେ ସ୍ୱରାଜ ହେବ । ସବୁ ପଦାର୍ଥ ଶସ୍ତା ହୋଇଯିବ । ସମସ୍ତେ ସୁଖ ଶାନ୍ତିରେ ରହିବେ । କୃଷକକୁ ଥିଉ କର ଦେବାକୁ ପଡ଼ିବ ନାହିଁ । ଜମିଦାର ଆଉ ନାଲିସ୍ କରି ଘର ଦ୍ୱାର ଜମିବାଡ଼ି ନେଇଯିବ ନାହିଁ । ସମସ୍ତେ ଦୁଇଓଳି ମୁଠାଏ ଖାଇବାକୁ ପାଇବେ । ଗ୍ରାମବାସୀଙ୍କ କଳ୍ପନାରେ ଗାନ୍ଧି ମୁକ୍ତିହିଁ ସ୍ୱର୍ଗ । ଅଥଚ ଗାନ୍ଧି ମୁକ୍ତି ଆସେ ନାହିଁ । ପ୍ରଜାଙ୍କ ଉପରେ ସରକାରଙ୍କର ଅତ୍ୟାଚାର ବଢ଼ିଚାଲେ । ଜମିଦାରର ଶୋଷଣ କମେ ନାହିଁ । ଲୋକଙ୍କ ଭିତରେ ନୈରାଶ୍ୟ ଆସେ । ବିଶ୍ୱଯୁଦ୍ଧର ବିଭୀଷିକା ସୃଷ୍ଟି ହୁଏ । ଦରଦାମ ହୁ ହୁ ହୋଇ ବଢ଼ିଯାଏ । ଗାନ୍ଧି ମୁକ୍ତି ହେବା ଯେମିତି ହୋଇଯାଏ ସ୍ୱପ୍ନ । ଲୋକମାନଙ୍କର ସକଳ ଆଶା ଆଶଙ୍କାରେ ପୂର୍ଣ୍ଣଚ୍ଛେଦ ଟାଣି ଯୁଦ୍ଧ ଶେଷ ହେଲା । ଇଂରେଜ ସରକାର କଂଗ୍ରେସ ହାତରେ ଶାସନ ଭାର ଦେଇ ବିଦାୟ ନେଇଗଲେ । ତଥାପି ଲୋକମାନଙ୍କ ପ୍ରଶ୍ନ— 'ସ୍ୱାଧୀନତା ଆଉ କେତେ ବାଟ ? କେବେ ?' କେବେ ସ୍ୱାଧୀନତାର ସ୍ୱର୍ଣ୍ଣମୃଗ

୬ । ସ୍ୱରାଜ

ଧରାପଡ଼ିବ ? ଏହି ସ୍ୱାଧୀନତା ଖାଲି ରାଜନୀତିକ ସ୍ୱାଧୀନତା ନୁହେଁ ; ଏହା ହେଉଛି ପ୍ରକୃତ ମଣିଷର ସ୍ୱାଧୀନତା, ଶୋଷଣରୁ ମୁକ୍ତି । ମାତ୍ର ସେହି ସ୍ୱାଧୀନତା କାହିଁ ? ଇଂରେଜମାନେ କ୍ଷମତାରୁ ଗଲେ । କଂଗ୍ରେସ କ୍ଷମତା ଅଧିକାର କଲା । ଚାଲି ଯେଉଁ ନୂଆଣିଆକୁ ସେହି ନୂଆଣିଆ । ପେଟରେ ଯେଉଁ ଭୋକକୁ ସେହି ଭୋକ ।

ଗାନ୍ଧିମୂଲକ ହୋଇଯିବା ସମ୍ବାଦରେ ଗାଁର ସାଧାରଣ ସରଳ ମଣିଷ କେତେ ସ୍ୱପ୍ନ ଦେଖିଲା । କିଏ ଭାବୁଥିଲା ବନ୍ଧା ପକାଇଥିବା ନୋଥ ପଟ୍ଟା ସହଜରେ ପାଇଯିବ । କେହି ଭାବୁଥିଲା ଏଥର ପର୍ବକୁ ଯେଉଁ ଲୁଗା କିଣିବ ସେଥିରେ ଆଉ ଟଙ୍କାକେ ଦସ୍ତୁକା କଳା ପୋଟେଇ ଦେବାକୁ ହେବନାହିଁ । କେହି ଭାବୁଥିଲା ତାର ଦାଣ୍ଡଘରକୁ ମରାମତି କରି ପୁଣି ଛିଡ଼ା କରିବ । ଅନ୍ୟ କେହି ଭାବୁଥିଲା ଜମିଦାର ଆଉ ତାକୁ ତା' ଡିହରୁ ଉଠେଇ ଦେଇ ପାରିବ ନାହିଁ । ମିଶ୍ରଙ୍କ ଠାରୁ ଖବରକାଗଜରେ ଛପା ହୋଇଥିବା ସମ୍ବାଦ ଶୁଣି ଗାଁ ଲୋକେ ନାନା ଚିନ୍ତା କରୁଥିଲା ବେଳେ କଲିକତାରୁ ମୁକୁନ୍ଦା ଆଉ କମା ଅସହାୟ ଭାବରେ କୌଣସିମତେ ପ୍ରାଣ ବଞ୍ଚାଇ ଚାଲିଆସି ସେଠାରେ ପହଞ୍ଚିଲେ । ସେମାନେ ବର୍ଣ୍ଣନା କଲେ କଲିକତାରେ ହିନ୍ଦୁ ମୁସଲମାନ ଦୁଇ ସମ୍ପ୍ରଦାୟ ମଧ୍ୟରେ ଲାଗିଥିବା ସଂଘର୍ଷ ସମ୍ପର୍କରେ । ସେମାନଙ୍କ ଠାରୁ ପଠାଣି ବୋଉ ଶୁଣିଲା ତା' ପୁଅ ଆଉ ଜୀବନରେ ନାହିଁ । ଏକଥା ଶୁଣି ସେ ମିଶ୍ରଙ୍କ ଘରର ପାହାଚ ଉପରେ ଠୁ ଠୁ କରି ମୁଣ୍ଡ ପିଟିଦେଲା । ସ୍ୱାଧୀନତାର ସ୍ୱର୍ଣ୍ଣ ଉଷା ହେଲା ରକ୍ତରଞ୍ଜିତ । ସିଏ ରାଜା ହେଉ ପଛେ ସାଧାରଣ ମଣିଷର ଦୁଃଖ ଗଲାନାହିଁ । ହଳବଳଦ ନେଇ ବିଲକୁ ଯାଉ ଯାଉ ନବ ଉଦିଆକୁ ଡାକି କହିଲା— 'ସମସ୍ତେ ଏକାଠାରେ ଭାଇ । ଇଏ ବାଘ ହେଲେ ସିଏ ଭାଲୁ । ଆମ ଏ ମଲାମୁଣ୍ଡିଆ ପ୍ରଜାଙ୍କ ମୁଣ୍ଡ ଚୋବେଇବାକୁ ସମସ୍ତେ ଆଗ । ରାଜ୍ୟ ଆଉ କେବେ ସୁଧୁରି ପଡ଼ିଲା ନାହିଁ' । (୭) ଉଦିଆ ପ୍ରଶ୍ନ କରିଛି— 'ରାଜ୍ୟ ସୁଧୁରି ପଡ଼ିବ କେବେ ?' ଏ ପ୍ରଶ୍ନର ଉତ୍ତରରେ ଘନିଆ କହୁଛି— 'କେବେ ଉଦିଆ ଭାଇ ରାଜା ହେବ ।' ଉଦିଆ ଏକଥା ଶୁଣି ମୁହୂର୍ତ୍ତିକ ପାଇଁ ଛିଡ଼ା ହୋଇଗଲା । ମୁଣ୍ଡଟେକି ଘନିଆକୁ ଅନେଇ କହିଲା— 'ସତ କହିଲୁ ଭାଇ, ଯେବେ ଉଦିଆ ରଜା ହେବ ତେବେ । ଏ ଅଂରେଜ ନୁହେଁ କି କଙ୍ଗରସ ନୁହେଁ । ଉଦିଆ ଏକା ବୁଝେ ଉଦିଆ ଦୁଃଖ, ଘନିଆ ଦୁଃଖ, ନବାର ଦୁଃଖ, ଏ ହଜାର ଲୋକଙ୍କ ଦୁଃଖ । ଆଉ କେହି ନାହିଁରେ— ଅଁଉ ସବୁ ମିଛ ।' (୮) ଉଦିଆ ହଳବଳଦ ନେଇ ଚାଲିଯାଇଛି ବିଲକୁ । ଘନିଆ କିନ୍ତୁ ମନେ ମନେ ଭାବିଲା— 'ଉଦିଆ ତ କମ କଥା କହୁନାହିଁ !' (୯) ଗ୍ରାମର ସରଳ ସାଧାରଣ ମଣିଷ ଗାନ୍ଧି ମୂଲକର ଯେଉଁ ଅନାଗତ ସ୍ୱପ୍ନ କଳ୍ପନା କରୁଥିଲା ତାହା ଭାଙ୍ଗିଗଲା । କ୍ଷମତା ରାଜନୀତିର ସଂଘର୍ଷ ଭିତରେ ସାଧାରଣ ମଣିଷ ହେଲା ଅବହେଳିତ । ହୀନଦରିଦ୍ର ମଣିଷ ଯେଉଁ ତିମିରେକୁ ସେହି ତିମିରେ ରହିଲେ । ଯେଉଁମାନେ ଶାସନଗାଦିକୁ ଗଲେ

୭ । ସ୍ୱରାଜ

୮ । ସ୍ୱରାଜ

୯ । ସ୍ୱରାଜ

ସେମାନେ ଧନୀ ଓ ସୁବିଧାଭୋଗୀ ମଣିଷ । ସେମାନେ ଉପଭୋଗୀ ଗୋଷ୍ଠୀ । ସେମାନେ ସର୍ବହରାର ଦୁଃଖ ବୁଝିବେ କିପରି ? ସର୍ବହରା ବୁଝେ ସର୍ବହରାର ଦୁଃଖ । ତେଣୁ ଦରକାର ସର୍ବହରାର ଶାସନ । ସର୍ବହରାର ଏକନାୟକତ୍ୱ ହିଁ ପ୍ରତିଷ୍ଠା କରିବ ସମାଜବାଦ । ସେତେବେଳେ ଯାଇଁ ସମାଜରୁ ଦୁଃଖ ଓ ଶୋଷଣ ଲୋପ ପାଇବ । ଶ୍ରେଣୀ ଲୋପପାଇ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ଲାଭ କରିବ । ଯେତେବେଳେ ଶୋଷଣର କାରଣ ଜଣାପଡ଼ିବ ସେତେବେଳେ ଯାଇ ଶ୍ରେଣୀ ଘୃଣା ଓ ଦୁଃଖର ଅବସାନ ଘଟିବ । 'ଏହା ଶାନ୍ତିପୂର୍ଣ୍ଣ ଭାବରେ ହେବନାହିଁ । ଯେଉଁ ଅବସ୍ଥାରେ ମୁଷ୍ଟିମେୟ ଉପଭୋଗୀ ଗୋଷ୍ଠୀର ସୁଖ ସନ୍ତୋଷ ଚେପିତ ହୋଇଥାଏ ଓ ସେହି ଶ୍ରେଣୀ ଦ୍ୱାରା ସମାଜର ବିପୁଳଭାଗ ବିରୋଧର ସମ୍ମୁଖୀନ ହୁଅନ୍ତି, ସେହି ଅବସ୍ଥାକୁ ଧ୍ୱଂସ କରିଦେବାକୁ ବୃହତ୍ତମ ଗୋଷ୍ଠୀ ଚାହେଁ ଏବଂ ଏଥିପାଇଁ ହିଂସାତ୍ମକପନ୍ଥା ଗ୍ରହଣ କରିବାକୁ ମଧ୍ୟ ସେ ପ୍ରସ୍ତୁତ ହୋଇଯାଏ ।(୧୦) କଥାକାର ରଘୁନାଥ ଦାସ 'ସ୍ୱରାଜ' ଗଳ୍ପରେ ଏହି ପ୍ରସଙ୍ଗକୁ ସାଙ୍କେତିକ ଭାବରେ ବ୍ୟକ୍ତ କରି ଅଛନ୍ତି । ମଣିଷର ଯଥାର୍ଥ ସ୍ୱାଧୀନତା ପାଇଁ ବାରମ୍ବାର ସର୍ବହରା ମଣିଷ ମୁହଁରେ ପ୍ରଶ୍ନ କରିଛନ୍ତି ।

'ଯାତ୍ରାପଥେ' ଗଳ୍ପରେ ସର୍ବହରା ମଣିଷର ପ୍ରଶ୍ନ— 'ଆମେ ବଞ୍ଚିବୁ କିପରି ?' ସେଠି ଅଛି ଉଦରର କ୍ଷୁଧା । ସେହି କ୍ଷୁଧା ନିକଟରେ ପ୍ରେମ ଓ ମମତା ଯେପରି ମିଳେଇ ଯାଇଛି ମହାକାରୁଣ୍ୟ ଭିତରେ । ଉପଭୋଗୀ ଗୋଷ୍ଠୀର ଅଛି ହୃଦୟ ଅର୍ଥତୃଷ୍ଣା, ବିଳାସବୋଧ ଓ ନାରୀମାଂସ ଲୋଭ । 'ସ୍ୱରାଜ' ଗଳ୍ପରେ ପ୍ରଶ୍ନ— ରାଜ୍ୟ କେବେ ସୃଷ୍ଟି ପଡ଼ିବ ? ଶାନ୍ତିମୂଳକ କେବେ ଆସିବ ? ସ୍ୱାଧୀନତା କେବେ ମିଳିବ ? ଏହି ସ୍ୱାଧୀନତା ରାଜନୈତିକ ସ୍ୱାଧୀନତା ନୁହେଁ, କ୍ଷମତା ହସ୍ତାନ୍ତର ନୁହେଁ, ମଣିଷର ସ୍ୱାଧୀନତା, ଆର୍ଥନୀତିକ ଶୋଷଣରୁ ସ୍ୱାଧୀନତା । ଏ ପ୍ରଶ୍ନର ଉତ୍ତର ମିଳିଛି— ସର୍ବହରା ମଣିଷର ଶାସନ ଅଧିକାର ଓ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ଦ୍ୱାରା ପ୍ରକୃତ ସ୍ୱାଧୀନତା ମିଳି ପାରିବ । 'ସଙ୍ଗମ' ଗଳ୍ପରେ କଥାକାର କିନ୍ତୁ ଦେଖାଇଛନ୍ତି ରୋମାଣ୍ଟିକ ଭାବବିଳାସ ଉଦ୍ଭୂତ ସମସ୍ୟା-ଜର୍ଜ୍ଜର ଜୀବନର ଚରମଙ୍କର୍ଷ । ଉପଭୋଗୀ ଗୋଷ୍ଠୀ କହେ— 'କଳ୍ପନାତ ସାହିତ୍ୟର ପ୍ରାଣ । ଦୁନିଆର ନଈ, ନାଳ, ପଥର, ପାହାଡ଼, ଉଚ୍ଚା, ନୀଚା, ସବୁ

10. 'It does not end peacefully, for the majority find themselves opposed by the class whose happiness is rooted in just those conditions the majority wish to end, and who are therefore prepared to defend those conditions with violence'

(Christapher Cordwell – Illusion & Reality. P, 231)

ଉପରେ କଳ୍ପନାର ତୂଳି ବୋଳି ଯଦି ନନ୍ଦନରେ ପରିଣତ କରି ଦିଆଯାଇ ପାରିବ, ଯଦି ମଣିଷ ତାର ସବୁ ଦୁଃଖ, ଦୈନ୍ୟ ଭୁଲି ମୁହୂର୍ତ୍ତିକ ପାଇଁ ଉର୍ବଶୀର ନୃତ୍ୟ ବିଳାସର ସନ୍ଧାନ ପାଇ ପାରିବ ଆପଣାର ହୃଦୟ ତଳେ, ସେଇଠି ହିଁ ସାହିତ୍ୟ ଧନ୍ୟ । ସେଇଠି ସାହିତ୍ୟିକ ଲଭେ କରେ ମହତ୍ତ୍ୱ । ସାହିତ୍ୟିକର କାମ ହେଲା ସ୍ୱପ୍ନର ମଦିରା ଦେଇ ସମସ୍ତଙ୍କୁ ଅସ୍ଥିର ବନାଇବା, ଦୁନିଆକୁ ରଙ୍ଗୀନ କରିବା, ମଣିଷକୁ ସମାଜର ବନ୍ଧନ, ରଜାର ଉତ୍ପୀଡ଼ନ, ଧନର ଦାସତ୍ୱ, ଅଭାବର ନିର୍ଯାତନାରୁ ମୁକ୍ତ କରି କଳ୍ପନାପୁରୀକୁ ଘେନିଯିବା, ଧରଣୀର ସବୁ ବାଧାବନ୍ଧ ଉପରକୁ ତୋଳିବା ।' (୧୧) ଉପଭୋଗୀ ମଣିଷ ସାହିତ୍ୟକୁ ଏହିପରି ଦେଖେ । ଏପରି ସାହିତ୍ୟ ବୁର୍ଜୁୟା ବିଳାସର ସାହିତ୍ୟ । ତରୁଣ ତରୁଣୀଙ୍କ ମନୋରମ ପ୍ରେମ-କାହାଣୀ ରଚନା କରି ବିନୋଦ ଆପଣାର ବିଳାସୀ ବନ୍ଧୁମାନଙ୍କ ନିକଟରେ ପ୍ରଶଂସିତ ହୋଇଛି । ଅଥଚ ଅନ୍ୟତମ ବନ୍ଧୁ ସଚି ସେହି ଗଳ୍ପକୁ ଅଥବା ଗଳ୍ପର ରଚୟିତା ବିନୋଦକୁ ପ୍ରଶଂସା କରେନାହିଁ । କାରଣ ସେ ଜାଣେ ଏ ସବୁ ଗଳ୍ପ ସାହିତ୍ୟିକ ମଜଲିସ । ଏହାର କୌଣସି ସାମାଜିକ ମୂଲ୍ୟ ନାହିଁ । ସଚି ଅନ୍ୟ ବନ୍ଧୁମାନଙ୍କ ପରି ସ୍ୱପ୍ନାଭିଳାଷୀ ନୁହେଁ । ସେ ବାସ୍ତବତା ମଧ୍ୟରେ ବଞ୍ଚେ । ସର୍ବହରା ମଣିଷମାନଙ୍କର ଦୁଃଖ-ଶୋକ-ସଂଘର୍ଷ ଭିତରେ ସେ ଜୀବନ କଟାଏ । ସେ ବନ୍ଧୁମାନଙ୍କୁ ଶୁଣାଇଛି ଆଉ ଏକ ପ୍ରେମ କାହାଣୀ । ସେଇ ପ୍ରେମ ବିଳାସୀ ଜୀବନର ପ୍ରେମ ନୁହେଁ, ବୁର୍ଜୁୟାମାନଙ୍କର ଉପଭୋଗ ତୃଷ୍ଣା ନୁହେଁ; ତାହା ସର୍ବହରାର ପ୍ରେମ, ରକ୍ତ ସହିତ ରକ୍ତର, ହାଡ଼ ସହିତ ହାଡ଼ର ପ୍ରେମ । ଯେଉଁ ନର୍ମଦାର ତଟରେ ବିନୋଦ ରୋମାଣ୍ଟିକ ଗଳ୍ପର କଂକାଳ ତୋଳିଥିଲା ସେହି ନର୍ମଦାର ଭିତ୍ତିଭୂମି ଉପରେ ସଚି କହିଲା ତାର ବାସ୍ତବଧର୍ମୀ ଗଳ୍ପ । ତାର ଗଳ୍ପର ନାୟିକ ମାଲୁଣୀ । ସେ ଫେରୁଥାଏ ହାତରେ ଝୁଲୁଥାଏ ଭୋଜିଭାତ ଧରି । ମନରେ ତାର ଆନନ୍ଦ । ଆନନ୍ଦିତ ମଧ୍ୟ ଅନ୍ୟାନ୍ୟ ଭିକାରୀ ଦଳ । ହୀରାଲାଲର ବାହାଘର ଭୋଜିରୁ ଯାହା କିଛି ସେମାନେ ପାଇଥିଲେ ସେଇଥିକୁ ନେଇ ସେମାନେ ଫେରୁଥାନ୍ତି । ହୀରାଲାଲ ବି ଦିନେ ଥିଲା ସେହିମାନଙ୍କ ପରି । ଯୁଦ୍ଧ ବଜାରରେ ବ୍ୟବସାୟ କରି ବେଶ କିଛି ଅର୍ଥ ରୋଜଗାର କରି ଏବେ ବଡ଼-ଲୋକ ହୋଇଛି । ରେଶନ ବଜାର କରି ବହୁ ସମ୍ପତ୍ତି କମେଇଛି । ରାଜକୁମାରୀକୁ ବିବାହ କରୁଛି ଅର୍ଥ ଜୋରରେ । ଏହି ବିବାହରେ ପ୍ରେମ ଓ ପ୍ରଣୟ ନାହିଁ ; ଅଛି ଧନର ଜୁଆ-ଖେଳ । ହୀରାଲାଲର ବିବାହରେ କେବଳ ଏହି କଥା ନୁହେଁ ; ବୁର୍ଜୁଆ ସମାଜରେ ଏହି ଏକା କଥା । ସଚିର ଏତାଦୃଶ କଥାରେ ବିନୋଦ ଓ ଅନ୍ୟବନ୍ଧୁମାନେ ମର୍ମାହତ ହୋଇଛନ୍ତି । ସଚିକୁ ସେମାନେ ମାଛି ସହିତ ତୁଳନା କରି ଅଛନ୍ତି । ସଚି କିନ୍ତୁ କହୁଛି — 'ଯଦି ଦେହ ମୁଣ୍ଡ ଘା' ଆଉ ପୂଜରେ ଭରି ଭରି ହୋଇଥାଏ, ତେବେ ତନୁର ଲାବଣ୍ୟ ବର୍ଣ୍ଣନା କରିବା ଭଣ୍ଡାମି ଛଡ଼ା ଆଉ କ'ଣ ? ମାଛି ବସିଲେ ସେ ଦୋଷ ମାଛିର ନୁହେଁ, ଆପଣାର ଦୂଷିତ ରକ୍ତର । ମାଛିକୁ ଦୂରରେ ରଖିବାର ଉପାୟ ତାକୁ ବ୍ୟଙ୍ଗ

---

୧୧ । ସଙ୍ଗମ ।

ଉପବାସ ବା ବାରଣ ନୁହେଁ ; ନିଜର ଦେହକୁ ସୁସ୍ଥ ରଖିବାରେ ।' (୧୨) ସଛିର ତୀବ୍ର ବାକ୍ୟବାଣରେ ବନ୍ଧୁମାନେ ନୀରବ ହୋଇ ଯାଇଛନ୍ତି । ଏଥର ସଛି ତାର ଗଳ୍ପ ବର୍ଣ୍ଣନା କରି ଚାଲିଛି । ସର୍ବହରା ଭିକ୍ଷୁକ ଦଳ ହୀରାଲାଲର ବିବାହ ଉତ୍ସବକୁ ନିମନ୍ତ୍ରିତ ହୋଇ ଯାଇ ନଥିଲେ । ସେମାନେ ଯାଇଥିଲେ ଆପେ ଆପେ ଅଇଁଠା ପତରରୁ କିଛି ଖାଦ୍ୟ ସଂଗ୍ରହ କରି ଆଣିବା ପାଇଁ । ଫେରିଲା ବେଳେ ସେମାନଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଛି । ସେତେବେଳକୁ ଗଭୀର ନିଶୀଥ । କାର୍ତ୍ତିକ ଜହ୍ନର ନଗ୍ନ ଜ୍ୟୋତ୍ସ୍ନା ବିଛୁରିତ । ମାଳୁଣିଆ ପହଞ୍ଚିଲା ଓସ୍ତଗଛ ମୂଳେ । ସେଠି ତାର ସ୍ତ୍ରୀ ସୁଲି ବସି ରହିଥାଏ । ସେ ମଧ୍ୟ ଯାଇଥିଲା ଅଇଁଠା ପତରରୁ ଖାଦ୍ୟ ସାଉଁଟିବା ପାଇଁ । ସେ ଉଜୁଡ଼ା ହାଣ୍ଡି ଭିତରୁ ଖଣ୍ଡେ ନୂଆ ଲୁଗା ଆଣି ମାଳୁଣିଆ ହାତକୁ ବଢ଼ାଇ ଦେଇ କହିଲା— 'ଜାଣିଲ, ନୂଆ ଲୁଗା ଖଣ୍ଡେ ନେଖା, ସାବନ ମୁଣ୍ଡାଏ, ବନ୍ଧୁସଥିଲ ମାଇକିନିଆ ଦେଖି । କଣ୍ଠ — ଝିଆପିଆ ସକାଳ ବେଳକୁ ଆସିବ । ବାହନା ତେଲ ନଗେଇବ, ଖାଇବ ପିଇବ, ଅଣାଏ ନେଖା ପଇସା । ଛନ ଛନ ଥର ଡାଗିଦା, ମାଲେ । ନଇଁପଡ଼ା ମାଉସୀର ଦାଅର ତା ଘରେ ରହିବ ମ, ନଚେତ କଣ ଚଳିବ କି ? ମତେ କହୁଚ ଫେରନାଁ, 'ନେସେଡ଼ ଗଲଣି ।' (୧୩) ସୁଲି ଦରିଦ୍ର । ସେ ଅସହାୟ, ପେଟ ପାଇଁ ସେ ଚୋର, ବାଉ ବିକଳ । ପୁଅ ମୃଣ୍ଡ ଖାଇଲ । ଝିଅକୁ ସାରୁ ବାଇଗଣ ପରି ମାଛ ସାତ ପୁଉକାକୁ ବିକିଲ । ଦେହ ବିକିବାକୁ ତାର ମନ ହେଲାନାହିଁ । ଦାରିଦ୍ର୍ୟ ଭିତରେ ତାର ନାରୀତ୍ୱର ସ୍ୱାଭିମାନ ଫୁଟି ଉଠିଲା । ଅତୀତ ଷତର ଦାଗଭଳି ମାଟି ଉପରେ ଚନ୍ଦ୍ରର ଅସନାତ୍ର ଦୀର୍ଘ ଗ୍ରୁଲ ଲେଟି ପଡ଼ିଛି । ଓସ୍ତଗଛକୁ ଆଉଜି ମାଳୁଣିଆ ବସିଥାଏ । 'ମେଞ୍ଚାଏ ଆଲୁଅ ନଅଙ୍କିଆ ମରମର କୁକୁର ଭଳି ପଡ଼ିରହିଛି ସେମାନଙ୍କ ଗୋଡ଼ମୂଳେ ଟିକିଏ ଦୂରରେ ।' (୧୪)

ସୁଲି ମାଳୁଣିଆର ଗୋଡ଼ରେ ହାତ ଦେଇ ଘଷିଦେବା ପାଇଁ । ମାଳୁଣିଆ ତାର ହାତ ଉଠେଇ ନେଲା । ସେମାନଙ୍କର ଆଉ ସୁଖର ଦିନ ନାହିଁ । ମାଳୁଣିଆ ବର୍ତ୍ତମାନ ବା ଭବିଷ୍ୟତର କଥା ଭାବୁ ନଥିଲା । ତା ମନ ଭିତରେ ଅତୀତର ସ୍ମୃତି ଫୁଟି ଉଠୁଥିଲା । ସୁଲିର ହାଡ଼ୁଆ ହାତର ସ୍ପର୍ଶ ସେ ଅନୁଭବ କଲା । ହାଡ଼ରେ ହାଡ଼ ବାଜିଲା । ମାଳୁଣିଆ କହିଲା— ତା' ହାତ ଧରି ସୁଲି ଏତେ ଦୁଃଖ ପାଇଲା । ସୁଲି କିନ୍ତୁ ତାକୁ ସାନ୍ତ୍ୱନା ଦେଲା । ମାଳୁଣିଆ ଅଇଁଠାଲାଗା ଓଠରେ ସୁଲିର ଧୂଳି ବିହୁଳିଆ କପାଳକୁ ଛୁଇଁଲା । ସତେ ଯେମିତି ହାଡ଼ ସହିତ ହେଲା ହାଡ଼ର ପ୍ରେମ । ଅନ୍ୟ ପକ୍ଷରେ ହୀରାଲାଲ ଓ ରାଜକୁମାରଙ୍କର ରୋମାଣ୍ଟିକ ବିଳାସ । କଥାକାର ଏହି ତୁଳନାତ୍ମକ ଚିତ୍ରକୁ ସୁନ୍ଦର ଭାବରେ ବର୍ଣ୍ଣନା କରି ଦଳିତ ସମାଜ ପ୍ରତି ସହାନୁଭୂତି ପ୍ରକାଶ କରିଛନ୍ତି ।

୧୨ । ସଂଗମ, ୧୩ । ସଂଗମ, ୧୪ । ସଂଗମ

ସେହି ସର୍ବହରା ମଣିଷର ଆଉ ଏକ କରୁଣ ଚିତ୍ର ଫୁଟି ଉଠିଛି 'ମାଗୁଚ' ଗଳ୍ପରେ । କଟକ ସହରର ଚୌଧୁରୀ ବଜାର ସଦର ରାସ୍ତା ଉପର ଦେଇ ଯାଏ ମ୍ୟୁନିସିପାଲିଟି ଚେୟାରମ୍ୟାନଙ୍କର ଧଳା ମୋଟର, ମାନ୍ୟବର ମନ୍ତ୍ରୀଙ୍କର କଳା ମୋଟର ଓ ପୂଜ୍ୟପାଦ ନେତାଙ୍କର ହଳଦିଆ ମୋଟର । ପାଖ ନର୍ଦ୍ଦମାରେ ମୁଣ୍ଡମାଡ଼ି ହୋଇ ଭିକାରୀ ପିଲାଟିଏ ପଡ଼ିଯାଇଥାଏ । ଏହି ଦୃଶ୍ୟ ଦେଖିବା ପାଇଁ ସେଠାରେ ଜମା ହୋଇଗଲେ ରିକ୍ସାବାଲା, ପାନବାଲା, ଶଗଡ଼ିଆ ଠାରୁ ଆରମ୍ଭ କରି ଗୋରା ସୈନ୍ୟ, ସିନେମା ଦେଖିବାକୁ ଯାଉଥିବା ଫିଟ୍‌ଫାଟ୍ ଟୋକା ଦଳେ, ଜଣୈକ ବାବାଜୀ, କେତେଜଣ ମାରୁଆଡ଼ି, କନେଷ୍ଟବଲ ଆଦି କେତେ ଲୋକ । ଶେଠଜୀଙ୍କ ନୂଆ ପେଟଣ୍ଟ ମୋଟର ମଧ୍ୟ ହର୍ଣ୍ଣ ଦେଇ ଛୁଟାଇଦେଲା । ସମସ୍ତେ ପାଟି କରୁଥାନ୍ତି ପିଲାଟିକୁ ଉଠାଇ ଆଣିବାକୁ ମାତ୍ର କେହି ଯାଉ ନଥାନ୍ତି । ବାବୁଭାୟା କେବଳ ବାକ୍ ସହାନୁଭୂତି ଦେଖାଇବା ସାର । କନେଷ୍ଟବଲ ମଧ୍ୟ ତଦ୍ରୂପ । ଶେଷକୁ ଯାକୁବ ମିଆଁ ନର୍ଦ୍ଦମା ଭିତରକୁ ପଶିଯାଇ ପିଲାଟିକୁ ଉଠାଇ ଆଣିଲା । ତାପରେ କିଏ କେତେ କଥା କହିବାକୁ ଲାଗିଲେ । କିଏ କହିଲା ବିଚରା ଭିକାରୀ ପିଲାଟିଏ । କିଏ କହିଲା ସେ ଗୋଟାଏ ଭିକାରୁଣୀ ସହିତ ବୁଲେ । ସାତବର୍ଷର ପିଲାଟି କଟକ ସହରରେ ମଣିଷ ହେବାକୁ ଧାଇଁଥିଲା । କେତେ ବାବୁଭାୟାଙ୍କ ପାଖକୁ ଯାଇ ପେଟ ପିଠି ଦେଖାଇ ଖାଇବାକୁ ମାଗୁଥିଲା । ବଞ୍ଚିବାର ମୋହରେ ସେ ଅଙ୍ଗୀକାର କଲା ପାର୍କ ପାଖ ଗୁଡ଼ିଆ ଦୋକାନର ଅଇଁଠା ପତର ଚାଉଳ, ମାରୁଆଡ଼ି ଘର ନଳା । ବଞ୍ଚିବା ପାଇଁ ତାର ସଂଗ୍ରାମ । ସଂସାର କରିବା ପାଇଁ ତାର ବାସନା । ସବୁ ଶେଷ ହୋଇଗଲା । ନର୍ଦ୍ଦମାରେ ମୁହଁମାଡ଼ି ପଡ଼ିଗଲା । ମଟର ଭିତରୁ ଶେଠଜୀ କହିଲେ ଡାକ୍ତର ପାଖକୁ ନେଇ ଦେଖାଇବା ପାଇଁ । ଯାହାକିଛି ଅର୍ଥ ଖର୍ଚ୍ଚ ହେବ ସବୁ ସେ ଦେବେ । ସେତେବେଳକୁ ପିଲାଟିର ଜୀବନ ଚାଲିଗଲାଣି । ଲୋକ ଗହଳି ଭାଙ୍ଗିଗଲା । ବାବାଜୀ ସବୁ ମାୟା ବୋଲି କହି ଚାଲିଗଲେ । ସାଧାରଣ ଲୋକେ ମଧ୍ୟ ସେଥିରେ ପାଳି ଦେଲେ । ମନ୍ତ୍ରୀଙ୍କ କଳା ମଟର, ମ୍ୟୁନିସିପାଲିଟି ଚେୟାରମେନଙ୍କ ଧଳା ମଟର ଓ ପୂଜ୍ୟପାଦ ନେତାଙ୍କର ହଳଦିଆ ମଟର ମଧ୍ୟ ଚାଲିଗଲା । ଧର୍ମ କିପରି ମଣିଷକୁ ଭାଗ୍ୟବାଦୀ କରି-ଦେଇଛି ଏବଂ ଧର୍ମ ହୋଇଛି ସର୍ବହରା ମଣିଷର ଦୁଃଖର କାରଣ, ସେହି କଥାକୁ ଲେଖକ ଉକ୍ତ ଗଳ୍ପରେ ଦେଖାଇଦେବା ସଙ୍ଗେ ସଙ୍ଗେ ସମାଜର ସୁବିଧାବାଦୀ ଉପଭୋଗୀ ଗୋଷ୍ଠୀଙ୍କର ବାକ୍ ସହାନୁଭୂତିକୁ ତୀବ୍ର ବ୍ୟଙ୍ଗୋକ୍ତି କରିଅଛନ୍ତି ।

'ସ୍ୱାହା' ଗଳ୍ପରେ ଅଛି ସର୍ବହରା ମଣିଷର ମୁନିବ ପ୍ରତି ଗଭୀର ଅନୁରକ୍ତି । ଚୌଧୁରୀ ବୃନ୍ଦାବନ ମହାପାତ୍ରଙ୍କର ଯାବତୀୟ କାର୍ଯ୍ୟରେ ବେନୁଆର ଥାଏ ଅହେତୁକ ସାହାଯ୍ୟ । ବେନୁଆ ପ୍ରତି ମଧ୍ୟ ଚୌଧୁରୀଙ୍କର ଅଗାଧ ବିଶ୍ୱାସ । ବେନୁଆର ମାଆ ଚୌଧୁରୀ ଘରେ କାମ କରି ମରିଗଲା । ବେନୁଆ ମଧ୍ୟ ମାଆ ମରିଗଲା ଠାରୁ ଚୌଧୁରୀଙ୍କ ଘରେ କାର୍ଯ୍ୟ କରି ଆସୁଥିଲା । ଚୌଧୁରୀଙ୍କ ଦୟାରୁ ବେନୁଆ ମଣିଷ ହୋଇଛି । ଘର ଦ୍ୱାର କରିଛି ।

ଜମି ଦେଢ଼ମାଣ କିଣିଛି । ଲୋକେ ତାକୁ ନାନା କଥା କହନ୍ତି । ଚୌଧୁରୀଙ୍କ ଗୋଲାମ ବୋଲି ଭର୍ତ୍ସନା କରନ୍ତି । ମାତ୍ର ସେ ତାର କର୍ତ୍ତବ୍ୟରେ ଅବହେଳା କରେ ନାହିଁ । ରାତିରେ ଚୌଧୁରୀଙ୍କ ପିଣ୍ଡାରେ ଶୁଏ । ପାହାନ୍ତା ପହରୁ କୁହାଟ ଛାଡ଼େ । ଦିନେ ବେନୁଆ ସାଆନ୍ତଙ୍କ ହାତକୁ ଚାବିଟି ବଢ଼ାଇ ଦେଇ ନିଜ ଘରକୁ ଚାଲିଗଲା । ନିଜ ଘରେ ସେ ସାଆନ୍ତଙ୍କ ପରି ଆସର ଜମେଇଲା । ମାହାରାଣୀ ଆସି ବେନୁଆ ଘର ଆଗ ସଫା କଲା । ବାରିକ ଆସି ବେନୁଆକୁ ମର୍ଦ୍ଦନ କଲା । କିଏ ପୁଣି ଆଣି କ୍ଷୀର ଛେନା ବେନୁଆ ଘରେ ଦେଇଗଲେ । ତା' ଘରେ ଦାମିକା ପଲଙ୍କ । ପଲଙ୍କ ଉପରେ ମୋଟା ଗଦି । ଘର ବାହାର ଅତର ଗନ୍ଧରେ ମହମହ । ବେନୁଆ ପିନ୍ଧିଲା ଫିନ୍ ଫିନ୍ ଧୋତି । କାନ୍ଧରେ ସମ୍ବଲପୁରୀ ଗାମୁଛା । ତାକୁ କେହି ବେନୁଆ ଡାକିବାରୁ ସେ କହୁଛି—'ବେନୁଆ, ବେନୁଆ, ବେନୁଆ କରି ତୋ ଜିଭ ଉପରେ ଘର କରିଛି ? ହୁଃ ମଣିଷ ଦିଶୁ ନାହାନ୍ତି ସଳାକୁ । କହ ବେଣୁଧର ବାବୁ, କହ ବାବୁ ବେଣୁଧର ସିଂହ ।' ଏଥର ବେଣୁଧରଙ୍କ ଚାରିପଟେ ପରିଚର ଘେରିଗଲେ । ବାବୁଙ୍କର ହାକିମିର ଇୟତ୍ତା ନାହିଁ । ଦ୍ୱିପ୍ରହରକୁ ପୁରୋହିତ ଆସିଲେ । ଷାଠିଏ ସତୁରି ବ୍ରାହ୍ମଣ ଆସିଲେ । ସେମାନଙ୍କୁ ଉତ୍ତମ ଭୋଜନ ଦିଆଗଲା । ଓଜନଦାର ବିଦାକି ମଧ୍ୟ ଦିଆଗଲା । ଲୋକେ ନାନା କଥା କୁହାକୁହି ହେଲେ । ତାର ସଛୋଟ ପଣିଆ ଠାରୁ ଆରମ୍ଭ କରି ଗୋସେଇଁଙ୍କ କିଆରିରୁ ସୁନାଗରା ପାଇବା ପର୍ଯ୍ୟନ୍ତ ନାନା କଥା ପଡ଼ିଲା । କେହି ମଧ୍ୟ କହିଲା ବେଣୁଧର ତାର ଜମି ଘରବାଡ଼ି ଦେଢ଼ମାଣ ବନ୍ଧକ କରି ଦେଇଛି । ଚୌଧୁରୀଙ୍କ ଚଉପାଢ଼ୀରେ ମଧ୍ୟ ଏକଥା ପଡ଼ିଲା । ସମସ୍ତେ ଭାବିଲେ ବେଣୁଧର ପାଗଳ ହୋଇଗଲା । ମଦନ ସିଂ ବେଣୁଧରକୁ ବୁଝାଇଲେ । କେତେ କଷ୍ଟରେ ସେ ସମ୍ପତ୍ତି କରିଥିଲା । ଇମିତି ଉଡ଼େଇ ଦେବା ଠିକ୍ ହେଲା ନାହିଁ । ବେଣୁଧର କିନ୍ତୁ ଏ କଥାରେ ଖୁବ୍ ଜୋରରେ ହସି ଉଠିଲା । ସେହି ହସ ଶୁଭିଲା ଚୌଧୁରୀଙ୍କ ଚୌପାଢ଼ୀକୁ । ବେଣୁଧର ଜାଣେ ସେ କେବେ ଚୌଧୁରୀଙ୍କ ସରି ହୋଇ ପାରିବ ନାହିଁ । ତଥାପି ସେ ତାର ଅର୍ଜିତ ସମ୍ପତ୍ତିକୁ ଏପରି ଉଡ଼ାଇ ଦେବାରେ କାରଣ କଣ ? ଘୋର ବେଦନାବୋଧରେ ସେ ଯେପରି ତାର ସମ୍ପତ୍ତିକୁ ଖଇରାତ କରିଦେଲା । ମହମ ପରି ତାର ହୃଦୟ ତରଳି ଯାଉଛି । ସାଧାରଣ ଲୋକେ ଚୌଧୁରୀଙ୍କୁ ସହି ନେଇଥିଲେ । ଅଥଚ ସେଇମାନଙ୍କ ଭିତରୁ ଜଣେ ଚୌଧୁରୀଙ୍କ ପରି ମଉଜ କରିବାରୁ ତାକୁ ନାନା କଥା କହିଲେ । ବଡଲୋକ ମଉଜ କଲେ ତାଙ୍କୁ କେହି କିଛି କହନ୍ତି ନାହିଁ । ଦରିଦ୍ର ସର୍ବହରା ମଉଜ କଲେ ତାର ଅପପ୍ରଚାର ହୁଏ । ବେଣୁଧର ନିଜର ସମ୍ପତ୍ତିକୁ ବନ୍ଧକ କରି ଦେଇ ନିଜେ ସର୍ବହରା ହୋଇ ଯାଇଛି । ସେ ସୂଚେଇ ଦେଇଛି ବ୍ୟକ୍ତିଗତ ସମ୍ପତ୍ତି ରହିବ ନାହିଁ । ଚୌଧୁରୀଙ୍କ ଭୂସମ୍ପତ୍ତି ମଧ୍ୟ ରହିବ ନାହିଁ । ମିଥ୍ୟା ସାକ୍ଷ୍ୟ ଦେଇ ଚୌଧୁରୀ ଯେପରି ଲୋକଙ୍କୁ ସର୍ବସ୍ୱାନ୍ତ କରନ୍ତି ତାହା ମଧ୍ୟ ରହିବ ନାହିଁ । ଚୌଧୁରୀଙ୍କ ସମ୍ପତ୍ତି ବୃଦ୍ଧିର କାରଣ ତାଙ୍କର ପ୍ରତାରଣା ଓ ଶୋଷଣ । ବେଣୁଧର ସେହି ପ୍ରତାରଣା ବିରୋଧରେ ହିଁ ନିଜର ବିଦ୍ରୋହ ଘୋଷଣା କରିଛି । ମହମବତୀ ଜଳି ଜଳି କାଠପଟା

ଉପରେ ଜମାଟ ବାନ୍ଧିଯାଇଛି । ସତେ ଯେମିତି ସର୍ବହରା ମଣିଷର ଦୁଃଖ ଓ ଦୈନ୍ୟ ଜମାଟ ବାନ୍ଧିଛି । ସେହିହିଁ ହେବ ନିଆଁରେ ପରିଣତ ।

'ଗଛରୁ କାହିଁକି ମଲୁ' ତାଙ୍କର ଆଉ ଏକ ଗଳ୍ପ । ଏ ଗଳ୍ପ ଭିନ୍ନ ସ୍ୱାଦର । ଏଥିରେ ମଧ୍ୟ ଥିଲାବାଲା ଓ ନଥିଲା ବାଲାଙ୍କର ଅନ୍ତ ଦ୍ୱନ୍ଦ୍ୱ । ଏହି ଦ୍ୱନ୍ଦ୍ୱ ଭିତରେ ପ୍ରକାଶିତ ଏକ ନୀରବପ୍ରେମର ମଧୁମୟ ଫଲ୍‌ଗୁ । ଖିମସେଠୀ ଜନୈକ ଗରିବ ଧୋବା । ତରୀ ତାର ଆଦରଣୀୟା କନ୍ୟା । ବାପା ମାଆଙ୍କ ସ୍ନେହ ପାଇ ସେ ଅଝଟିଆ ହୋଇଛି । ଅଥଚ ସେ ଜମିଦାରଙ୍କ ଘରୁ ଲୁଗା ନେଇ ଫେରି ଆସିଲା ପରେ କେବଳ ହସିଛି । ସେଦିନ ବାପାଙ୍କ ପାଇଁ ନିଜ ହାତରେ ଭଲକରି ବେଶେଷି କରି ଖାଇବାକୁ ଦେଇଛି । ବାପା ଝିଅ ଉପରେ ଭାରି ଖୁସି । ପୁଅ ନ ଥିଲେ ମଧ୍ୟ ତରୀ ପାଇଁ ତାର ଗର୍ବ । ବାପାକୁ ସେ ଅନୁରୋଧ କଲା ଇସ୍ତ୍ରୀଟିଏ କିଣି ଦେବା ପାଇଁ । ମାଆ କିନ୍ତୁ ମନା କରିଛି । ଝିଅର ମନତାକୁ ଏଡ଼ି ନ ପାରି ଖିମା ଇସ୍ତ୍ରୀଟିଏ କିଣି ଆଣିଲା । ଜମିଦାରଙ୍କ ବଡ଼ପୁଅ ଶଙ୍କର କଲେଜରେ ପଢ଼େ । ସହରରେ ରହେ । ଗାଁକୁ ଆସିଲେ ଘରେ ରହେ । ଗାଁ ଲୋକଙ୍କ ସହିତ ମିଳାମିଶା କରେ ନାହିଁ । ତରୀ ବାରମ୍ବାର ଯାଇ ସାଆନ୍ତାଣୀଙ୍କୁ ପଚାରି ଆସେ ଶଙ୍କରବାବୁ କେବେ ଘରକୁ ଆସିବେ । ଜମିଦାରଣୀ ତା' ଉପରେ ବିରକ୍ତ ହୁଅନ୍ତି । ତରୀ କିନ୍ତୁ କିଛି ଶୁଣେ ନାହିଁ । ତାକୁ କିଏ ଥଟ୍ଟା ତାମସା କଲେ ସେ ଖାତିର କରେ ନାହିଁ । ସେ କହେ 'ଶଙ୍କର ସାଆନ୍ତ ଭାରି ଭଲ ମଣିଷ ।' ଶଙ୍କର ଘରକୁ ଆସିଲେ ତରୀ ଆସି ଲୁଗା ନେଇଯାଏ । ଖିମା ଯେତେ କାଚିଲେ ମଧ୍ୟ ତରୀ ପୁଣି ଥରେ କାଚେ । ଖିମା ଲୁଗାରେ ଇସ୍ତ୍ରୀ ଦେଲେ ମଧ୍ୟ ତରୀ ମନକୁ ପାଏ ନାହିଁ । ସେ ମଧ୍ୟ ନିଜେ ଲୁଗାରେ ଇସ୍ତ୍ରୀ ଦିଏ । ଶଙ୍କରର ବାହାଘର ହେଲା । କେତେ ରୋଷଣୀ ହେଲା । କେତେ ଭୋଜିଭାତ ହେଲା । କେତେ କାହାକୁ ଯୋଡ଼, ଲୁଗା, ମଠା, ଶାଢ଼ୀ, କ୍ଷୀରି, ଖେଚୁଡ଼ି, ପୁରି, ମାଲପୁଆ ଦିଆଗଲା । ତରୀ ବୋଉ ଝିଅକୁ କହିଲା – ସାଆନ୍ତ ଘରକୁ ଯିବାପାଇଁ । ବୋଉ ପ୍ରଶଂସା କଲା ଖାଇବା ପିଇବା, ବାଜା ରୋଷଣି ବିଷୟରେ । ତରୀକୁ ସବୁ ବିରକ୍ତ ଲାଗୁଥାଏ । ପାନକରେ ବସି ବର ଗଲା । କେତେ ବାଣ ଫୁଟିଲା । ବାଜା ବାଜିଲା । ତରୀ ମନେକଲା ସତେ ଯେମିତି ତାର କାଳିଆ ଚମଡ଼ା ତଳେ ରକ୍ତ ଜୋରରେ ଛୁଟିଛି । ସେ କେବଳ କାନ୍ଦିଲା । ପରଦିନ ବାପାକୁ କହିଲା – 'ଇସ୍ତ୍ରିଟା ଆମର କଣ ହଉଛି ? ବିକି ଦିଅନ୍ତେ କାହାକୁ ।' ତରୀର ହୃଦୟରେ ଶଙ୍କର ପ୍ରତି ନୀରବ ପ୍ରେମ । ଅଥଚ ଶଙ୍କର ତାକୁ ପଚାରେ ନାହିଁ । ବଡ଼ଲୋକଙ୍କ ଆଭିଜାତ୍ୟ ଅର୍ଥରେ ପ୍ରତିଷ୍ଠିତ । ଦାରିଦ୍ର୍ୟ ସେଠି ଉପହସିତ । ସାଧାରଣ ଲୋକଙ୍କୁ ଖାଇବାକୁ ଦେଇ ଅଥବା କିଛି ଲୁଗାପଟା ଦେଇ ଆପଣାର ଆଭିଜାତ୍ୟକୁ କେବଳ ଦେଖାଇଛନ୍ତି । ତରୀର ଇସ୍ତ୍ରୀ କିଣିବା ଓ ଇସ୍ତ୍ରୀକୁ ବିକ୍ରୟ କରିଦେବା ପାଇଁ କହିବା ମଧ୍ୟରେ ଯେମିତିକି ତାର ହୃଦୟର ପ୍ରେମ ଓ ବିଦ୍ରୋହ ପ୍ରକାଶ ପାଇଛି । ବଡ଼ଲୋକଙ୍କ ଆଭିଜାତ୍ୟର ସୀମାକୁ ସର୍ବହରା ମଣିଷ ଛୁଇଁ ପାରେନା । ଛୁଇଁବାକୁ ଚେଷ୍ଟାକଲେ ଯନ୍ତ୍ରଣାହିଁ ସାର ।

ଅର୍ଥବାଦର ଅଭିମିକା ଏବଂ ଅନାବିଲ ପ୍ରେମ ମଧ୍ୟରେ ଯେଉଁପରି ସୃଷ୍ଟି ହୋଇଛି ଏକ ସଙ୍ଘର୍ଷ ।

'ସବୁଜ ବିପ୍ଳବ' (୧୫) କଥାକାରଙ୍କର ଅନ୍ୟ ଏକ ଗଳ୍ପ । ଅନ୍ୟାନ୍ୟ ଗଳ୍ପଗୁଡ଼ିକର ସୃଷ୍ଟି ସ୍ୱାଧୀନତାର ପ୍ରାକ୍‌କାଳରୁ ସ୍ୱାଧୀନତା ପରବର୍ତ୍ତୀ ମାତ୍ର କେତୋଟି ବର୍ଷ ମଧ୍ୟରେ । ଗଙ୍ଗାଧର ରଥଙ୍କ ସମ୍ପାଦନାରେ ପ୍ରକାଶିତ 'ସଙ୍କେତ' ପତ୍ରିକାରେ ତାଙ୍କର କେତୋଟି ଗଳ୍ପ ପ୍ରକାଶ ପାଇଥିଲା । 'ନଅଟି ଗଳ୍ପ' ସଙ୍କଳନରେ ଗଙ୍ଗାଧର ରଥ, ଅଖିଳମୋହନ ପଟ୍ଟନାୟକ, ଶ୍ରୀବତ୍ସ ନାୟକ, ଶଶି ପଟ୍ଟନାୟକଙ୍କ ଗଳ୍ପ ସହିତ ରଘୁନାଥ ଦାସଙ୍କର ମଧ୍ୟ ଗଳ୍ପ ପ୍ରକାଶ ପାଇଥିଲା । ଏସବୁ ଗଳ୍ପ ଥିଲା ମାର୍କସବାଦୀ ଚିନ୍ତାଧାରାର ଗୋଟିଏ ଗୋଟିଏ ସାର୍ଥକ ପ୍ରତିଲିପି । ଏହାପରେ ରଘୁନାଥ ଦାସ ଅନେକ ବର୍ଷ ଧରି ଗଳ୍ପ ଲେଖାରୁ ନୀରବ ହୋଇଗଲେ । ୧୯୭୦ ମସିହା ପରେ 'ଶ୍ରୀ ଜଟାୟୁ' ଛଦ୍ମ ନାମରେ କବିତା ରଚନା କଲେ । କିନ୍ତୁ 'ଅଗ୍ନିବାଣ' ପତ୍ରିକାରେ ସେ ପ୍ରକାଶ କରିଥିଲେ 'ସବୁଜ ବିପ୍ଳବ' ଗଳ୍ପ । ଡେଙ୍କୁଣୀ ଗାଁର ରାସ୍ତା କଡରେ ଛିଡା ହୋଇଛି ଗୋଟିଏ ଥୁଣ୍ଟା ଗଛ । ଗଛରୁ ଛାଲି ଛଡା ହୋଇ ଯାଇଛି । ଗଛର ଉପରଭାଗ ଓ ଶାଖା ମଧ୍ୟ କଟା ହୋଇ ଯାଇଛି । 'ଦେଖିଲେ ଧାରଣା ହୁଏ, ସତେ ଯେମିତି ସେଇଟା କଂସେଇ ଦୋକାନରେ ଟଙ୍ଗା ହୋଇଥିବା ଛାଲ ଉତୁରା ଗୋଟାଏ ବକରୀ, ଯାହାର ପଛ ଗୋଡ଼ଆ ଦୁଇଟା ବାନ୍ଧି ହୋଇ ଯାଇଛି ।' (୧୬) ବେଳପରି କଅଁଳି ଉଦ୍ଦରେ କୃଷ୍ଣରୋଗୀ ତାର ପସରା ମେଲାଇଲା ପରି ସେହି ଥୁଣ୍ଟା ଗଛର ଉପରିଭାଗରେ ମଲଙ୍ଗ, ବରଗଛ ସିଅ ଜଟେଇ ଦେଇଛି । ଉପରକୁ ବାହାରିଛି ଗୋଟିଆ ଶାଖାଟିଏ । ପବନରେ ପତ୍ରଗୁଡ଼ିକ ହଲି ଗଲେ ମନେହୁଏ ଯେମିତି କିଏ ତାଳିମାରି ଦେଉଛି । ମିର୍ଜା ସେଇ ଗାଁର ବ୍ୟକ୍ତି । ପନ୍ଦରବର୍ଷ ତଳେ ବନ୍ୟା ଫଳରେ ଗୋବରୀ ନଈ ବନ୍ଧ ଭାଙ୍ଗିଯାଇ ଗାଁର ଜମିକୁ ବାଲିଚର କରି ଦେଇଥିଲା । ଗାଁର ଲୋକମାନଙ୍କର ଆର୍ଥିକ ମାନଦଣ୍ଡ ଭାଙ୍ଗିଗଲା । ବିଦେଶ ଯାଇ ଯାହା ଦି'ପଇସା ରୋଜଗାର କଲେ ସେଥିରେ ଗାଁର ସ୍ତ୍ରୀ ପିଲାମାନେ କୌଣସିମତେ ଚଳି ଯାଆନ୍ତି । ମିର୍ଜା ମଧ୍ୟ ବାରବର୍ଷ ବିଦେଶରେ କଟେଇ ଗାଁକୁ ଫେରିଛି । ସେ ଗାଁରେ ଏଥର ରହିଲା । ଅଣ୍ଡା ବିକ୍ରୟ ଓ ହଣ୍ଡା ଦାଲାଲି କରି ସେ

୧୫ । ଅଗ୍ନିବାଣ - ପ୍ରଥମ ବର୍ଷ, ନବମ ସଂଖ୍ୟା, ଜାନୁୟାରୀ - ୧୯୭୪

୧୬ । ଅଦୈବ - ପୃ ୧୧

କୌଣସି ମତେ ତାର ସଂସାର ଚଳାଇଲା । ତାପରେ ସେ ସ୍ଥାନୀୟ ଅର୍ଥନୀତିର ଯାବତୀୟ ପନ୍ଥା ଆବିଷ୍କାର କଲା । ଅବଶେଷରେ ତାର ଆଠଗୁଣ୍ଠ ବାଲିଚର ଜମିକୁ ଉଠିଆ କରିବାକୁ ଲାଗିଲା । ଏହି କାର୍ଯ୍ୟରେ ତାକୁ ସାହାଯ୍ୟ କଲେ ତାର ପୁଅ ଓ ଝିଅ । ଜମିକୁ ହାଣି ସେ ସଫାକଲା । ସେହି ଜମିରେ ସେ ପଙ୍କ ଆଣି ପକାଇଲା । ଦାଳ ଆଣି କମ୍ପୋଷ୍ଟ କରି ଜମିରେ ପକାଇଲା । ଛେଳି ଲଣ୍ଡି ସଂଗ୍ରହ କରି ମଧ୍ୟ ଜମିରେ ଦେଲା । ବ୍ଲକରୁ ସାର ଆଣି ପକାଇଲା । ଟୁବି ଗଡ଼ିଆରୁ ସରୁ ନାଳଟିଏ କରିନେଇ ଜମିରେ ଗୁଡ଼ିଲା ଏବଂ ଗଡ଼ିଆରୁ ପାଣି ବୋହି ଜମିରେ ମଡାଇଲା । ତାପରେ ଭଲଦିନ ବୁଝି ସେ ଜମିରେ ବାଇଗଣ ଗଛ ଲଗାଇଲା । ଗଛ ବଢ଼ିଲା । ମିର୍ଜାର ଆନନ୍ଦ ବଢିବାକୁ ଲାଗିଲା । ଯେଉଁଦିନ ସେ ବାଇଗଣ ଗଛରେ ଫୁଲ ଫୁଟିବା ଦେଖିଲା, ସେଦିନ ସେ ଆନନ୍ଦରେ ବିହ୍ୱଳ ହୋଇ ଉଠିଲା । ବାଇଗଣ ତୋଳି ସେ ହାଟକୁ ନେଇ ବିକ୍ରୟ କଲା । ବେଶ୍ ଦି'ପଇସା ରୋଜଗାର କଲା । ତାର ବାଇଗଣର ତାରିଫ ସମସ୍ତେ କଲେ । କେହି ତାର ବାଇଗଣ ବାଡ଼ିକୁ ପ୍ରଶଂସା କଲେ ସେ ତାକୁ ବଡ଼ ଖଣ୍ଡେ ଦିଏ ଏବଂ କହେ— 'ମାଟି ନୁହେଁ ସେ ଭାଇ ମା'ଟି । ମାଟିକୁ ଯିଏ ଚହ୍ଲିବ, ମା' ନଷ୍ଟେ ତା' ପେଟକୁ ଦାନା ଦବ ।' (୧୭) ମିର୍ଜା ଯେତେବେଳେ ବାଇଗଣ କିଆରୀରେ ବୁଲି ବୁଲି କାମ କରେ, ଗଛଗୁଡ଼ିକର ଯତ୍ନ ନିଏ, ସେତେବେଳେ ତାର ମନେହୁଏ 'ସେଗୁଡାକ କମିତ ତାକୁ ଦେଖି କୁଲୁରୁଛନ୍ତି, ତା'ର ଆଦର ଯତ୍ନ ବୁଝି ପାରୁଛନ୍ତି । ମଣିଷ ଭଳି ସେମାନେ ତାକୁ ବି ଭଲ ପାଉଛନ୍ତି । ତା'ର ଦିଲ୍ ସହିତ ତାଙ୍କର ଦିଲ୍ ବାକ୍‌ଚିତ୍ କରୁଛି । ଯାହାର ଆବାଜ କେବଳ ସେ ଶୁଣି ପାରୁଛି । ସେମାନେ କହୁଛନ୍ତି- ଚଚା, ତୁମେ କେଡେ ଆଚ୍ଛା ଆଦ୍‌ମି, ଆମ ଲାଗି କେତେ କୋସିସ୍ କରୁଛ, ଆମେ ଉତ୍ତର ଫଳ ଧରିବୁ । ଆଉରି ଫଳ ଧରିବୁଁ, ଆହୁରି ଫଳିବୁଁ, ପ୍ରତି ଗଣ୍ଠିରେ ଲେନ୍ଥା ଲେନ୍ଥା ହୋଇ ଫଳିବୁଁ ।' (୧୮) ବି.ଡ଼ି.ଓ., ସରପଞ୍ଚ, ଗ୍ରାମସେବକ, ତହସିଲଦାର, ଖାଦ୍ୟ ସମ୍ପ୍ରସାରଣ ଅଫିସର, କାନ୍‌ଗୋଇବାବୁ ସମସ୍ତେ ମିର୍ଜାର ବାଇଗଣକୁ ପ୍ରଶଂସା କଲେ । ମିର୍ଜା ମଧ୍ୟ ସମସ୍ତଙ୍କୁ ବାଇଗଣ ଉପହାର ଦେଲା । ଏକଦା ବି.ଡ଼ି.ଓ., ଗ୍ରାମସେବକ, ସରପଞ୍ଚ ଓ ଅନ୍ୟ କେତେ ଲୋକ ମିର୍ଜାର ବାଇଗଣ କ୍ଷେତ ଦେଖିବାକୁ

୧୭ । ଅଗ୍ନିପାଣା - ୧ମ ବର୍ଷ / ୯ମ ସଂଖ୍ୟା - ପୃ ୧୩

୧୮ । ଅପୈବ

ଆସିଲେ । ସେତେବେଳେ ମିର୍ଜା ଫାଉଡ଼ା ଟାଏ ଧରି ଜମିରେ ପାଣି ମିଆର କାଟୁଥିଲା । ସେମାନଙ୍କୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । ଏଥର ସମସ୍ତେ ମିର୍ଜାର ବାଇଗଣ କିଆରିରେ ପଶିଲେ । ପାଣି ନାଲ ଭାଙ୍ଗିଗଲା । କେତେଟା ଗଛ ନାରଖାର ହୋଇଗଲା । ତାପରେ ବାଇଗଣ କିଆରିରେ ଫଟୋ ଉଠାଗଲା । ବାଇଗଣ ଗଦାର ମଧ୍ୟ ଫଟୋ ଉଠିଲା । ସରପଞ୍ଚ ଜ୍ଞାନବାବୁ ବାଇଗଣବାଡ଼ିର ମଝିରେ ଛିଡ଼ା ହେଲେ । ଗ୍ରାମସେବକଟାବୁ ତାଙ୍କର ଫଟୋ ଉଠାଇଲେ । ମିର୍ଜା ଦୋକଟ୍ଟ ମାରି ଫାଉଡ଼ା ଧରି ଛିଡ଼ା ହେଲା । ତାର ମଧ୍ୟ ଫଟୋ ନିଆଗଲା । ମିର୍ଜା ମନେ ମନେ ଗର୍ବ ଅନୁଭବ କଲା । ଗ୍ରାମର ଲୋକମାନେ ମଧ୍ୟ ଧନ୍ୟ ମନେକଲେ । ମିର୍ଜା ପାଇଁ ତାଙ୍କ ଗ୍ରାମକୁ ବଡ଼ ବଡ଼ ବାବୁମାନେ ଆସିଲେ । ମିର୍ଜା ସମସ୍ତଙ୍କୁ ବିଦାୟ ଦେଲା । ସମସ୍ତଙ୍କୁ କିଛି କିଛି ବାଇଗଣ ଉପହାର ଦେଲା । ସେମାନେ ଗାଁ ମୁଣ୍ଡ ଦେଇ ଯାଉଥିଲା ବେଳେ ଥୁଣ୍ଟା ଗଛ ପାଖରେ ଛିଡ଼ା ହେଲେ । ସେମାନଙ୍କୁ ମନେହେଲା କେହି ଯେମିତି ତାଳିମାରି ଠୋ ଠୋ ହୋଇ ହସୁଛି । ନଈ ପାର ହୋଇ ବାବୁମାନେ ଜିପ୍‌ରେ ବସିଲେ । ମିର୍ଜାକୁ ସରପଞ୍ଚ ପାଞ୍ଚଟଙ୍କା ବଢ଼ାଇ ଦେଲେ ମାତ୍ର ମିର୍ଜା କହିଲା— 'ସେ ଗରିବ, ଲେକିନ ତା'ର ଦିଲ୍ ଛୋଟ ନୁହେଁ ।' (୧୯) ସରପଞ୍ଚ ମିର୍ଜାର ପୃଷ୍ଠ ପକେଟରେ ଟଙ୍କା ପୂରାଇଦେଲେ । ତାପରେ ସେମାନେ ଚାଲିଗଲେ ।

ଆଠମାସ ବିତି ଯାଇଛି । ମିର୍ଜା ପୁଣି ବାଇଗଣ କିଆରିକୁ ପରିଷ୍କାର କରୁଛି । ତାକୁ ବ୍ଲକ ଅଫିସରଙ୍କ ଠାରୁ ଆଉମ୍ଭ କରି ଚପରାସୀ ଯାଏ ଖାତିର କଲେ । ଯେଉଁ ସବୁ ନୂଆ ସ୍କିମ୍ ଆସେ ପ୍ରଥମେ ମିର୍ଜାକୁ ଦିଆଯାଏ । ବି.ଡ଼ି ଓ. ମଧ୍ୟ ତାକୁ ଝଣ୍ଡେ କିତାବ ଦେଲେ । ସେଥିରେ ସେ ଦେଖିଲା ତାର ବାଇଗଣ ବାଡ଼ିର ଫଟୋ, ତାର ନିଜର ଫଟୋ । ଘରକୁ ସେ ଆନନ୍ଦ ମନରେ ଫେରି ଆସିଲା ଏବଂ ତାର ସ୍ତ୍ରୀ ଓ ପିଲାଙ୍କୁ କିତାବରେ ବାହାରିଥିବା ଫଟୋ ଦେଖାଇଲା । ସେ ଜାଣିଲା ବାଇଗଣ କ୍ଷେତର ସେ ମାଲିକ ନୁହେଁ । ତାର ପରିଶ୍ରମକୁ ସରପଞ୍ଚ ଜ୍ଞାନବାବୁ ଲୁଣ୍ଠନ କରିଛନ୍ତି । ତା' ଭିତରେ ଥିବାର ବାଇଗଣ ବାଡ଼ିର ମାଲିକ ଜ୍ଞାନବାବୁ । ଆଦର୍ଶ କୃଷୀ ଭାବରେ ସେ କଲେକ୍ଟରଙ୍କ ଠାରୁ ମାନପତ୍ର ଓ ପାଞ୍ଚଶତ ଟଙ୍କା ପୁରସ୍କାର ପାଇଛନ୍ତି । ମିର୍ଜା ହେଉଛି ତାଙ୍କ କ୍ଷେତର ମୂଲିଆ । ସ୍ୱାଧୀନତା ପରବର୍ତ୍ତୀ କାଳରେ ସାଧାରଣ ବ୍ୟବସ୍ଥା ମଣିଷ ସୁବିଧାବାଦୀ ମଣିଷ-

୧୯ । ଅଗ୍ନିବୀଣା - ୧ମ ବର୍ଷ / ନମ ସଂଖ୍ୟା ପୃ ୧୫

ମାନଙ୍କ ଦ୍ୱାରା ହୋଇଛନ୍ତି ଶୋଷିତ । ଏ ଶୋଷଣ ସ୍ୱାଧୀନତା ପୂର୍ବର ପ୍ରତ୍ୟକ୍ଷ ଶୋଷଣ ନୁହେଁ । ବୁଦ୍ଧିବାଦ ଦ୍ୱାରା ଏହି ଶୋଷଣ ହୋଇଛି ପରିପୁଷ୍ଟ । ସ୍ୱାଧୀନତା ପୂର୍ବରୁ ଶୋଷଣର କାରଣ ରୂପେ ଧର୍ମ, ଭାଗ୍ୟ, ଭଗବାନ ଓ ରାଜତନ୍ତ୍ରକୁ ବିଚାର କରାଯାଉଥିଲା । ମାତ୍ର ସ୍ୱାଧୀନତା ପରେ ଆଇନ, ବିଚାର, ପ୍ରଶାସନ ଓ ଦେଶୀୟ ପ୍ରଶାସନିକ କର୍ମଚାରୀ ଓ ନେତୃବୃନ୍ଦ ହୋଇଛନ୍ତି ଶୋଷଣର କାରଣ । ସବୁଜ ବିପ୍ଳବର ଯେଉଁମାନେ ଅଗ୍ରଯାତ୍ରୀ ସେମାନେ ହୋଇଛନ୍ତି ଲାଞ୍ଛିତ ଓ ପ୍ରତାରିତ । ଅଥଚ ଯେଉଁମାନେ କୃଷି ଓ ଶ୍ରମ ଜାଣନ୍ତି ନାହିଁ ସେମାନେ ଉତ୍ତମ କୃଷକ ରୂପେ ହୋଇଛନ୍ତି ପୁରସ୍କୃତ । ସ୍ୱାଧୀନତା ପରବର୍ତ୍ତୀ ଅଫିସରମାନଙ୍କର ସ୍ୱେଚ୍ଛାଚାର, କାରସାଦି ଓ ଦୁର୍ନୀତି ସହିତ ନେତାମାନଙ୍କର ଜନସେବା ନାମରେ ଆତ୍ମସ୍ୱାର୍ଥ ସାଧନକୁ କଥାକାର ଉକ୍ତ ଗଳ୍ପରେ ତୀବ୍ର ବ୍ୟଙ୍ଗ କରିଛନ୍ତି । ସେହି କାଠଘରର ମଣିଷଗୁଡ଼ାକ କେତେ ଖାରୁ ଓ ଭୟାଳୁ ସେ କଥାକୁ ମଧ୍ୟ ଲେଖକ ଥୁଣ୍ଟା ଗଛର ପତ୍ରର ଶବ୍ଦ ମାଧ୍ୟମରେ ଦେଖାଇ ଦେଇଛନ୍ତି ।

କଥାକାର ରଘୁନାଥ ଦାସଙ୍କ ସମଗ୍ର ଗଳ୍ପ ଗ୍ରାମ୍ୟ ବୃତ୍ତି ଉପରେ ଆଧାରିତ । ଗ୍ରାମ୍ୟ-ଜୀବନ ଓ ଗ୍ରାମ୍ୟ ପରିବେଶ ତାଙ୍କ ଗଳ୍ପଗୁଡ଼ିକର ମୁଖ୍ୟ ଆଧାର । ସ୍ୱାଧୀନତା ପୂର୍ବବର୍ତ୍ତୀ ଗ୍ରାମ୍ୟ ବୃତ୍ତିରେ ଅଛି ବିଶୃଙ୍ଖଳ ଓ ଚରମତମ ଦାରିଦ୍ର୍ୟ, ଖାଦ୍ୟାଭାବ, କଳାବଜାରି, ୧୯୪୩ ମସିହାର ଦୁର୍ଭିକ୍ଷ ଓ ସାଧାରଣ ସର୍ବହରା ମଣିଷମାନଙ୍କର ମରଣ ସହିତ ସଂଗ୍ରାମ, ସ୍ୱରାଜ ଭାବନା ଓ ଗାନ୍ଧିମୂଳକର ସ୍ୱପ୍ନ, ଜମିଦାର - ରାଜକର୍ମଚାରୀ - ମହାଜନ ଓ ଧନୀକମାନଙ୍କ ଶୋଷଣରୁ ମୁକ୍ତି ପାଇବାର ମଧୁମୟ କଳ୍ପନା, ସାମ୍ପ୍ରଦାୟିକ ସଂଘର୍ଷ, ଜୀବନ ରକ୍ଷା ପାଇଁ ଆସାମ, କାଳିମାଟି ଓ ବର୍ମା ଆଦି ସ୍ଥାନକୁ ଗ୍ରାମ୍ୟ ମଣିଷମାନଙ୍କର ପଳାୟନ । ଅନ୍ୟପକ୍ଷରେ ଅଛି ମୁଷ୍ଟିମେୟ ଅର୍ଥଲୋଭୀ ଧନୀମାନଙ୍କର ଶୋଷଣରେ ପୈଶାଚିକ ଉଲ୍ଲାସ । ଅର୍ଥନୀତି ହିଁ ସମାଜରେ ଶ୍ରେଣୀ ବୈଷମ୍ୟ ସୃଷ୍ଟି କରିଛି । ଏହା ଫଳରେ ସର୍ବହରା ଶୋଷିତ ସମାଜ ହୋଇଛି ବିପର୍ଯ୍ୟସ୍ତ । ସ୍ତ୍ରୀଠାରୁ ସ୍ୱାମୀ, ପିତାଠାରୁ କନ୍ୟା ଓ ପୁତ୍ର ଏହି ସମାଜରେ ଅଲଗା ହୋଇ ଯାଇଛନ୍ତି । କେବଳ ଅର୍ଥ ଯେପରି ହୋଇଯାଇଛି ଏହି ସମାଜର ଏକମାତ୍ର ସାଥି । ଶୋଷକଶ୍ରେଣୀ ପ୍ରତାରଣା ଓ ପ୍ରବଞ୍ଚନା ଉପରେ ହୋଇଛି ପ୍ରତିଷ୍ଠିତ । ସ୍ୱାଧୀନତା ପୂର୍ବର ଶୋଷକ ଶ୍ରେଣୀ ସ୍ୱାଧୀନତା ପରେ ରାଜନୀତି, ଠିକା ଓ ଶିଳ୍ପ ବ୍ୟବସାୟକୁ ନେଇ ନୂତନ ରୂପରେ ଆତ୍ମପ୍ରକାଶ କରିଛି । ଶୋଷଣର ପ୍ରଥାଚକ୍ରକୁ

ସେମାନେ ବୁଦ୍ଧିବାଦ ଦ୍ୱାରା ଚଳାଇ ନେଇଛନ୍ତି । ଉପରକୁ ଅଛି ଗଣତନ୍ତ୍ରର ପ୍ରହସନ । ଭିତରେ ଅଛି ରାକ୍ଷସର ଅବସ୍ଥିତି । କଥାକାର ଏହି ସତ୍ୟକୁ ବିଭିନ୍ନ ଗଳ୍ପରେ କଳାତ୍ମକ ଭାବରେ ଦେଖାଇଦେବା ସଙ୍ଗେ ସଙ୍ଗେ ସମୀକ୍ଷାତ୍ମକ ସମାଜବାଦୀ ଭାବଧାରାକୁ ବ୍ୟକ୍ତ କରିଅଛନ୍ତି ଏବଂ ସଙ୍ଘର୍ଷର ସ୍ୱପର୍ଶିନ୍ତ ଜୀବନ ମଧ୍ୟ ଦେଇ ନୂତନ ଚୈତନ୍ୟର ସୃଷ୍ଟି କରିଅଛନ୍ତି । କଥା-ବୃତ୍ତରେ ସଙ୍ଘର୍ଷ ଅଛି ଦ୍ୱୈତ କଥାର ଅବତାରଣା । ଏକ ପକ୍ଷରେ ଶୋଷକ ଶ୍ରେଣୀର କଥା-କଳ୍ପନା ଏବଂ ଅନ୍ୟ ପକ୍ଷରେ ଶୋଷିତ ଶ୍ରେଣୀର କଥା-ଭାଷ୍ୟ । ଶୋଷିତ ଶ୍ରେଣୀର କଥାଭାଷ୍ୟ ଯେପରି ହୋଇ ଯାଇଛି ଗଳ୍ପର କେନ୍ଦ୍ର-ଭାବ । ସେଇଠି ଲୁହ ଅଛି ଏବଂ ସେହି ଲୁହ ଦେଇଛି ବଞ୍ଚିବା ପାଇଁ ସଂଗ୍ରାମର ସଂକେତ, ଶୋଷଣମୁକ୍ତ ନୂତନ ସମାଜବାଦୀ ସମାଜ ଗଠନ ପାଇଁ ସାଗ୍ନିକ ପ୍ରେରଣା । ଭାଷା ସରଳ । ପ୍ରକାଶ-ଭଙ୍ଗୀ ସ୍ୱାଭାବିକ । ଅଥଚ ଅଛି ଶକ୍ତିଶାଳୀ ଭାବର ପ୍ରବାହ । ଅନନ୍ତ ଜୀବନକୁ ଏକକ ବିନ୍ଦୁରେ କେନ୍ଦ୍ରୀଭୂତ କରି ତାର ମଧ୍ୟରୁ କଥାକାର ଶୁଣାଇଛନ୍ତି ଏକ ଦୁର୍ମଦ ଜୀବନର ମହାଭାଷ୍ୟ । ଲେଖକ ବ୍ୟକ୍ତିଗତ ଯଶ ପାଇଁ ଲେଖେନାହିଁ ; ଲେଖେ ଜନସାଧାରଣଙ୍କର ସେବା ପାଇଁ । ଲେଖକର ପ୍ରତ୍ୟେକ ସାଫଲ୍ୟ ଲୋକମାନଙ୍କର ହସକାନ୍ଦ ଜୀବନର ସମନ୍ୱୟ ସଂସ୍ଥାପନ । ଜନସାଧାରଣଙ୍କଠାରୁ ଲେଖକର ନିଜର ଦୂରତାହିଁ କଳାତ୍ମକ ଅବକ୍ଷୟର ପରିଣତି । ଲୁ ୟୁଆନ (Lu yuan) ଏ ସମ୍ପର୍କରେ ତାଙ୍କର 'My life and Poetry' ଆଲୋଚନାରେ ଯାହା କହିଛନ୍ତି (୨୦) ତାହା ରଘୁନାଥ ଦାସଙ୍କ ଗଳ୍ପ ପ୍ରତି ମଧ୍ୟ ଏକାନ୍ତ ଭାବରେ ପ୍ରଯୁଜ୍ୟ । ରଘୁନାଥ ନିଜର ଯଶ ପାଇଁ ଗଳ୍ପ ରଚନା କରି ନାହାନ୍ତି । ତାଙ୍କର ପ୍ରତ୍ୟେକଟି ଗଳ୍ପ ଜନସାଧାରଣଙ୍କ ସେବା ପାଇଁ ଅଭିପ୍ରେତ । ଲୋକଙ୍କ ଲୁହ ଆଉ ଲହୁ, ହସ ଆଉ କାନ୍ଦର ତାହା ଯେପରି ଚମତ୍କାର ସଂଶ୍ଳେଷଣ । ତାଙ୍କର ଗଳ୍ପ-କଳା ଲୋକଙ୍କ ଠାରୁ ଦୂରେଇ ଯାଇନାହିଁ । ତେଣୁ ତାଙ୍କର ଗଳ୍ପର ବ୍ୟାପ୍ତି ନଥିଲେହେଁ ଜନସାଧାରଣଙ୍କ ବେଦନାର୍ତ୍ତ ଜୀବନର ଉଚ୍ଚାରଣ ହୋଇଥିବାରୁ ସେଥିରେ ଅଛି ଦୀପ୍ତି ଓ ନୂତନ ଶୋଷଣମୁକ୍ତ ସମାଜ ଗଠନ ପାଇଁ ଆଶାନ୍ୱିତ ଆହ୍ୱାନ ।



20. However, I finally realised that one writes not to seek personal fame but to serve the people ; and that each and every achievement is the synthesis of the milk and tears of our people, while artistic decadence is the result of a writer's own distance from the people

Chinese Literature—Autumn 1984—P. 106.

# ରଘୁନାଥ ଦାସଙ୍କ କାବ୍ୟ-ମାନସ : ବିପ୍ଳବୀ ଚେତନାର ଏକ ନୂତନ ଶୃଂଗ

ରଜନୀକାନ୍ତ ମହାନ୍ତି

ବିପ୍ଳବୀ ଚେତନାର କବି ରଘୁନାଥ ଦାସଙ୍କ କାବ୍ୟଯାତ୍ରାର ବୟସ ତିରିଶି ବର୍ଷ ପାଖାପାଖି । କବିତା ଛଡ଼ା ଗଳ୍ପ, ଆଲୋଚନା, ନାଟକ, ପ୍ରବନ୍ଧ ପ୍ରଭୃତି ସାହିତ୍ୟର ପ୍ରତିଟି ପ୍ରସ୍ଥରେ ସେ ନିଜର ଅସାଧାରଣ ସବ୍ୟସାଚୀତ୍ୱର ସ୍ୱାକ୍ଷର ରଖିଯାଇଅଛନ୍ତି । ତାଙ୍କ କାବ୍ୟିକ ଅବବୋଧ ଓ କବିତାଗୁଡ଼ିକର ଆଲୋଚନା ଏହି ପ୍ରବନ୍ଧର ଧ୍ୟେୟ । 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ଏବଂ 'ପୁନଶ୍ଚ', ଏହି ଦୁଇଟି କବିତା ସଂକଳନ ବ୍ୟତୀତ ତାଙ୍କର ଅନ୍ୟ ଅନେକ କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲେ ହେଁ ଉକ୍ତ ଦୁଇଟି ସଂକଳନରେ ତାଙ୍କ କାବ୍ୟଯାତ୍ରାର ପଥ ନିର୍ଣ୍ଣୟ ଏହି ପ୍ରବନ୍ଧରେ କରାଯାଉଛି । ସ୍ୱନାମ ବ୍ୟତୀତ ଜଟାୟୁ, ବାଇମନ, ଶୁକଦେବ ବର୍ମା, ରାଜକିଶୋର, ରବୀନ୍ଦ୍ରନାଥ ଦାସ ପ୍ରଭୃତି ଛଦ୍ମନାମରେ ଏହି କବିଙ୍କର ବହୁ କବିତା ପ୍ରକାଶିତ ଏବଂ ଅନେକ କବିତା ଏଯାବତ୍ ସଂକଳିତ ପୁସ୍ତକ ଆକାରରେ ସୂର୍ଯ୍ୟଛୁଆଁରୁ ବଞ୍ଚିତ । ୧୯୫୩ ମସିହା ଠାରୁ ୧୯୭୨ ମସିହା ଯାଏ ୧୯ ବର୍ଷ କାଳ କବି ସାଧନା ରହିତ ଥିଲେ ମଧ୍ୟ ସାହିତ୍ୟ ସାଧନା କାଳରେ ଅନ୍ୟାନ୍ୟ ସାହିତ୍ୟ ସୃଷ୍ଟି ସହ ଓଡ଼ିଆ କବିତାର ବିପ୍ଳବୀ ଚେତନାର ଏକ ସ୍ୱତନ୍ତ୍ର ଶୃଙ୍ଗରୂପେ ନିଜକୁ ଅଧିଷ୍ଠିତ କରିପାରିଥିଲେ । କବିଙ୍କର ଜୀବନଯାତ୍ରା ଓ କବିତାଯାତ୍ରା ମଧ୍ୟରେ କୌଣସି ଫାଙ୍କ ରହି ନଥିଲା, କେଣୁ ଜୀବନାଦର୍ଶ ଓ ସାହିତ୍ୟାଦର୍ଶ ମଧ୍ୟରେ କୌଣସି ତୁଳନାତ୍ମକ ପ୍ରତିବନ୍ଧର ଅବକାଶ ନଥିଲା । ତାଙ୍କ ଜୀବନର ସଙ୍ଘର୍ଷ-ପୂର୍ଣ୍ଣ ବିପ୍ଳବୀ ମତାଦର୍ଶର ଜୀବନ୍ତ ଅନୁଭୂତିର ସୃଷ୍ଟି ପ୍ରକ୍ରିୟାକୁ ଯେଉଁଭଳି ବାସ୍ତବ ଓ ଜୀବନ୍ତ କରିଥିଲା, ସେହିଭଳି କବି-ଆତ୍ମା (Poet - soul)ର ଅନ୍ତର୍ବୋଧ ଓ ଏକାତ୍ମବୋଧ ତାଙ୍କର ବୈପ୍ଳବିକ ଚେତନାକୁ ବ୍ୟାପକତା, ନିଷ୍ଠା ଓ ଗଭୀରତା ପ୍ରଦାନ କରିଥିଲା । ମୂଲ୍ୟାୟନ, ତୁଳନାତ୍ମକ ଏହି କବିଙ୍କର କାବ୍ୟ-ବ୍ୟକ୍ତିତ୍ୱ ଓ ଜୀବନ-ବ୍ୟକ୍ତିତ୍ୱର ସମନ୍ୱୟ ତାଙ୍କୁ ଏକାଧାରରେ କବି ଓ ମନୀଷୀର ଆସ୍ଥାନ ପ୍ରଦାନ କରିଛି ।

କବି ରଘୁନାଥ ଦାସ ଭାରତର ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରି କାରାରୁଦ୍ଧ ହୋଇଥିଲେ । ଭାରତର ରାଜନୈତିକ ସ୍ୱାଧୀନତା ପ୍ରାପ୍ତି ପରେ ତାଙ୍କର କବିଚେତନା ଅନୁଭବ କରିଛି ଯେ ଭାରତୀୟ ସଂସ୍କୃତି, ତାର ଦାୟାଦ ତଥାପି ବି କାରାରୁଦ୍ଧ

ଏବଂ ଭାରତର ଶାସନ ଢାଞ୍ଚା ସହ ଭାରତୀୟ ସଂସ୍କୃତିର ଔପନିବେଶିକ ଓ ବୈଦେଶିକ ଦୃଷ୍ଟି-ଭଙ୍ଗୀ ମଧ୍ୟ ଶୋଷଣ ପ୍ରବୃତ୍ତି ସହ ଜଡ଼ିତ । ତେଣୁ ତାଙ୍କର କାବ୍ୟିକ ଅବବୋଧ ପାରମ୍ପରିକ ଦୃଷ୍ଟିଭଙ୍ଗୀ ଓ ଭକ୍ତିଜନିତ ଭଗବତୀୟ ମୁକ୍ତି ବ୍ୟାକୁଳତାରୁ ଅପସରି ନିରନ୍ତର ସ୍ୱାଧୀନତା, ଆର୍ଥିକ ମୁକ୍ତି, ଶୋଷଣହୀନ ଶ୍ରେଣୀହୀନ ଓ ସମାଜ ଏବଂ ମଣିଷର ଉଦନ୍ତ ଜାଗରଣ ଓ ସଂଘର୍ଷ ପାଇଁ ସମାଜବାଦୀ ବାସ୍ତବତାର ଉପଲବ୍ଧିରେ ଗର୍ଭବାନ ହୋଇ ଉଠିଛି ।

ଗଣପଥ, କୋରିଆ, ସାଙ୍ଘାଇ, ମାଓ-ସେ-ତୁଂ, ଚୀନ (ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା ଗ୍ରନ୍ଥ) ପ୍ରମୁଖ କବିତାଗୁଡ଼ିକରେ ଭୌଗୋଳିକ ସୀମାରେଖାର ଊର୍ଦ୍ଧ୍ୱରେ ସମଗ୍ର ବିଶ୍ୱରେ ମୁକ୍ତିକାମୀ ସ୍ୱାଧୀନ ମଣିଷର ସଂଗ୍ରାମୀ ଅବବୋଧର କାବ୍ୟିକ ଅନୁରଣନ ଘଟିଛି ।

ହେ କୋମଳ, ହେ ନିର୍ଭୀକ !
କିଏ ତୁମେ କୁହ ?
ପରିଚିତ ପରି ଲାଗ, ତୁମେ କହେ ଆମ ଆଖି ଲୁହ ?

(କବିତା : ଗଣପଥ ; ଅ: ପ: ଓ ଅନ୍ୟାନ୍ୟ କବିତା : ପୃଷ୍ଠା - ୨୪)

ଅଶ୍ରୁମୟି କୋରିଆ
ଭୂଗୋଳେ ତା ଅବସ୍ଥିତି ହୋଇପାରେ ଅତୀବ ଛୋଟିଆ,
ନୁହେଁ କିନ୍ତୁ ହେୟ
ଜନତାର ପୁଣ୍ୟଭୂମି ଚିତ୍ତରେ ରହିବ ଅଜେୟ ।

(କୋରିଆ : ଅ: ପ: ଓ ଅନ୍ୟାନ୍ୟ କବିତା : ପୃଷ୍ଠା – ୩୦)

ଲକ୍ଷ କୋଟି ଲୋକ ହାତେ ଏକହିଁ ନିଶାଣ
ରକ୍ତଭିଜା ନେତ,
ଏକହିଁ ଆବାଜ ଉଠେ ସାରା ବିଶ୍ୱେ, ଏକହିଁ ସଙ୍କେତ ।

(ସାଙ୍ଘାଇ : ଅ: ପ: ଓ ଅନ୍ୟାନ୍ୟ କବିତା : ପୃଷ୍ଠା - ୩୫)

ସବୁଜ ସମାଜ ସ୍ରଷ୍ଟା ତୁମେ, ନବଜୀବନର ବାର୍ତ୍ତା
ଜାଗୃତିର ଧ୍ରୁବ ସାଂକେତିକ, ସାକ୍ଷାତ ସୂର୍ଯ୍ୟ ସମାନ !

(ମାଓ-ସେ-ତୁଂ : ଅ: ପ: ଓ ଅନ୍ୟାନ୍ୟ କବିତା : ପୃଷ୍ଠା : ୫୭)

ଉଲ୍ଲିଖିତ କବିତାଗୁଡ଼ିକରେ ବ୍ୟକ୍ତି ମୁଖ୍ୟ ନୁହେଁ, ମୁଖ୍ୟ ସାର୍ବଜନୀନ ନୈର୍ବ୍ୟକ୍ତିକ ସଂଗ୍ରାମବୋଧ । ଏଥିରୁ ତାଙ୍କର 'ପୃଥିବୀର ମଣିଷ' : ଏହି ଆତ୍ମୀୟତାବୋଧର ସ୍ପଷ୍ଟ ପ୍ରତୀକ ସୃଷ୍ଟି ହୁଏ । ଅନୁଭବ କରିହୁଏ ।

ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନ ଓ ଗଣସଂଗ୍ରାମବୋଧର ଚେର ପୃଥିବୀରେ ତାର ଅସ୍ତିତ୍ୱ ଜାହିର କରି ଆସିଲାବେଳକୁ ଶୋଷଣମୁକ୍ତ ସମାଜର ସଂଗ୍ରାମଧାରା ତାର ନିଜସ୍ୱ କୌଶଳରେ ନିରନ୍ତର ସଂଗ୍ରାମ ବଜାୟ ରଖି ଗୁଳିଥିଲା ବେଳେ, ନିତ୍‌ସେଙ୍କର Superman theoryକୁ ଅପଣାମଦର୍ଶୀ ହିଟଲର Super-race theoryରେ ପରିଣତ କରିବା ସାଙ୍ଗକୁ ଜର୍ମାନୀର ଖ୍ରୀଷ୍ଟୀୟ ଚେତନାର ସନ୍ଦିଗ୍ଧ ଓ ଦୋଳାୟିତ ଅସ୍ତିତ୍ୱ ଓ ହିଟଲରର ବିଶ୍ୱଏକଛତ୍ରବାଦ ନାଜୀବାଦ, ସମଷ୍ଟିଚେତନାର ହିଂସ୍ରତା, ଆତଙ୍କବାଦ ଏବଂ ବଳପୂର୍ବକ ବିଶ୍ୱ ଅକ୍ରମଣର କଦର୍ଯ୍ୟ ଫାସିବାଦୀ କୌଶଳ ଅବଶେଷରେ ପୃଥିବୀକୁ ପ୍ରଳୟଙ୍କରୀ ବିଶ୍ୱଯୁଦ୍ଧ ଆଡ଼କୁ ଟାଣିନେଲା । ଏକଦିଗରେ ମୁକ୍ତି ପ୍ରୟାସୀ, ଶୋଷଣ ପ୍ରତିରୋଧୀ ସଂଗ୍ରାମୀ ଗଣଚେତନା, ଅନ୍ୟପକ୍ଷରେ ସମଗ୍ର ପୃଥିବୀକୁ ଅକ୍ରମଣ କରିବାର ଫାସିବାଦୀ ହିଂସ୍ରମୁଦ୍ଧର ବାତାବରଣ ଓ ସଙ୍କଟ ବିଶ୍ୱ ପରିବେଶକୁ ଏକ ମହା ଜଟିଳ ପରିସ୍ଥିତି ଆଡ଼କୁ ନେଇଗଲା । ସଂଗ୍ରାମୀ ଚେତନାର ସମ୍ପୂର୍ଣ୍ଣ ପ୍ରତିକ୍ରିୟାଶୀଳ ଜଘନ୍ୟ ହିଂସ୍ର ରୂପ ହିଁ ଫାସିବାଦ । ଏହି ବିଶ୍ୱଯୁଦ୍ଧକାଳୀନ ସମୟ ହିଁ ସଂଗ୍ରାମୀ ଗଣ-ଚେତନାର, ବୈପ୍ଳବିକ ଚିନ୍ତାର, ବୈଜ୍ଞାନିକ ବାସ୍ତବବାଦ ଓ ସମାଜବାଦୀ ମାନବିକତାବୋଧର ପ୍ରକୃତ ଓ ପ୍ରକୃଷ୍ଟ କଷଟି-କାଳ, ଏବଂ ସବୁଠୁଁ ବଡ଼ ଆଶ୍ୱାସନାର ବିଷୟ ଏହି ଯେ ସଂଗ୍ରାମୀ ଗଣଚେତନାର ଏହି ଘୋର ପରୀକ୍ଷାରେ ବିଜୟ ଲାଭ କରି ସମଗ୍ର ବିଶ୍ୱରେ ତାର ତାତ୍ତ୍ୱିକ ଓ ଆନୁଭୂତିକ ସତ୍ୟାକୁ ସମ୍ପୂର୍ଣ୍ଣରୂପେ ପ୍ରତିଷ୍ଠା କରିବା ସଙ୍ଗେସଙ୍ଗେ ବିଶ୍ୱ ମଣିଷର ଆନ୍ତରିକ ଅବବୋଧରେ ଲାଳିତ ହେବାକୁ ଲାଗିଲା । ସମାଜବାଦୀ ଋଷର ବୀର ସୈନିକଗଣ ନାଜିବାହିନୀକୁ ପରାସ୍ତ କରିଦେଲେ । ପରିଣତିରେ ଏକ ସମାଜବାଦୀ ବିଶ୍ୱର ମାନବ ଯେ ଆତ୍ମିକ ସ୍ତରରେ ସାହସୀ, ନୀତିବାନ ଓ ପ୍ରାଣଶକ୍ତିବାନ୍, ପୁଳକିତ ମଣିଷରେ ରୂପାନ୍ତରିତ ହୁଏ, ଏ ଧାରଣା ବଦ୍ଧମୂଳ ହୋଇ ଉଠିଲା । ପ୍ରାତଃ ସ୍ମରଣୀୟ ଦାର୍ଶନିକ ମାର୍କସ୍‌ଙ୍କର ବୈଜ୍ଞାନିକ ଦ୍ୱନ୍ଦ୍ୱାତ୍ମକ-ବସ୍ତୁବାଦ ତତ୍ତ୍ୱ ସାଧାରଣ ମଣିଷର ଅନୁଭୂତି ସ୍ତରରେ ସାଇତା ହେବାରେ ଲାଗିଲା । ନିରାଶାର ଘନ ଅନ୍ଧାର ଭିତରେ ଆଶାବାଦର ନୈସର୍ଗିକ ଆଲୋକ ବିଚ୍ଛୁରିବାରେ ଲାଗିଲା ।

"ଆମେ ଶାନ୍ତି ଚାହୁଁ" "ହିରୋସୀମା" ପ୍ରଭୃତି କବିତାରେ କବି ଶ୍ରୀ ଦାସଙ୍କର ବୈପ୍ଳବିକ ଚେତନାସ୍ତର ମଧ୍ୟ ଶାନ୍ତି ପାଇଁ ଆହ୍ୱାନ ଦେଇଛି । ଏ ଶାନ୍ତି ମହାମାରିବତାର ନୁହେଁ, ମୁଦ୍ଧ ପିପାସାରୁ ରକ୍ଷା, ଧ୍ୱଂସରୁ ରକ୍ଷା । କାରଣ ନିରନ୍ତର ସମାଜବାଦୀ ମୁକ୍ତି-ସଂଘର୍ଷ ପାଇଁ ବି ସ୍ଥୈର୍ଯ୍ୟ ଓ ଗଠନାତ୍ମକ ମନୋବୃତ୍ତି ଦରକାର ।

'ମୁକ୍ତି ଲାଗି ଚାଲିଲୁ ଯେ ଲକ୍ଷ ଲକ୍ଷ କହ ସ୍ମୃତି କାହିଁ ?
ଯୁଦ୍ଧର ଡାକରା ପୁଣି ? ଆଉ ଥରେ ମୃତ୍ୟୁର ଚଟାଉ ?
ନା, ନା,
ଆମେ ଶାନ୍ତି ଚାହୁଁ !'

(ଆମେ ଶାନ୍ତି ଚାହୁଁ : ଅ: ପ: ଓ ଅନ୍ୟାନ୍ୟ କବିତା : ପୃ - ୫୬)

'ପୃଥିବୀର ହେ ନରନାରୀ !
ତୁମେ ବୁଝିପାର ଆମ ଭାଷା ?
ଆମେ ଅଶରୀରୀ, ମଣିଷର ଆତ୍ମା ଖାଲି
× × ×
ଊର୍ଦ୍ଧ୍ୱେ ଶାନ୍ତିର ପ୍ରତୀକ ପ୍ରକୃତିର ଅନ୍ତିମ ନୀଲିମା
ନିମ୍ନେ ତାର ବାସଭୂମି ଜନାକୀର୍ଣ୍ଣ ପ୍ରିୟ ହିରୋସୀମା
କେ ବା କାହାର ?
(ଅସମାପ୍ତ)

(ହିରୋସୀମା : ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା : ପୃଷ୍ଠା - ୫୪-୫୫)

ଏତଦ୍ ବ୍ୟତୀତ 'ଚୀନ' କବିତାରେ ବି ମଣିଷର ଆତ୍ମିସ୍ୱତାବୋଧ ଓ ମାନବବାଦୀ ଦୃଷ୍ଟିଭଙ୍ଗୀ ଯୁଦ୍ଧର ଧ୍ୱଂସ ଚେତନାକୁ ପରିବ୍ୟକ୍ତ କରିଯାଇଛି । ଅତିକ୍ରମ କରି ଯାଇଛି ।

ପରମାଣୁ ବୋମା ନାହିଁ ଲୋଡ଼ା
ଶକ୍ତି ତାର, ଦୁର୍ଗ ତାର ହାସ୍ୟମୁଖ
ନଗର ଓ ଗ୍ରାମ ।

ଏଠାରେ ଲକ୍ଷ୍ୟ କରିବାର କଥା 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ସଂକଳନରେ କବି ଶ୍ରୀ ଦାସଙ୍କ କାବ୍ୟିକ ଅବବୋଧ ସାମ୍ୟବାଦୀ ଓ ସମାଜବାଦୀ ଦୃଷ୍ଟିଭଙ୍ଗୀ ସମ୍ପନ୍ନ, ସଂଗ୍ରାମୀଚେତନାର ଐତିହାସିକ ଉତ୍ତରଣ ପ୍ରତି ଆସ୍ଥାବାନ୍ ଏବଂ ଐତିହାସିକ ଘଟଣାବଳୀ ତାଙ୍କ କାବ୍ୟପୁଲକକୁ ଜାଗରିତ କରିଛି, ଏବଂ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ଓ ସାମ୍ୟବାଦୀ ସଂଗ୍ରାମଧାରାର ଐତିହାସିକ ପର୍ଯ୍ୟାୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଶାନ୍ତି ଆନ୍ଦୋଳନ ଯାଏ କାବ୍ୟିକ ଅଗ୍ରଗତି ଐତିହାସିକ ଧାରା ଓ ଘଟଣାବଳୀ ସହ ସମନ୍ୱିତ । ଅର୍ଥାତ୍ ସଂଗ୍ରାମୀ କାବ୍ୟିକ ଅବବୋଧ ଇତିହାସର ସମସାମୟିକ ଘଟଣାବଳୀରୁ ରୂପକ, ପ୍ରତୀକ ଓ ଶବ୍ଦ ଗ୍ରହଣ କରିଛି । ୧୯୪୯ ମସିହାଠାରୁ କବି ଶ୍ରୀ ଦାସଙ୍କର କାବ୍ୟ ଅବବୋଧରେ ସେହି ବୈପ୍ଳବିକ ସଂଗ୍ରାମୀ ଚେତନାର ସ୍ପନ୍ଦନ ଜାହିର ରହିଥିଲେ ମଧ୍ୟ ବି ଐତିହାସିକ ଦୃଷ୍ଟିଭଙ୍ଗୀ ପ୍ରତି ପ୍ରାୟତଃ ନିର୍ଲିପ୍ତ ଓ ଅନୁକ୍ତ ରହିଛନ୍ତି । ବିଶ୍ୱଯୁଦ୍ଧ ଓ ଶାନ୍ତି ଆନ୍ଦୋଳନ ପରଠାରୁ ଆନ୍ତର୍ଜାତିକ ସାମ୍ୟ ଓ ସମାଜବାଦୀ ଆନ୍ଦୋଳନର ଧାରା, ଆଦର୍ଶ ଓ କୌଶଳ ବହୁଧା ବିଭକ୍ତ ଓ ଖଣ୍ଡିତ ହୋଇ ପଡ଼ିବାରୁ ଓ ଛଳନାପୂର୍ଣ୍ଣ, ଆବରଣାତ୍ମକ ତଥାକଥିତ ବିପ୍ଳବୀ ମାର୍କା ସୁବିଧାବାଦୀଶ୍ରେଣୀର ଅଭ୍ୟୁଦୟ ଯୋଗୁଁ ଐତିହାସିକ ଘଟଣାବଳୀ-ଗୁଡ଼ିକ କବିଙ୍କର ବୈପ୍ଳବିକ ଚେତନାର କାବ୍ୟିକ ଅବବୋଧ ପାଇଁ ସ୍ଫୂର୍ତ୍ତି ଓ ଉଦାତ୍ତ ପ୍ରତୀକ, ରୂପକ ଓ ଶବ୍ଦ ସହଯୋଗ କରି ପାରିବାରେ ପୂର୍ଣ୍ଣ କ୍ଷମ ହୋଇପାରି ନାହାନ୍ତି । ପରନ୍ତୁ କାବ୍ୟଆତ୍ମା ବୈପ୍ଳବିକ ଚେତନାର ଅନୁଗାମୀ ଶବ୍ଦକଳ୍ପ ଓ ମିଥ୍ ଗୁଡ଼ିକୁ ନିଜ ସଂସ୍କୃତି ପିଣ୍ଡରୁ ଓ ପୁରାଣରୁ ସଂଗ୍ରହ କରିଛି । ପରିଣତିରେ କବିତାର ଉପସ୍ଥାପନ ଧାରା, ଶୈଳୀ ଓ ଆଙ୍ଗିକ ପର୍ଯ୍ୟାୟଟି ପରିବର୍ତ୍ତିତ ହୋଇ ପଡ଼ିଛି ଏବଂ ୧୯୬୨ ମସିହା ଠାରୁ

ଏହି ଧାରା ଆହୁରି ସ୍ପଷ୍ଟ, ପ୍ରାଞ୍ଜଳ ହେବା ସଙ୍ଗେସଙ୍ଗେ ଐତିହାସିକ ଧାରାରୁ ନିଜସ୍ୱ ପରମ୍ପରା ଓ ମାଟି ଅଭିମୁଖୀ ହୋଇ ପଡ଼ିଛି । ଐତିହାସିକ ଘଟଣାବଳୀ ସମନ୍ୱିତ ବୈପ୍ଳବିକ କାବ୍ୟମାନସର ଧାରାରୁ ପରମ୍ପରା ଓ ପୌରାଣିକ ମିଥ୍, ଚିତ୍ରକଳ୍ପ, ସମନ୍ୱିତ ବିପ୍ଳବୀ କାବ୍ୟଧାରାକୁ ପରିବର୍ତ୍ତନ ଅବଶ୍ୟ ସାମ୍ୟ ଓ ସମାଜବାଦୀ ସଂଗ୍ରାମୀ କାବ୍ୟଚେତନା ଧାରା ପ୍ରତି ଏକ ପୀଡ଼ନ, ଏଥିରେ ସନ୍ଦେହ ନାହିଁ, କିନ୍ତୁ ତଦ୍‌ଭିନ୍ନ ଗତ୍ୟନ୍ତର ନଥିଲା । କାରଣ ସାମ୍ୟ ଓ ସମାଜବାଦୀ ଆନ୍ଦୋଳନର ଆଗ୍ରହଗତ ପ୍ରମୁକ୍ତିର ଶିଥିଳତା ଓ ବାଗ୍‌ଚିତ୍ରର ବୌଦ୍ଧିକତା ବାସ୍ତବ କାବ୍ୟିକ ସ୍ଫୁରଣ ଓ ଆବେଦନ ଯୋଗାଇବାରେ ସମର୍ଥ ନଥିଲା । ଏହି ପରିବର୍ତ୍ତିତ ଉଦ୍ଧରଣ ସଂପର୍କରେ ତାଙ୍କର 'ମହାଭାରତେ' କବିତା ୧୯୪୯ ମସିହାରେ ପ୍ରକାଶିତ । ଏହି ମାଟି ଓ ପୁରାଣରୁ ଗୃହୀତ ମିଥ୍ ଓ ଚିତ୍ରକଳ୍ପ ଗୁଡ଼ିକର ବ୍ୟବହାରରେ ବୈପ୍ଳବିକ ଚେତନା ପ୍ରବାହଟି ଆହୁରି ଘୋର ଓ ଶାଣିତ ହୋଇ ଉଠିଛି ।

'ଶୁଣ ପାର୍ଥ ! ପାପ ନୁହେଁ ତୁମର ଏ ଲାଲ ପ୍ରତିହିଂସା
ମୋହ ନେତ୍ର ଫିଙ୍ଗି ଗୃହ ସୁଦର୍ଶନେ :
କୁରୁକ୍ଷେତ୍ର ଡ଼ାକେ··· ··· ··
ବିଶ୍ୱରୂପ ହେ ସାରଥୀ, ସ୍ୱୟଂ ମୁଁ, ରଥ ଚଳା ଆଗେ !

(ମହାଭାରତେ : ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା : ପୃ- ୭୩)

ନିଜସ୍ୱ ମାଟି ଓ ସଂସ୍କୃତିର ମୂଳଖମ୍ବ ଏଠାରେ ପ୍ରଚଣ୍ଡ ବୈପ୍ଳବିକ ରୂପ ଧାରଣ କରି ନୂତନ କାବ୍ୟିକ ଆବେଦନ ଗ୍ରହଣ କରିଛି । ସମାଜବାଦୀ ବାସ୍ତବତାର ସଂଗ୍ରାମୀ ଅବବୋଧଟି ଗାଢ଼ ହୋଇଛି ।

ଏଠାରେ ସ୍ମରଣୀୟ ଯେ ବୈପ୍ଳବିକ-ନୈର୍ବ୍ୟକ୍ତିକ ଚେତନାର କାବ୍ୟଧାରା ସହ ବ୍ୟକ୍ତିନିଷ୍ଠ ଚେତନାର ବିପୁଳ କାବ୍ୟୋପଲବ୍ଧିର ବାସ୍ତବ-ମାନବବାଦୀ କବିତା-ଧାରା ସହଯାତ୍ରୀ ଭାବରେ ଗତିକରି ଚାଲିଥିଲା ଏବଂ ଏହି ବାସ୍ତବବାଦୀ କବିତାର ଚେତନାଧାରା ମଧ୍ୟ ସମଭାବରେ ତଥାକଥିତ ଆନ୍ତର୍ଜାତିକତାରୁ ମୁକ୍ତ ହୋଇ ନିଜ ମାଟି, ନିଜ ସଂସ୍କୃତିରୁ ମିଥ୍, ରୂପକଳ୍ପ ଓ ଚିତ୍ରକଳ୍ପ ଆହରଣ କରି କବିତାକୁ ଏକ ସଫଳ ଓ ଶକ୍ତ ଅବବୋଧକୁ ଉତ୍ତୀର୍ଣ୍ଣ କରାଇବାରେ ନିବେଶିତ ହେଲା ।

୧୯୭୨ ରୁ ୧୯୮୨ ମସିହା ଯାଏ କବି ଶ୍ରୀ ଦାସଙ୍କର କାବ୍ୟ-ଅବବୋଧ ନିଜ ମାଟି, ନିଜ ସଂସ୍କୃତି ପୁରାଣରୁ ମିଥ୍, ରୂପକଳ୍ପ ଓ ଚିତ୍ରକଳ୍ପ ମାନ ଆହରଣ କରି ଯେଉଁ ବୈପ୍ଳବିକ ପ୍ରବାହରେ ପ୍ଳାବିତ ହୋଇଛି, ସେହି ଅବବୋଧ ହିଁ ତାଙ୍କୁ ଭାରତୀୟ ତଥା ଓଡ଼ିଆ ବୈପ୍ଳବିକ କାବ୍ୟ ଚେତନାର ସ୍ୱତନ୍ତ୍ର ପ୍ରତିଭାର, ସ୍ୱତନ୍ତ୍ର ଶୈଳୀର କବି ରୂପେ ଐତିହାସିକ ସ୍ୱୀକୃତି ପ୍ରଦାନ କରିଛି ଏବଂ ତାଙ୍କ ପରବର୍ତ୍ତୀ ଓଡ଼ିଆ କବିତାର ସାମ୍ୟବାଦୀ

ଚେତନାର କବିମାନଙ୍କ କାବ୍ୟଯାତ୍ରା ପାଇଁ ଦ୍ୱାର ଉନ୍ମୁକ୍ତ କରିଛି । (ଲକ୍ଷ୍ୟ କରିବାର କଥା, ତାଙ୍କ ପରବର୍ତ୍ତୀ ବିପ୍ଳବୀ ଚେତନାର ତରୁଣତର ଓଡ଼ିଆ କବିମାନେ ଏହି ଧାରାକୁହିଁ ଗ୍ରହଣ କରିଛନ୍ତି । ଏ ଦୃଷ୍ଟିରୁ କବି ଶ୍ରୀ ରଘୁନାଥ ଦାସ ଓଡ଼ିଆ ବୈପ୍ଳବିକ ଚେତନାର ଅନ୍ୟତମ ସ୍ମରଣୀୟ ଯୁଗ ପ୍ରବର୍ତ୍ତକ କବି ।)

'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ପରବର୍ତ୍ତୀ ସଂକଳନ 'ପୁନଶ୍ଚ'ରେ ମୁଖ୍ୟତଃ ଏହି ଧାରା ବ୍ୟାପ୍ତ, ଗଭୀର ଓ ଶାଣିତ । ଜଟାୟୁ, ପଦ୍ମତୋଳା, ସଂସାରେସ୍ମିଂ, ଦେବବାଣୀ, ଶ୍ରୀମଦ୍ ଭାଗବତ, ମହାନାଟକ, ମୃଗୁଣୀ ସ୍ତୁତି, ଦକ୍ଷଯଜ୍ଞ, ଓଁ ତତ୍‌ସତ୍, ବାସୁକୀ, ପାପଟିଏ ଜାଲ ପ୍ରଭୃତି କବିତାଗୁଡ଼ିକରେ ପୌରାଣିକ ମିଥ୍ ଓ ପ୍ରତୀକମାନଙ୍କୁ ବୈପ୍ଳବିକ ଚେତନାରେ ଆଲୋକିତ କରି ନୂତନ କାବ୍ୟପ୍ରାଣ ସଞ୍ଚାର କରାଯାଇଛି । ଯଥା :

ଡେଣାପକ୍ଷ ଛିଡ଼ିଗଲା, ଛିଡ଼ିଯାଉ ନାହିଁ ମୋ ଶୋଚନା
ମୁଁ ରହିବି ଯୁଗେ ଯୁଗେ ମୁମୂର୍ଷୁର ଜ୍ୱଳନ୍ତ ପ୍ରେରଣା ।
ଲେଖିବ ବାଲ୍ମିକୀ : ସୀତା ଲାଗି ପକ୍ଷୀ ଏକ
ରାମ ଆଗୁଁ ଯୁଝିଥିଲା । ବିଂଶବାହୁ ପ୍ରତିପକ୍ଷେ ଯୁଝିଛି ଏକାକୀ
ଏକାକୀ ସେ ସେନା,
ପକ୍ଷେ ସତ୍ୟ, ପକ୍ଷେ ନ୍ୟାୟ
ଅବିନୀତ ଜଟାୟୁର ଡେଣା ।
( ଜଟାୟୁ : ପୁନଶ୍ଚ : ପୃ - ୪ )

ଜଟାୟୁ କବିତାରେ 'ଜଟାୟୁ', 'ବିଂଶବାହୁ', 'ବାଲ୍ମିକୀ', 'ରାମ' ପ୍ରମୁଖ ରାମାୟଣରୁ ପୌରାଣିକ ମିଥ୍ ଗୁଡ଼ିକ କାବ୍ୟ ଅବବୋଧକୁ ଗଭୀର ଓ ଶାଣିତ କରିବା ସଙ୍ଗେ ସଙ୍ଗେ ସଂଗ୍ରାମୀ ମଣିଷର ଅତ୍ୟାଚାର ଓ ପୀଡ଼ନ ବିରୋଧରେ ବୈପ୍ଳବିକ ସଂଗ୍ରାମକୁ ଉଜ୍ଜୀବିତ କରୁଛି । 'ଅବିନୀତ ଜଟାୟୁର ଡେଣା' ବୈପ୍ଳବିକ ପ୍ରବୃତ୍ତିକୁ ସୂଚାଉଛି ।

ସେହିପରି 'ପଦ୍ମତୋଳା' କବିତାରେ ଭାଗବତରୁ ଗୃହୀତ 'କୃଷ୍ଣଜନ୍ମ', 'କାଳୀୟ ଦଳନ' ଚିତ୍ରକଳ୍ପକୁ ଲକ୍ଷ୍ୟ କରାଯାଇପାରେ ।

'ରକ୍ତରଂଗା ଶକ୍ତପାଦେ ନାଚିବ ସେ, ରଚିବ ତାଣ୍ଡବ
ବେଣୁ ତାର ଫୁଲ ଫୁଲ ତୋଳୁଥିବ ଗାନ ଅଭିନବ ।'
(ପଦ୍ମତୋଳା : ପୁନଶ୍ଚ : ପୃ - ୧୮)

'ପାରିଷଦ' କବିତାରେ ଐତିହାସିକ ରୂପକଳ୍ପକୁ ବୈପ୍ଳବିକ ଚେତନାର ଅଂଶୀଦାର କରାଯାଇଛି । 'ନାଗଭୂଷଣ' କବିତାରେ ସମସାମୟିକ ସଂଗ୍ରାମୀ ବ୍ୟକ୍ତିତ୍ୱକୁ ବୈପ୍ଳବିକ ସମାଜବାଦୀ ଚେତନାର କାବ୍ୟ-ଅବବୋଧ ସ୍ତରକୁ ଉନ୍ନୀତ କରିଦିଆ ଯାଇଛି ।

ଏଠାରେ ଲକ୍ଷ୍ୟ କରିବାର କଥା କବି ଶ୍ରୀ ଦାସଙ୍କ କାବ୍ୟ ପ୍ରତିଭାକୁ ଦାର୍ଶନିକତାର ଗୁବକାଠି ଧରି ତାଙ୍କ ସାହିତ୍ୟିକ-ଚେତନା ନିୟନ୍ତ୍ରଣ କରେନାହିଁ, ବରଂ ନିଜସ୍ୱ ଅଭିବ୍ୟକ୍ତିରେ ଆପଣାର ସତ୍ତାକୁ ଉଦ୍‌ଘାଟନ କରିବା ସଙ୍ଗେ ସଙ୍ଗେ ନିଜର ଅସ୍ମିତାକୁ ଚିହ୍ନିତ କରିଛି ।

ଐତିହ୍ୟ, ପରମ୍ପରା ଓ ପୁରାଣରୁ ମିଥ୍, ଚିତ୍ରକଳ୍ପ ଓ ପ୍ରତୀକ ସହ ବୈପ୍ଳବିକ ଚେତନାର ଯୋଗସୂତ୍ର ଅନେକ କ୍ଷେତ୍ରରେ ତୀବ୍ର ସଚେତନତାର ଅଭାବରୁ କାବ୍ୟ-ଅବବୋଧକୁ **Revivalism** ସ୍ତରକୁ ଓଟାରି ନେବାର ଆଶଙ୍କା ରହିଥାଏ, କାରଣ ଭାରତୀୟ ଓ ଓଡ଼ିଆ ସଂସ୍କୃତିର ପାରମ୍ପରିକ ଐତିହ୍ୟପୂର୍ଣ୍ଣ ଧାରା ତାର ବିଗତ ରାଜା-ରାଜୁଡ଼ା ଶାସନର ସାଂସ୍କୃତିକ ଦୃଷ୍ଟିଭଙ୍ଗୀରୁ ସାମନ୍ତବାଦୀ ଶୋଷଣ ପ୍ରବୃତ୍ତିରୁ ସମ୍ପୂର୍ଣ୍ଣ ମୁକ୍ତ ନୁହନ୍ତି । କିନ୍ତୁ ଶ୍ରୀ ଦାସଙ୍କ କାବ୍ୟଅବବୋଧ ପାରମ୍ପରିକ ଦୃଷ୍ଟିଭଙ୍ଗୀର ବାସ୍ତବବାଦୀ ଚେତନାରୁ ମୁକ୍ତ ହୋଇ ସଂଗ୍ରାମୀ ଚେତନାର ପ୍ରୟୋଗବାଦୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିବାରୁ ପୌରାଣିକ ଚରିତ୍ରଗୁଡ଼ିକର ଐତିହ୍ୟପୂର୍ଣ୍ଣ ପ୍ରତୀକ ଥିବା ସତ୍ତ୍ୱେ କେବଳ ଆଙ୍ଗିକ ଯୋଗସୂତ୍ର ଅତୀତ ଆତ୍ମିକ ସମସ୍ୟା-ଯୋଗସୂତ୍ର ହରାଇ ସ୍ୱତନ୍ତ୍ର ବୈପ୍ଳବିକ-ମୂର୍ତ୍ତି-କାବ୍ୟିକ-ସତ୍ତାରେ ଉଦ୍‌ଭାସିତ ହୁଅନ୍ତି । ଶବ୍ଦଗୁଡ଼ିକ ତାର ସମସ୍ୟା-ଚେତନାର ନିରନ୍ତର ପରିବର୍ତ୍ତନଶୀଳ ସାମାଜିକ ଅର୍ଥସହ ବୈପ୍ଳବିକ ସୃଷ୍ଟି ବିଜଡ଼ିତ ହୋଇପଡ଼ି ସମଗ୍ର ସୃଷ୍ଟି ଚେତନାକୁ ତୀବ୍ର ଓ ବୈପ୍ଳବିକ ଧାରାରେ ପର୍ଯ୍ୟବସିତ କରାନ୍ତି ଏବଂ କାବ୍ୟ ଅବବୋଧ ପରିଶେଷରେ ଏକ ନବ ବାସ୍ତବଧାରାରେ ପରିଣତ ହୁଏ । କବି ଶ୍ରୀ ଦାସଙ୍କ କାବ୍ୟ-ପ୍ରତିଭା ଏ କ୍ଷେତ୍ରରେ ଅସାଧାରଣ । ସାମ୍ୟ ଓ ସମାଜବାଦୀ ଚେତନାର ଏହି ଭାରତୀୟ-କରଣ **(Indianisation)** ନିଜସ୍ୱ ସାମାଜିକ ଓ ସାଂସ୍କୃତିକ ଭିତ୍ତିଭୂମିରେ ପ୍ରତିଷ୍ଠା ଲାଭ କରିବାର ଅବିସମ୍ବାଦ୍ୟ ସତ୍ୟର ଉପଲବ୍ଧି ବିପ୍ଳବୀ ଚେତନାର କାବ୍ୟାଦର୍ଶକୁ ସ୍ୱତନ୍ତ୍ର ସ୍ଥିତି ପ୍ରଦାନ କରିଛି, ଏବଂ କାବ୍ୟଜିଜ୍ଞାସାକୁ ନୂତନ କଳେବରରେ ଆଚ୍ଛନ୍ନ କରିଛି ।

ପୌରାଣିକ ଓ ଐତିହାସିକ କଥା କାହାଣୀରୁ ବୈପ୍ଳବିକ ମିଥ୍, ରୂପକଳ୍ପର ଉଦ୍‌ଭାସନ ଓ ଉପନିଷଦୀୟ ଚେତନାର ବିପ୍ଳବୀକରଣ, କବିତାଗୁଡ଼ିକରେ ପ୍ରୟୋଗବାଦୀ ବାସ୍ତବତାର ସତ୍ତା ଓ ବ୍ୟଞ୍ଜନା ଯୋଗୁଁ କବି ଶ୍ରୀ ଦାସଙ୍କ କାବ୍ୟ ଅବବୋଧ ରୋମାଣ୍ଟିସିଜମ୍ ଧାରାରୁ ମୁକ୍ତ ରହି ସମାଜବାଦୀ ବାସ୍ତବତା ସ୍ତରକୁ ଆରୋହଣ କରିଛି । କଳ୍ପନା ପ୍ରବଣତା ଅପେକ୍ଷା ବାସ୍ତବ ସ୍ଥିତିକୁ ଅଧିକ ମୂର୍ତ୍ତ କରିଛି । ରଘୁନାଥଙ୍କ ବିପ୍ଳବୀ-କାବ୍ୟାଦର୍ଶରେ ଏହାହିଁ ନିଚ୍ଛକ୍ ସଫଳତା !



# ପରିଶିଷ୍ଟ

## କବି ରଘୁନାଥ ଦାସଙ୍କ ଜନ୍ମ ଜାତକ

### ବିଜୟ ଉପାଧ୍ୟାୟ

କବି ରଘୁନାଥ ଦାସଙ୍କ ଜନ୍ମ ଜୁଲାଇ ୩ ତାରିଖ ୧୯୧୯ ମସିହାରେ ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ଷଣ୍ଢପୁର ଗ୍ରାମରେ । ତାଙ୍କର ପିତା ସ୍ୱ ନଟବର ଦାସ ଥିଲେ ଯାଜପୁର ହାଇସ୍କୁଲର ଶିକ୍ଷକ । ତାଙ୍କର ବାଲ୍ୟକାଳ ଗାଁରେ କଟିଥିଲା । ମାତ୍ର ୫ ବର୍ଷ ବୟସରେ ମା' ସ୍ୱ ପଦ୍ମାବତୀଙ୍କ ସହ ସେ ଯାଜପୁର ଯାଇଥିକରି ସେଇଠାରେହିଁ ନିଜର ଶିକ୍ଷା ଆରମ୍ଭ କରିଥିଲେ ।

ତାଙ୍କୁ ଯେତେବେଳେ ମାତ୍ର ୯ ବର୍ଷ ବୟସ, ସେତେବେଳେ ତାଙ୍କର ମାତୃବିୟୋଗ ଘଟିଥିଲା । ୧୯୩୦ ମସିହାରେ ଲବଣ ଆନ୍ଦୋଳନର ଡାକ ତାଙ୍କ କିଶୋର ମନକୁ ଉଦ୍‌ବେଳିତ କରିଦେଲା । ସମସ୍ତଙ୍କ ଅଜାଣତରେ ସେ ଘରୁ କଟକ ଚାଲିଆସି ବାନର-ସେନାରେ ଯୋଗଦେଇ ଜେଲ ବରଣ କଲେ । ତାଙ୍କର ଶିକ୍ଷକ ପିତା ତାଙ୍କୁ ଖୋଜି ଖୋଜି ଆସି କଟକ ଜେଲରୁ ତାଙ୍କୁ ମୁକୁଳେଇଥିଲେ ।

ତା'ର ଠିକ୍ ତିନିବର୍ଷ ପରେ ୧୯୩୩ ମସିହାରେ ପିତା ନଟବର ଦାସଙ୍କର ଦେହାନ୍ତ ହେଲା । ଏହି ପିତୃମାତୃହୀନ ବାଳକ ନିଜ ବଡ଼ଭାଇ ସ୍ୱ ବାଞ୍ଛାନିଧି ଦାସଙ୍କ ତତ୍ତ୍ୱାବଧାନରେ ଯାଜପୁର ହାଇସ୍କୁଲରେ ପଢ଼ିବାକୁ ଲାଗିଲେ । ବାଞ୍ଛାନିଧିବାବୁ ମଧ୍ୟ ଯାଜପୁର ହାଇସ୍କୁଲରେ ଶିକ୍ଷକତା କରୁଥିଲେ ।

୧୯୩୬ରେ ରଘୁବାବୁ ଆଇ.ଏ. ପଢ଼ିବା ଲାଗି ରେଭେନ୍‌ସା କଲେଜକୁ ଆସିଲେ । ଇଣ୍ଟରମିଡ଼ିଏଟ୍ ପାସ କରିବା ପରେ ପରେ ବଡ଼ଭାଇ ସବୁ ପ୍ରକାରର ଆର୍ଥିକ ସାହାଯ୍ୟ ବନ୍ଦ କରିଦେଇ ତାଙ୍କୁ ଚାକିରୀ ପାଇଁ ବାଧ୍ୟ କଲେ । ସେ କିନ୍ତୁ ନିଜେ ଦୁଇଓଳି ଟିଉସନ କରି ଇଂରାଜୀ ଅନର୍ସରେ ବି.ଏ. ପଢ଼ିବାକୁ ଲାଗିଲେ । ସେହି ସମୟରେ ତାଙ୍କୁ ବିଶେଷ ସାହାଯ୍ୟ କଲା 'ମେରିଟ୍' ବୃତ୍ତି । ତାଙ୍କର ଆର୍ଥିକ ସଙ୍କଟ କିଛିଟା ପରିମାଣରେ ଲାଘବ ହେଲା ।

୧୯୪୦ ମସିହା ବେଳକୁ ସାରା ଓଡ଼ିଶାରେ ପରୀକ୍ଷା ବର୍ଜନ ଡାକରାରେ ଛାତ୍ର ଆନ୍ଦୋଳନ ଚାଲିଲା । ଏଥିରେ ଅଗ୍ରଣୀ ଭୂମିକା ଗ୍ରହଣ କରିବାକୁ ରଘୁନାଥ ଦାସ ଆଗେଇ ଆସିଥିଲେ । ଆନ୍ଦୋଳନ ଅବଶ୍ୟ ବିଫଳ ହେଲା । କିନ୍ତୁ ଏଥିରେ ଭାଗ ନେଇଥିବା ଅପରାଧରେ ରେଭେନ୍‌ସା କଲେଜ ତତ୍କାଳୀନ ପ୍ରିନ୍‌ସିପାଲ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା

ତାଙ୍କୁ ବ୍ଲେକ୍ ସାର୍ଟିଫିକେଟ ଦେଇଥିଲେ । ତେଣୁ ଡ୍ରଷ୍ଟିଂସନ ସହ ଇଂରାଜୀ ଅନର୍ସରେ ବି.ଏ. ପାସ୍ କରିଥିଲେ ମଧ୍ୟ ସେ ଏମ୍.ଏ.ରେ ଏଡ୍ମିସନ ପାଇପାରିଲେ ନାହିଁ । ସୁତରାଂ ବାଧ୍ୟ ହୋଇ ଓକିଲାତି ପଢ଼ିବାକୁ ଆସିଲେ ।

ଏହି ସମୟରେ ଆର୍ଥିକ ଅନଟନ ହେତୁ ସେ କିଛି ମାସ ପ୍ୟାରିମୋହନ ଏକାଡେମୀରେ ଓ ତା' ପରେ ପରେ ବାମଣ୍ଡା ହାଇସ୍କୁଲରେ ଶିକ୍ଷକତା କରିଥିଲେ ।

୧୯୪୫ ମସିହାରେ ଶିକ୍ଷକତା ଛାଡ଼ି ସେ କଟକରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ଆଉ ୧୯୪୫ରୁ ୧୯୮୪ ମସିହା ଶେଷ ଜୀବନ ପର୍ଯ୍ୟନ୍ତ କଟକହିଁ ତାଙ୍କର ବ୍ୟବସାୟିକ, ରାଜନୈତିକ ଓ ସାହିତ୍ୟିକ ଜୀବନର କେନ୍ଦ୍ରସ୍ଥଳୀ ପାଲଟିଗଲା ।

ତାଙ୍କ ଡାଏରୀରୁ ଜଣାଯାଏ ଯେ ସେ ପ୍ରାୟ ୧୦ ବର୍ଷ ବୟସରୁ କବିତା ଲେଖା ପ୍ରୟାସ କରିଥିଲେ । ପ୍ରକୃତିର ଅପରୂପ ବିଭବ ତାଙ୍କୁ ମୁଗ୍ଧ ଚକିତ କରୁଥିଲା ! ଲାଜକୁଳା ସ୍ୱଭାବର ଥିବାରୁ ସେ ପ୍ରଥମେ ଲୁଚାଇ ଲୁଚାଇ କବିତା ଲେଖୁଥିଲେ । ଏହି ସମୟରେ ତାଙ୍କର ଶିକ୍ଷକ ବେଦୀ ମହାଶୟଙ୍କ ନଜରରେ ତାଙ୍କର କବିତାଟିଏ ପଡ଼ିଥିଲା । କବିତାର ନାମଥିଲା 'ଲାଜକୁଳୀ ଲତା' । ସେ ନିଜେ ଥିଲେ ଜଣେ କବି । ତେଣୁ ସେ କିଶୋର ରଘୁଙ୍କୁ ଏ ଦିଗରେ ଖୁବ୍ ଉତ୍ସାହିତ କରିବାକୁ ଲାଗିଲେ । ଏଣେ ପିତା ନଟବର ଦାସ ଚାହୁଁଥିଲେ ଯେ ସେ ଜଣେ ଭଲ ପ୍ରାବନ୍ଧିକ ହୁଅନ୍ତୁ । ଅବଶ୍ୟ ନବମ ଶ୍ରେଣୀରେ ପଢ଼ିବା ବେଳେ ସେ ପ୍ରବନ୍ଧ ଲେଖାରେ ସବୁବେଳେ ସ୍କୁଲରେ ଶ୍ରେଷ୍ଠ ସ୍ଥାନ ପାଇ ଆସୁଥିଲେ । ଏହି ସମୟରେ ତାଙ୍କ ପିତାଙ୍କ ମୃତ୍ୟୁ ତାଙ୍କୁ ଅଧିକରୁ ଅଧିକ କବିତା ରଚନା ଦିଗକୁ ଠେଲିନେଲା । କିନ୍ତୁ ବଡ଼ଭାଇଙ୍କ ଠାରୁ ତାଙ୍କୁ ନିଜର କବିତା ଲୁଚାଇ ରଖିବାକୁ ପଡ଼ୁଥିଲା ।

ସେ 'Say not the struggle that awaitath'ର ଓଡ଼ିଆ ଅନୁବାଦ ଯାଜପୁର ହାଇସ୍କୁଲର ହାତଲେଖା ପତ୍ରିକାରେ ପ୍ରକାଶ କରିଥିଲେ । ପରେ ପରେ ୧୯୩୮ରେ ରେଭେନ୍ସା ପୂର୍ବ ଛାତ୍ରାବାସର ପତ୍ରିକା 'ଊର୍ମି'ରେ ତାଙ୍କର କବିତା ପ୍ରଥମ ହୋଇଥିଲା । ପରେ ପରେ ସେହି ବର୍ଷ 'ସହକାର' ପତ୍ରିକାରେ "ମୃତ୍ୟୁ ଗୋ ତୁମେ ଯେତେବେଳେ କିଆଁ ଆସନ ?" ପ୍ରକାଶିତ ହୋଇଥିଲା । ଏହି କବିତାଟି କବି ରାଧାମୋହନ ଗଡ଼ନାୟକଙ୍କ 'ସହକାର'ରେ ପ୍ରକାଶିତ କବିତା "ମୃତ୍ୟୁ ହେ ତୁମେ ଯେତେବେଳେ କିଆଁ ଆସ ?"ର ବିରୋଧାଭାସରେ ରଚିତ ହୋଇଥିଲା ।

ପରେ ପରେ 'ଶଙ୍ଖ'ରେ ପ୍ରକାଶିତ ହୋଇଥିଲା 'ପଦଧ୍ୱନି' । ନିଜ ନାମରେ ଲେଖିବା ସଙ୍ଗେ ସଙ୍ଗେ ବହୁ କବିତା ସେ ଅନ୍ୟାନ୍ୟ ଛଦ୍ମନାମରେ ପ୍ରକାଶ କରିଥିଲେ । ସେଥିରୁ ମୁଖ୍ୟ ଥିଲା 'ଜଟାୟୁ' । ତାଙ୍କ ପ୍ରଥମ ଚେତିକ କବିତା ସବୁ ଏବେ ଅମିଳକ । ଓଡ଼ିଶାରୁ ବାହାରୁଥିବା ସମସ୍ତ ମୁଖ୍ୟ ପତ୍ରପତ୍ରିକାରେ ତାଙ୍କ ଲେଖା ପ୍ରକାଶିତ ହେଉଥିଲା ।

ତନ୍ମଧ୍ୟରୁ 'ଚତୁରଙ୍ଗ', 'ଶଙ୍ଖ', 'ଦିଗନ୍ତ', 'ସନ୍ଧିକାର', 'ନବଭାରତ', 'ସଙ୍କେତ', 'ଝଙ୍କାର', 'ଅଗ୍ନିବୀଣା' ଓ 'ଅଭିଯାତ୍ରୀ' ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ୧୯୫୦ରେ ତାଙ୍କ ପ୍ରକାଶିତ ପୁସ୍ତିକା 'ଅଗଷ୍ଟ ପନ୍ଦର' ହେଉଛି ତାଙ୍କ ଚରମ ସାଫଲ୍ୟର କବିତା । ସ୍ୱାଧୀନତା ଲାଭର ପ୍ରାକ୍‌କାଳରେ ସେଥିରେ କବି ଭବିଷ୍ୟତ-ବାଣୀ କରିଥିଲେ—

'ଯାତ୍ରୀ ସାବଧାନ,
ତୋ'ର ଏହି ଯାତ୍ରା ପଥେ ନୁହେଁ ଏଯେ ଅନ୍ତିମ ସୋପାନ ।'

ପରେ ପରେ ସେ ଦୀର୍ଘ ଦିନ ଧରି ଚୁପ ରହିଥିଲେ । ସାରା ବିଶ୍ୱର ମେହେନତି ଜନସାଧାରଣଙ୍କ ସଂଗ୍ରାମର ସମର୍ଥନରେ ସେ ବହୁ କବିତା ରଚନା କରି ଯାଇଛନ୍ତି । ଏସବୁ ପରବର୍ତ୍ତୀ ଅବସ୍ଥାରେ କବି ରବି ସିଂଙ୍କ ଦ୍ୱାରା 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ପୁସ୍ତକରେ ସଂକଳିତ ହୋଇଛି । ତାପରେ ପ୍ରାୟ ୧୫ ବର୍ଷରୁ ଊର୍ଦ୍ଧ୍ୱକାଳ ଚୁପ୍ ରହିବା ପରେ ସେ ପୁଣି କଲମ ଧରିଛନ୍ତି । ସେଇସବୁ କବିତା ସଂକଳିତ ହୋଇଛି ୧୯୮୪ରେ ପ୍ରକାଶିତ 'ପୁନଶ୍ଚ' କାବ୍ୟଗ୍ରନ୍ଥରେ । ଏତଦ୍ ବ୍ୟତୀତ ଅନ୍ୟାନ୍ୟ ବହୁ କବିତା ଏ ଯାବତ୍ ପୁସ୍ତକ ଆକାରରେ ପ୍ରକାଶିତ ହୋଇପାରିନାହିଁ ।

ଭାରତର ଅବିଭାଜ୍ୟ କମ୍ୟୁନିଷ୍ଟପାର୍ଟି ସହିତ କବି ନିଜକୁ ଦୀର୍ଘକାଳ ଧରି ପ୍ରତ୍ୟକ୍ଷ ଭାବରେ ସାମିଲ କରିଥିଲେ । କମ୍ୟୁନିଷ୍ଟ ପାର୍ଟିର ସେତେବେଳର ମୁଖପତ୍ର 'ମୁକ୍ତିଯୁଦ୍ଧ' ଓ 'ସନ୍ଧାନ'ରେ ତାଙ୍କର ବହୁ ଲେଖା ନିଜ ନାମ ଓ ଛଦ୍ମ ନାମରେ ପ୍ରକାଶିତ ହୋଇ-ଥିଲା । ପରେ କିନ୍ତୁ ଏହି ପାର୍ଟି ସହିତ ତାଙ୍କର ମତବିରୋଧ ଦେଖା ଦେଇଥିଲା । ତା'ପରେ ସେ ନୀରବ ରହି ଦୀର୍ଘଦିନ ନିଜର ଓକିଲାତି ପୁସ୍ତକ ରଚନା କରିଥିଲେ । ତାଙ୍କ ଲିଖିତ 'ଓଡ଼ିଶା ଭୂସଂସ୍କାର ଆଇନ' ଆଇନଜୀବୀମାନଙ୍କର ଅତି ପ୍ରିୟ । ସେ ଲେଖିଥିବା ପ୍ରାୟ ୨୫ ଖଣ୍ଡ ଆଇନ ପୁସ୍ତକ ମଧ୍ୟରୁ ୧୦ଟି ଆଇନ ଛାତ୍ରଙ୍କ ଲାଗି ଉଦ୍ଦିଷ୍ଟ । ଏହାଛଡ଼ା ସେ ବହୁ ପ୍ରବନ୍ଧ ସମସାମୟିକ ସମସ୍ୟା ଉପରେ ଲେଖି ଏସ୍ ୟୁ. ସି. ଆଇ. ର ମୁଖପତ୍ର 'ସର୍ବହରା' ତଥା ଅନ୍ୟାନ୍ୟ ବହୁ ପତ୍ରପତ୍ରିକାରେ ପ୍ରକାଶ କରିଛନ୍ତି । ଦୀର୍ଘଦିନ ଧରି ସେ ଏହି 'ସର୍ବହରା'ର ସମ୍ପାଦକ ମଧ୍ୟ ଥିଲେ । ଅନୁବାଦ ସାହିତ୍ୟ, ଗଳ୍ପ ସାହିତ୍ୟ ଓ ପ୍ରବନ୍ଧ ସାହିତ୍ୟକୁ ମଧ୍ୟ ତାଙ୍କର ଅବଦାନ ଯଥେଷ୍ଟ ରହିଛି । ଜୁଲିଅସ ଫୁଚିକଙ୍କ ବିଖ୍ୟାତ ପୁସ୍ତକ 'Notes from the Gallows'ର ଅନୁବାଦ 'ଫାଶୀ ଆସାମୀର ଶେଷ ଚିଠି' ରୁଷ ଉପନ୍ୟାସ 'True Love'ର ଅନୁବାଦ 'ପ୍ରେମର ନିକଷ' ଓ ଲୁଇ କେରଲଙ୍କ ବିଖ୍ୟାତ ଇଂରାଜୀ ଉପନ୍ୟାସ 'Alice in the wonder land'ର ଅବଲମ୍ବନ 'ଅଜବ ଦେଶର ଏଲିସ୍', 'ଆମେରିକା ଆବିଷ୍କାର', ୟୁଜିନ ଉଲ୍‌ଫ୍ ଓ ଅନ୍ୟ-ଜଣେ ଲେଖକଙ୍କର 'Discovery of America'ର ଅନୁବାଦ ତାଙ୍କ କୃତି । ମେକ୍‌ସିମ୍ ଗର୍କିଙ୍କ 'ମଦର' ମଧ୍ୟ ସେ ଅନୁବାଦ କରିଥିଲେ ଯାହା ଏଯାବତ୍ ଅପ୍ରକାଶିତ ।

ତାଙ୍କର ବେତାର ନାଟିକା 'ଝଡ଼' ୧୯୪୭ ମସିହାରେ ସର୍ବଭାରତୀୟ ସ୍ତରରେ ପୁରସ୍କୃତ ହୋଇଥିଲା। ଅନ୍ୟ ଏକ ପ୍ରକାଶିତ ନାଟକ ହେଉଛି 'ଜଡ଼ଘର'।

ସରଳ ଭାଷାରେ ରାଜନୈତିକ ସମସ୍ୟାକୁ ଉପସ୍ଥାପନ କରିବାରେ ସେ ଥିଲେ ଧୁରନ୍ଧର। ମାର୍କସ୍‌ବାଦୀ ଦର୍ଶନ ଉପରେ ତାଙ୍କ ଲିଖିତ 'ରାଜନୀତି ଓ ଆଜି ଆମେ', 'ରୁଷ ଶାସନ ବିଧି', 'ସଭ୍ୟତାର ଆଗେ' ଆଦି ବହିରେ ସାଧାରଣ ଓଡ଼ିଆ କୃଷୀ ଶ୍ରମିକଙ୍କ ପକ୍ଷରେ ଏହି ଭାବକୁ ପହଞ୍ଚାଇବା ପାଇଁ ସେ ଯେଉଁ ଅଦମ୍ୟ ଉଦ୍ୟମ କରିଛନ୍ତି, ତା'ର ପଟାନ୍ତର ନାହିଁ।

୧୯୭୩ ମସିହାରେ ଯେତେବେଳେ 'Peoples union for civil liberty & Democratic rights' ଓଡ଼ିଶା ସ୍ତରରେ ଗଢ଼ାହେଲା, ସେଥିରେ ସେ ଭାଇସ ପ୍ରେସିଡେଣ୍ଟ ରୂପେ ଭାଗ ନେଇଥିଲେ। ନକସାଲବାଦୀ ଆନ୍ଦୋଳନର ଅନ୍ୟତମ ନେତା ନାଗଭୂଷଣ ପଟ୍ଟନାୟକଙ୍କ ଫାଶୀ ଆଦେଶ ବିରୋଧରେ ଯେଉଁ ଉଦ୍ୟମ ହୋଇଥିଲା, ସେଥିରେ ୰ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ଇତ୍ୟାଦିଙ୍କ ସହ ଘନିଷ୍ଠ ସହଯୋଗ କରିଥିଲେ। ପରେ PUCLDR ଓ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନର ଓଡ଼ିଶା ଶାଖାରେ ସେ ସକ୍ରିୟ ଭାବେ ଯୋଗ ଦେଇଥିଲେ। ୧୯୮୪ରେ ଗଠିତ 'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ'ର ସେ ଥିଲେ ସଭାପତି। ମୃତ୍ୟୁ ଯାଏ ସେ ଏହାର ସଭାପତି ରହିଥିଲେ। ତାଙ୍କର ଘରେହିଁ ଏହାର ଅଧିକାଂଶ ବୈଠକ ବସୁଥିଲା ଓ ସମସ୍ତ କାର୍ଯ୍ୟକ୍ରମରେ ସେ ଥିଲେ ମୁଖ୍ୟ ଉଦ୍ୟୋକ୍ତା।

୧୯୭୫ରେ ପୁନର୍ଗଠିତ 'ନବଯୁଗ ସାହିତ୍ୟ ସଂସଦ'ର ସେ ଥିଲେ ଉପଦେଷ୍ଟା। ପରେ 'ଗଣମୁକ୍ତି ଲେଖକ ଓ ଶିଳ୍ପୀ ସାମ୍ମୁଖ୍ୟ' ସଂଗଠିତ ହେବା ପରେ ଏହାର ଜଣେ ସକ୍ରିୟ ସଭ୍ୟ ରୂପେ ଯୋଗଦେଇ ସେ ଏହାର ମୁଖପତ୍ର 'ଅଭିଯାତ୍ରୀ'ରେ ନିୟମିତ ଭାବେ ଲେଖୁଥିଲେ। ୧୯୮୨ ମସିହାରେ ଆନ୍ଧ୍ରର People's literary & cultural federationର ରାଜମହେନ୍ଦ୍ରି ସମ୍ମିଳନୀରେ ସେ ମୁଖ୍ୟବକ୍ତା ହୋଇ ଯୋଗ ଦେଇଥିଲେ। ଜ୍ୱଳନ୍ତ ସାମାଜିକ ସମସ୍ୟାବଳୀ ପ୍ରତି ତାଙ୍କର ପ୍ରତିକ୍ରିୟା ଥିଲା ଅତି ପ୍ରଚଣ୍ଡ। ଆମର ଲେଖା ଯେ ସାଧାରଣ ଲୋକଙ୍କ ପାଖରେ ପହଞ୍ଚି ପାରୁନାହିଁ ସେ ନେଇ ସେ ଥିଲେ ଖୁବ୍ ବିବ୍ରତ। ତାଙ୍କର ଆଦର୍ଶବାଦ, କର୍ତ୍ତବ୍ୟନିଷ୍ଠା, ସ୍ନେହପରାୟଣତା, ବ୍ୟକ୍ତିଗତ ଜୀବନରେ ସାରଲ୍ୟ ଓ ନିରହଙ୍କାରିତା ସକାଶେ ସେ ଥିଲେ ସମସ୍ତଙ୍କର ପ୍ରିୟ ଓ ଆଜି ମଧ୍ୟ ଚିରସ୍ମରଣୀୟ। ୧୯୮୫ ମସିହା ସେପ୍ଟେମ୍ବର ୧୧ ତାରିଖ ଦିନ ଏହି ମହାନ୍ ବ୍ୟକ୍ତିତ୍ୱର ଦେହାବସାନ ହେଲା।

☐☐

# ଶ୍ରୀମତୀ ମନୋରମା ଦାସଙ୍କ ସହ ଏକ ସାକ୍ଷାତକାର

୧ । ରଘୁବାବୁଙ୍କ ସହ ଆପଣଙ୍କ ପ୍ରଥମ ପରିଚୟ କେବେ ?

□ ତାରିଖ ଠିକ୍ ମନେନାହିଁ । ୧୯୫୧ ମସିହା ମେ ମାସ ହେବ । ଦୁଇଜଣ ଭଦ୍ରଲୋକ ଆମ ଘରେ ମୋ ସହିତ ଦେଖା କରିବାକୁ ଆସିଥିଲେ । ଜଣେ ମୋତେ ମାଓ ସେ ତୁଙ୍ଗ୍‌ଙ୍କ ଖଣ୍ଡେ ବହି ଅନୁବାଦ କରିବାକୁ ଦେଲେ । ଅଳ୍ପ ସମୟ କଥାବାର୍ତ୍ତା ହେଲା । ବିଷୟବସ୍ତୁ ମନେନାହିଁ । ମାସକ ପରେ ଅନୁବାଦ ନେଇଯିବାକୁ ମୁଁ କହିଲି । ପ୍ରାୟ ମାସକ ପରେ ସେ ଆସିଲେ । କିନ୍ତୁ ଅନୁବାଦ କରି ନଥିବାରୁ ବିରକ୍ତ ହୋଇ ମୋ ଠାରୁ ବହିଟି ମାଗି ନେଇଗଲେ ।

୨ । ଆପଣଙ୍କ ବିବାହ କିପରି ଓ କେବେ ସ୍ଥିରୀକୃତ ହୋଇଥିଲା ? ବିବାହ ପୂର୍ବରୁ ଆପଣଙ୍କ ଉପରେ ତାଙ୍କର କିଛି ପ୍ରଭାବ ପଡ଼ିଥିଲା କି ?

□ ଆପଣ ପ୍ରଶ୍ନଟି ବୁଲେଇ ପଚାରିଛନ୍ତି । ଆମ ବିବାହ ପ୍ରେମବିବାହ ନୁହେଁ । ପାରମ୍ପରିକ ଢଙ୍ଗରେ ପ୍ରସ୍ତାବ ଓ କନ୍ୟାଦେଖା ଆଦି ହୋଇଥିଲା । ବିବାହ ପ୍ରସ୍ତାବ ୧୯୫୩ ଜାନୁଆରୀ ମାସରେ ପଡ଼ିଥିଲା ଓ ମେ ମାସ ୨୦ ତାରିଖରେ ବିବାହ ଅନୁଷ୍ଠିତ ହୋଇଥିଲା । ଉଭୟ ବର ଓ କନ୍ୟାଙ୍କ ଇଚ୍ଛାନୁଯାୟୀ ରେଜେଷ୍ଟ୍ରୀ ବିବାହ ହୋଇଥିଲା । ଯୌତୁକ ତ ଦୂରର କଥା, ସେ ଶଶୁର ଘରୁ ସୂତା ଖଣ୍ଡେ ମଧ୍ୟ ଗ୍ରହଣ କରି ନଥିଲେ ।

ବିବାହ ପୂର୍ବରୁ ଚିଠିବାରୁ 'ସଭ୍ୟତାର ଆଗେ' ବହି ପାଇଁ ପ୍ରାଚୀନ ଗ୍ରୀସ ଓ ରୋମ ଉପରେ କି ବହି ପଢ଼ିଲେ ଭଲହେବ ବୋଲି ମୋର ମତାମତ ପଚାରିଥିଲେ । ମୁଁ ତାଙ୍କୁ ସମସ୍ତ ବିଷୟ ବିଶଦ ଭାବରେ ଚିଠିରେ ଜଣେଇ ଦେଇଥିଲି । ସେତେବେଳେ ମୁଁ ତାଙ୍କୁ ଯେ ବିବାହ କରିବି ଏ ଧାରଣା ମୋ ମନକୁ ଆସି ନଥିଲା ।

ବିବାହ ପରେ ତାଙ୍କ ପ୍ରଭାବ ମୋ ଉପରେ ନିଶ୍ଚିତ ରୂପେ ପଡ଼ିଛି ।

୩ । କବିପତ୍ନୀ ରୂପେ ଆପଣ କିଛି ବିଶେଷତ୍ୱ ଅନୁଭବ କରିଛନ୍ତି କି ?

□ ତାଙ୍କର କୃତି ପାଇଁ ଗର୍ବ ଅନୁଭବ କରେ ଓ ତା ସହିତ ଭାବେ ମୋ ପରି ଏତେ ଶୁଷ୍କ, ନୀରସ ଲୋକଟିକୁ କବି ପସନ୍ଦ କଲେ କାହିଁକି ?

୪ । ଆପଣଙ୍କ ଯୁଗ୍ମ ଜୀବନର ପ୍ରଭାବ କବିଙ୍କର ଲେଖା ଉପରେ ପଡ଼ିଛି କି ? ଦାମ୍ପତ୍ୟ ଜୀବନର କେତୋଟି ସ୍ମରଣୀୟ ଘଟଣା କହିବେ କି ?

□ ବିବାହ ପରେ 'ସୋଭିଏତ ରୁଷର ଶାସନ ବିଧି' ଲେଖାହେଲା ଓ ପ୍ରକାଶିତ ହେଲା । 'How to become a good communist' ଲିଓ ସାଓ ଚିଙ୍କ ବହିର ଅନୁବାଦ ଆମେ ମିଶି କରିଥିଲୁ । କିନ୍ତୁ ତା'ର ପାଣ୍ଡୁଲିପି ପର୍ଯ୍ୟନ୍ତ ବି ପରେ ମୁଁ ଦେଖିନାହିଁ । ସେ ବହି ଛପା ହୋଇନାହିଁ । ମୋର ଦୁର୍ଭାଗ୍ୟ ବିବାହ ପରେ ସେ ସାହିତ୍ୟ ସାଧନାରୁ ବିରତ ହେଲେ ।

ବିବାହର କିଛିଦିନ ପରେ ଆମେ ତାଳଚେରର କୋଇଲାଖଣି ଦେଖିବାକୁ ଯାଇଥିଲୁ । ଖଣି ଭିତରେ ବୁଲି ଦେଖିବା ପ୍ରକୃତରେ ଏକ ରୋମାଞ୍ଚକର ଅନୁଭୂତି । ୧୯୬୭ ମସିହାରେ ଆମେ ସପରିବାର ଦକ୍ଷିଣଭାରତ ବୁଲି ବାହାରିଲୁ ।

ମାସେ କାଳ ରେଳଗାଡ଼ିରେ ବୁଲି ବୁଲି ଦକ୍ଷିଣଭାରତର ଅଧିକାଂଶ ଦର୍ଶନୀୟ ସ୍ଥାନ ଦେଖିଲୁ । ସେତେବେଳେ କନ୍ୟାକୁମାରୀକୁ ଟ୍ରେନ ଯାଉ ନଥାଏ । ତିରୁନଭେଲିରୁ କନ୍ୟାକୁମାରୀ ୨୦୦ ମାଇଲ ହେବ ବସରେ ଯିବାକୁ ପଡ଼ିଲା । ସାଙ୍ଗରେ ଆମର ତିନିଝିଅ ଓ ଦୁଇପୁଅ । ମୋ ଜୀବନରେ ଏତେ ଆନନ୍ଦ କେବେ ପାଇନାହିଁ ।

୫ । ପାରିବାରିକ ଜୀବନରେ ଆପଣ ଦୁହିଁଙ୍କ ଭିତରେ ବୁଝାମଣା କିଭଳି ଥିଲା ?

☐ ଉତ୍ତମ ଥିଲା । ଘରର ଯାବତୀୟ କଥା ବୁଝିବା ଓ ଠିକ୍‌ରୂପେ ସବୁ ଚଳେଇବା ଭାର ମୋ ଉପରେ ଥିଲା । ଏ ସବୁ ବୁଝିବାକୁ ତାଙ୍କୁ ସମୟ ନଥିଲା । ପାରିବାରିକ ଓ ସାମାଜିକ ଜୀବନରେ ମଧ୍ୟ ସେ କୌଣସି ଆଳସ୍ୟ ବରଦାସ୍ତ କରୁ ନଥିଲେ । ଏଥିପାଇଁ ଆମ ଭିତରେ ସମୟେ ସମୟେ ଘୋର ମତଭେଦ ହେଉଥିଲା ।

୬ । କବିଙ୍କର ରାଜନୈତିକ ଜୀବନ ସମ୍ପର୍କରେ ଆପଣଙ୍କର ପ୍ରତିକ୍ରିୟା କିଭଳି ଥିଲା ?

☐ ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜଣେ ସକ୍ରିୟ ସଭ୍ୟ ଥିଲେ । ବିବାହର ଅବ୍ୟବହିତ ପୂର୍ବରୁ ବା ପରେ ସେ ପାର୍ଟି ଛାଡ଼ିଲେ । କାହିଁକି ଛାଡ଼ିଲେ ମୁଁ ଜାଣେନା । ପୁଣି ଓଡ଼ିଶାରେ S.U.C.I.ର ପ୍ରତିଷ୍ଠାତା ସଭ୍ୟ ଭାବରେ, ତାଙ୍କ ପତ୍ରିକା 'ସର୍ବହରା'ର ସମ୍ପାଦନା ଓ ରାଜନୈତିକ ଦିଗ୍‌ଦର୍ଶନ ଦେବାରେ ସେ ଅଗ୍ରଣୀ ଥିଲେ । ଆମ ଘରେ କେତେ ବୈଠକ ହୋଇଛି । ୨/୩ ବର୍ଷ ପରେ ସେ S.U.C.I.ରୁ ସମ୍ପର୍କ ତୁଟାଇ ଦେଲେ । ୧୯୫୭ରେ ଶିଖାଲ୍ଲମରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେବାକୁ ଯାଇଥିଲେ । ସେ ମୋତେ ସବୁକଥା କହୁ ନଥିଲେ ମଧ୍ୟ ମୁଁ ବୁଝିପାରୁଥିଲି ଯେ ସେ ସମାଧାନର ବାଟ

ଖୋଜୁଛନ୍ତି । ତାଙ୍କର ରାଜନୈତିକ ଆଦର୍ଶବାଦ ଓ ନିଷ୍ଠା ପ୍ରତି ମୋର ଗଭୀର ସମ୍ମାନ ଥିଲା । ସବୁ ପରିସ୍ଥିତିରେ ମୁଁ ତାଙ୍କ ରାଜନୈତିକ କ୍ରିୟାକଳାପକୁ ସମର୍ଥନ ଜଣାଉଥିଲି ।

୭ । କବିଙ୍କର ରାଜନୈତିକ ଓ ସାହିତ୍ୟିକ ବନ୍ଧୁମାନଙ୍କ ପ୍ରତି ଆପଣଙ୍କ ପରିବାରର ସଦସ୍ୟମାନଙ୍କ ମନୋଭାବ କିପରି ଥିଲା ?

□ ପରିବାରର ସଦସ୍ୟ କହିଲେ ମୁଁ ଓ ମୋ ପିଲାମାନେ । ପିଲାମାନେ ପିତାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ । ତେଣୁ ପିତାଙ୍କ ବନ୍ଧୁମାନଙ୍କ ପ୍ରତି ସେମାନଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା ।

୮ । ଆପଣଙ୍କ ପିଲାମାନେ କବିଙ୍କ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ କି ?

□ କବିଙ୍କ ବ୍ୟକ୍ତିତ୍ୱ ଅଦ୍ଭୁତ ଧରଣର ଥିଲା । ସେ ପିଲାମାନଙ୍କର ଖେଳ ସାଥୀ, ଶିକ୍ଷକ, ପଥପ୍ରଦର୍ଶକ ଥିଲେ । ତାଙ୍କର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସାହିତ୍ୟାନୁରାଗ ଓ କଳାର ସମସ୍ତ ବିଭାଗ ପ୍ରତି ଆଗ୍ରହ ପିଲାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ସର୍ବୋପରି ସେ ମଣିଷ ପରି ମଣିଷଟିଏ ଥିଲେ । ମୋ ପିଲାମାନେ ତାଙ୍କ ପଦାଙ୍କ ଅନୁସରଣରେ ବ୍ରତୀ ।

୯ । କବିଙ୍କର ଓକିଲାତି ପେଶା ସମ୍ପର୍କରେ ଆପଣଙ୍କର ମତାମତ କଣ ? ( ଯେପରିକି ମହକିଲ ଓ ସହକର୍ମୀମାନଙ୍କ ସହିତ ସମ୍ପର୍କ ଓ ଆଇନ ବହି ପ୍ରକାଶନ ଇତ୍ୟାଦି । )

□ ଆଇନ ବ୍ୟବସାୟରେ ଯେଉଁମାନେ ସଫଳତା ଅର୍ଜନ କରିଛନ୍ତି ସେମାନଙ୍କର ଘର ବା ପିଲାମାନଙ୍କ କଥା ବୁଝିବାକୁ ଆଦୌ ସମୟ ମିଳେ ନାହିଁ କହିଲେ ଚଳେ । ସେମାନେ ଗୋଟିଏ ଗୋଟିଏ ବିଷୟକୁ ଧରି ଏପରି ମଗ୍ନ ରହନ୍ତି ଯେ ନିଜର ଖାଇବା ପିଇବା ମଧ୍ୟ ଭୁଲିଯାଆନ୍ତି । ତେଣୁ ସେମାନଙ୍କ ଯତ୍ନ ନେବା ଦରକାର ପଡ଼େ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଓକିଲ ବନ୍ଧୁମାନେ ତାଙ୍କ ସହିତ ପରାମର୍ଶ ପାଇଁ ଆସୁଥିଲେ । କେବଳ ଆଇନ ନୁହେଁ, ବହୁ ବିଷୟରେ ସେମାନଙ୍କ ସହିତ ଚର୍ଚ୍ଚା ହେଉଥିଲା । ଅର୍ଥାଗମ ନହେଲେ ମଧ୍ୟ ବାବାଙ୍କୁ ଏହି ସମୟଗୁଡ଼ିକ ଯଥେଷ୍ଟ ଆନନ୍ଦ ଦେଉଥିଲା । ରବିବାର ଓ ଛୁଟି ଦିନମାନଙ୍କରେ ସେ ଆଲୋଚନାରେ ଏଭଳି ବ୍ୟସ୍ତ ରହୁଥିଲେ ଯେ ଗାଧୁଆ ଖିଆ ମଧ୍ୟ ଭୁଲି ଯାଉଥିଲେ । ମୁଁ ବିରକ୍ତ ହେଉଥିଲି, କାରଣ ଏଭଳି ଅନିୟମ ଯୋଗୁଁ ସ୍ୱାସ୍ଥ୍ୟ ଦେହ ଖରାପ ହେଉଥିଲା ।

ମଫସଲରୁ ଆସିଥିବା ମକ୍କେଲଙ୍କ କଥାବାର୍ତ୍ତା ମୋ କାନରେ ପଡ଼ିଲେ ମୁଁ ବ୍ୟଗ୍ର ହୋଇ ତାଙ୍କୁ କହେ ସେ ସ୍ୱଇଚ୍ଛାରେ ଯାହା ଦେବ ଦେଉ । ସେ ବିରକ୍ତ ହୁଅନ୍ତି, କହନ୍ତି "ତୁମେ ଏ ସବୁଥିରେ ମୁଣ୍ଡ ପୂରାଅ ନାହିଁ ।" ବାପାଙ୍କ ଦେହାନ୍ତ ପରେ ଝିଅ ଓକିଲାତି ବ୍ୟବସାୟ ଆରମ୍ଭ କଲା । କିଛିଦିନ ପରେ ସେ ମୋତେ କହିଲା, ବୋଉ, ବାପା ହାଇକୋର୍ଟରେ ଆଇନ ସହାୟକ (Legal aid) କାମ କରୁଥିଲେ । ସେ ଯେଉଁଠି ୫୦ ଟଙ୍କାରେ କାମ କରୁଥିଲେ, ସେହି କାମ କରିବାକୁ ଓକିଲମାନେ ୫୦୦ରୁ ୧୦୦୦ ଟଙ୍କା ନେଉଛନ୍ତି ।

ଦୁର୍ନୀତି ବ୍ୟାଧି ତ ସବୁଆଡ଼େ ବ୍ୟାପିଛି । ଆଇନ ଅଦାଲତ ବା ବାଦ ଯାଆନ୍ତା କିପରି ? ବାରମ୍ବାର ଅସୁବିଧାରେ ପଡ଼ି ଘୋର ବିରକ୍ତିରେ ସେ ଆଇନ ପେଷାକୁ ଗୌଣ କରି ଆଇନ ପୁସ୍ତକ ପ୍ରକାଶନରେ ମନ ଦେଲେ । ଏ ଏକ ଦୁଃସାହସିକ କାର୍ଯ୍ୟ କହିଲେ ଚଳେ । କାରଣ ନିଜେ ସମସ୍ତ ଖର୍ଚ୍ଚ ବହନ କରି ବହି ପ୍ରକାଶିତ ହେବା ପରେ ବିକ୍ରେତାଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିବ ଓ ତାଙ୍କ ମର୍ଜି ଉପରେ ଚଳିବାକୁ ହେବ । ସେ ପ୍ରାୟ ୨୨/୨୩ ଖଣ୍ଡ ଆଇନ ବହି ଆଇନ ପ୍ରେମୀ ଓ ଛାତ୍ରଙ୍କ ପାଇଁ ଲେଖି ଯାଇଛନ୍ତି । ବର୍ତ୍ତମାନ ତାଙ୍କର ଲେଖା ହଜାର ହଜାର ଟଙ୍କାର ବହି ଘରେ ଜମା ହୋଇ ରହିଛି । ତା'ର ଦଶା କ'ଣ ହେବ କିଏ କହିବ ?

୧୦ । କବିଙ୍କ ଲେଖନୀ ପ୍ରାୟ ଦୁଇ ଦଶକ ଧରି କାହିଁକି ଶିଥିଳ ହୋଇ ପଡ଼ିଥିଲା କହିବେ କି ?

☐ ଏହାର ବହୁ କାରଣ ରହିଛି । ରାଜନୈତିକ ଜୀବନରେ କ'ଣ ଘଟୁଥିଲା ତାହା ସେ କେବେ ମୋତେ କହୁ ନଥିଲେ । ତେବେ ମୁଁ ଲକ୍ଷ୍ୟ କରିଛି ଯେ ସେ ବଡ଼ ବିବ୍ରତ ରହୁଥିଲେ । ବିବାହ ପରେ ପରେ ଘରେ ଓ ବାହାରେ ବହୁ ପ୍ରକାର ସମସ୍ୟା ଦେଖା ଦେଇଥିଲା । ଏହା ମଧ୍ୟ ତାଙ୍କ ସ୍ପର୍ଶକାତର ମନକୁ ଖୁବ ବେଶୀ ବିଚଳିତ କରି ଦେଇଥିଲା, ତଥାପିତଃ କବିଙ୍କ ନିଜ ସ୍ୱଭାବ ଏଭଳି ଉପାଦାନରେ ଗଢ଼ା ଯେ ସେ ଥରେ ଯାହା ସ୍ଥିର କରି ନେଉଥିଲେ ସେଥିରୁ ତାଙ୍କୁ ଟଳାଇବା ଆଦୌ ସମ୍ଭବପର ନଥିଲା ।

୧୧ । ଓଡ଼ିଶା ସରକାର ଓ ଓଡ଼ିଶାର ଜନସାଧାରଣ କବିଙ୍କୁ ତାଙ୍କର ନ୍ୟାଯ୍ୟ ସମ୍ମାନ ଦେଇପାରି ନାହାନ୍ତି—ଏ ନେଇ ଆପଣଙ୍କ ମତାମତ କ'ଣ ?

☐ ସମ୍ମାନ ଲଭ ଆଶାରେ କବି ଲେଖେ ନାହିଁ । କବିଙ୍କ ଲେଖାର ପ୍ରକୃତ ମୂଲ୍ୟାୟନ କାଳର କଷଟି ପଥରରେହିଁ ହେବ । କବିଙ୍କୁ ସମ୍ମାନ ଦିଆଯାଇ ନଥିବାରୁ ମୁଁ ଆଦୌ ଦୁଃଖିତ ନୁହେଁ । ମୋର ଦୁଃଖ ହେଉଛି ତାଙ୍କ ଲେଖାର ପ୍ରଚ୍ଚର ଓ ପ୍ରସାର ନହେବା ଯୋଗୁଁ । କବିଙ୍କ ଭାଷାରେ "ସ୍ଥିର ସିପ୍ରା ସ୍ରୋତ ବିଖ୍ୟାତ ଜଗତେ, ମହାନଦୀ ନାମ ରହିଲା ଗୁପତେ ।"

୧୨ । କେଉଁ ଦୃଷ୍ଟିଭଙ୍ଗୀରେ କବି ପୁଣି ଥରେ ଲେଖନୀ ଧରିଲେ ? ପୁନଶ୍ଚ ଜାଗ୍ରତ କାଳରେ କେଉଁ କେଉଁ ବ୍ୟକ୍ତି ବା ସାହିତ୍ୟିକ ସଙ୍ଗଠନ ସହ ସେ ସଂପୃକ୍ତ ଥିଲେ ଓ ତାଙ୍କୁ ପ୍ରେରଣା ଯୋଗାଇଥିଲେ ?

☐ ଏ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ନୁହେଁ । ମୁଁ ବହୁବାର ତାଙ୍କୁ ଲେଖିବାକୁ କହିଛି କିନ୍ତୁ ସେ ଶୁଣନ୍ତି ନାହିଁ । ପୁଣି ହଠାତ୍ କିପରି ଓ କାହିଁକି ତାଙ୍କର ଲେଖିବାକୁ ଇଚ୍ଛା ହେଲା ତା କିଏ କହିବ ?

ସକ୍ରିୟ ରାଜନୀତି ନ କଲେ ମଧ୍ୟ ରବିବାର ଓ ଛୁଟି ଦିନମାନଙ୍କରେ ରାଜନୈତିକ ଆଲୋଚନାରେ ଆମ ଘର ସରଗରମ ହୋଇ ଉଠେ। ନରମ ପନ୍ଥୀ, ଗରମ ପନ୍ଥୀ, ଗାନ୍ଧିବାଦୀ, ମାର୍କସ୍‌ବାଦୀ ସବୁ ପ୍ରକାର ଲୋକଙ୍କର ସମାଗମ ହୁଏ। ମୋର ମନେ ହୁଏ ସେ ସତେ ଯେମିତି ନିଜକୁ ପ୍ରକାଶ କରିବାକୁ ବାଟ ଖୋଜୁଛନ୍ତି।

୧୩। କବିଙ୍କର ଅମିଳିତ ପାଣ୍ଡୁଲିପି ଓ ପୁସ୍ତକ ସମ୍ପର୍କରେ କିଛି ଧାରଣ ଦେବେ କି? ତାଙ୍କର ଦୀର୍ଘକାଳର ସାହିତ୍ୟିକ ଜୀବନରେ କେତେକ ଲେଖା ଯେ ଆଜି ଆମମାନଙ୍କର ଦୁଷ୍ପ୍ରାପ୍ୟ, ତା'ର କାରଣ କ'ଣ?

□ କବିଙ୍କର କବିତା ଖାତା ଓ ବ୍ୟକ୍ତିଗତ ଚିଠି ଆମମାନଙ୍କ ଅଜ୍ଞାତ-ସାରରେ ତାଙ୍କର ଅତି ବିଶ୍ୱସ୍ତ ଘନିଷ୍ଠତମ ବ୍ୟକ୍ତି ଉଠାଇ ନେଲେ। କିଛିଦିନ ପରେ ପ୍ରକାଶିତ ପୁସ୍ତକ ଯାହା ଥିଲା ତାହା ମଧ୍ୟ ସେ ମାଗିନେଲେ।

ନିକଟରେ ମୁଁ ଜାଣିବାକୁ ପାଇଲି, କଟକର ବିଭିନ୍ନ ପୁସ୍ତକ ବିକ୍ରେତାମାନଙ୍କ ପାଖରେ କବିଙ୍କ ପୁସ୍ତକମାନ ବିକ୍ରୀ ନିମିତ୍ତ ଗଚ୍ଛିତ ଥିଲା। ସେଥି ମଧ୍ୟରୁ ବହୁ ଦୋକାନ ଏବେ ଭାଙ୍ଗି ଗଲାଣି। ମୁଁ କେତେକ ଦୋକାନକୁ ଯାଇଥିଲି। କିନ୍ତୁ ୩୦ ବର୍ଷ ତଳର ବହିର ସନ୍ଧାନ କେଉଁଠି କିଛି ମିଳିଲା ନାହିଁ।

ନିଜ ଲେଖାର ନକଲ କବି ରଖୁନ ଥିଲେ। ଘର ଓ ବାହାର କାମରେ ମୁଁ ଖୁବ ବ୍ୟସ୍ତ ଥିବାରୁ ଏହା ପ୍ରତି ଧ୍ୟାନ ଦେଇ ପାରି ନାହିଁ। ମୋ କର୍ତ୍ତବ୍ୟରେ ଅବହେଳା ରହିଥିବାରୁ ମୁଁ ଅନୁତାପ କରୁଛି। ଏଭଳି ଦୁର୍ଭାଗ୍ୟଜନକ ପରିସ୍ଥିତିରେ ମୁଁ ପଡ଼ିବି ବୋଲି କେବେ ବି କଳ୍ପନା କରି ନଥିଲି।